

ଭକ୍ତକବି ୰ ଗୋପାଳକୃଷ୍ଣ
ଆବିର୍ଭାବ—ଖ୍ରୀ: ୧୭୭୭, ଆଶ୍ୱିନ ଶୁକ୍ଳ ନବମୀ
ତିରୋଭାବ—ଖ୍ରୀ: ୧୮୬୨, ଫାଲ୍‌ଗୁନ ଶୁକ୍ଳ ଦ୍ୱିତୀୟା

ଭକ୍ତକବି ୰ ଗୋପାଳକୃଷ୍ଣ ପଟ୍ଟନାୟକଙ୍କ ବିରଚିତ

# ଗୋପାଳକୃଷ୍ଣ ଗ୍ରନ୍ଥାବଳୀ






ଓଡ଼ିଶା କୋହିନୂର ପ୍ରେସ
ଓ ପୁସ୍ତକ ଭଣ୍ଡାର
ଚଉଧୁରୀ ବଜାର-କଟକ-୧

ସଂକଳକ ଓ ସମ୍ପାଦକ—
ଶ୍ରୀ ସରୋଜ କୁମାର ପାଣିଗ୍ରାହୀ
ଇଦଲସିଂହ
ପୋ. ଅ: ନିମୋଳ, ଜିଲ୍ଲା—କଟକ

ପ୍ରକାଶକ—
ସେଖ ଅମିନୁଲ ଆଇ.
ନୂଆହାଟ, କଟକ-୧


ଶୁଭ ମୁକ୍ତି—
ଗାନ୍ଧୀ ଜୟନ୍ତୀ— ୧୯୭୯

ମୁଦ୍ରାକର—
ଏସ୍ ଅମିନୁଲ୍ ଆଇ.
ଓଡ଼ିଶା କୋହେନୁର ପ୍ରେସ
ଚୌଧୁରୀ ବଜାର, କଟକ-୧

ସୁଲଭ ମୂଲ୍ୟ— ବାର ଟଙ୍କା ମାତ୍ର

ଉତ୍କଳ ଜନନୀର ଯେଉଁ ସାର ସନ୍ତାନ ମାତୃଭୂମି ଉତ୍କଳ ଓ ମାତୃଭାଷା ଓଡ଼ିଆର ସମ୍ମାନ ଲାଗି ସର୍ବଶ୍ରେଷ୍ଠ ପ୍ରହରୀ ରୂପେ ଏ ଶତାବ୍ଦୀର ସହର ମଫସଲ ସବୁ ଆଡ଼େ ସୁପରିଚିତ ଏବଂ ଏହି ଗ୍ରନ୍ଥାବଳୀର ରଚୟିତା କବି କଳହଂସ ଭକ୍ତକବି ସ୍ୱର୍ଗତ ଗୋପାଳକୃଷ୍ଣ ପଟ୍ଟନାୟକ ଯେଉଁ ରାଜ ପରିବାର ଦ୍ୱାରା ଉତ୍ସାହିତ ଓ ସମ୍ମାନିତ ହୋଇ ଉତ୍କଳ ଭାରତୀର ଗଳା ବହଲ୍ଲ ବାଦ କରିଗଲେ ଉକ୍ତ ବଂଶର ସହସ୍ରାଧିକ ଉଚ୍ଚାଙ୍ଗ ସଂଗୀତ; ସେହି ଯୋଗଜନ୍ମା, ପ୍ରଥମ ପଣ୍ଡିତ, ବଦ୍ୟୋପାଧ୍ୟାୟ ପାରଳା ଖେମୁଣ୍ଡିର ମହାରାଜା ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ପବିତ୍ର କର କମଳରେ ମୋର ଏଇ ସ୍ୱଳ୍ପ ଭେଟି—

ଗୁଣମୁଗ୍ଧ
ସେବକ

ପରେ ପରେ ପ୍ରକାଶ ପାଉଛି

## ୰ଗୋପାଳକୃଷ୍ଣ ଗ୍ରନ୍ଥାବଳୀ

### ଦ୍ୱିତୀୟ ଭାଗ

ଭକ୍ତକବିଙ୍କ ଜୀବନର ବହୁଳ ଘଟଣାବଳୀ ଏବଂ ତାଙ୍କ
ଲିଖିତ ଶହ ଶହ ସଂଗୀତ ଏବଂ ତା'ର ସ୍ୱତନ୍ତ୍ର
ଆଲୋଚନା ସହ ଅଙ୍କିତ ରଂଗୀନ
ଫଟୋ ଥାଇ ରେକ୍ସିନ ବନ୍ଧାଇ
ହୋଇଥିବା ଏକ ଦୁର୍ଲଭ
ସଂକଳନ ।



ସେଖ୍ ଅମିନୁଲ୍ ଇସଲାମ୍

ଗୋପାଳକୃଷ୍ଣ ଗ୍ରନ୍ଥାବଳୀ'ର ପ୍ରକାଶକ



ଶ୍ରୀ ସରୋଜ କୁମାର ପାଣିଗ୍ରାହୀ

ସଂକଳକ

ଗୋପାଳକୃଷ୍ଣ ଗ୍ରନ୍ଥାବଳୀ

## କବି କଳହଂସ ଭକ୍ତ କବି ଗୋପାଳକୃଷ୍ଣ ପଟ୍ଟନାୟକଙ୍କର

# ସଂକ୍ଷିପ୍ତ ଜୀବନୀ

ବନସ୍ତ ଭିତରେ ଯେତେବଡ଼ ଗହଳିଆ ସ୍ଥାନ ହୋଇନା କାହିଁକି ସୁବାସିତ ଫୁଲ ଟେଣ୍ଡାଏ ଫୁଟିଲେ ତାର ମହକ ଯେଉଁ ଭଳି ସ୍ୱଭାବରେ ଚାରିଆଡ଼କୁ ଖେଳିଯାଏ, ସେହିଭଳି ଜଣେ ସୁପୁରୁଷ ଯେତେବଡ଼ ଅନୁନ୍ନତ ଅଞ୍ଚଳରେ ଜନ୍ମ-ଲାଭ କରିଥାଆନ୍ତୁ ନା କାହିଁକି ତାଙ୍କର ଖ୍ୟାତିଜନକ ( **Causing good name** ) ଘଟଣାବଳୀ ସହସ୍ର ମୁଖରେ ପ୍ରସ୍ଫୁରିତ ହୋଇଥାଏ ।

ଯାର ପ୍ରସବିନୀ ଉତ୍କଳ ଭୂମି । ଯାହା ବକ୍ଷରେ ପ୍ରବାହିତ ନଦୀ···ମହାନଦୀ, ଚରଣଚୁମ୍ବି ସାଗର···ମହୋଦଧି, ହାଣ୍ଡିର ଧୂଳି···ସରଧାବାଲି,···ଯେଉଁ ଦେଶର ହାଣ୍ଡି ବଡ଼ହାଣ୍ଡି,···ଠାକୁର···ବଡ଼ଠାକୁର, ଦେଉଳ···ବଡ଼ ଦେଉଳ ଯାଙ୍କୁ ଯେଉଁ ଦେଶର ପତାକା ପତିତପାବନ ନାମକୁ ଧାରଣକରି ଶହ ଶହ ହଜାର ହଜାର କୋଶ ବାଟରୁ ପାପି ତାପି ମାନଙ୍କୁ ସ୍ୱକୀୟ ମହିମା ବଳରେ ଟାଣି ଆଣି ସେମାନଙ୍କ ମନରେଥିବା ଦାମ୍ଭୀକତା, କ୍ରୁରତା ଇତ୍ୟାଦିକୁ ହଟେଇ ଦେଇ ସେଇ ସବୁ ସ୍ଥାନରେ ଶାନ୍ତି ଓ ପବିତ୍ରତା ଭରିଦିଏ, ସେହି ପୁଣ୍ୟ ଦାତ୍ରି ମାଁ···ପତିତ ତାରିଣୀ ଉତ୍କଳଭୂମିର ମାଟି ଉପରେ ନାଚକୁଦ···ଖେଳ ବୁଲ···କେତେଯେ ମହାତ୍ମା ଜନ୍ମମାଟି ଓଡ଼ିଶାର ନାମ ରଖିଯାଇଛନ୍ତି ତାହା ଇତିହାସ କହିବ ।

ଯାର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ ବର୍ଗେଶ୍ୱର ଶ୍ରୀ ଶ୍ରୀ କପିଳେନ୍ଦ୍ର ଦେବଙ୍କର ଯେଉଁ ପୁଅ ଦାକ୍ଷିଣାତ୍ୟରେ ଗୋଟିଏ ମ୍ଳେଚ୍ଛ ରାଜାକୁ ମାରି ପାରଳାଖେମୁଣ୍ଡି ରାଜ୍ୟସ୍ଥାପନ କଲେ ସେତେବେଳେ ନିଜର ରାଜ୍ୟରେ ଭଲ ବ୍ରାହ୍ମଣ ଓ ଶିକ୍ଷିତ ଲୋକ ନଥିବାରୁ ଯଯାତି ନଗର (ଯାଜପୁର) ରୁ କେତେ

ଜଣ ବ୍ରାହ୍ମଣ ଓ କରଣଙ୍କୁ ସପରିବାରେ ନେଇ ସେମାନଙ୍କ ପାଇଁ ପାରଳା ଖେମୁଣ୍ଡିରେ ବୃତ୍ତିଖଞ୍ଜି ଦେଇଥିଲେ । କାଳକ୍ରମେ ଏହି ବ୍ରାହ୍ମଣ, କରଣମାନେ ପାରଳାର ବାସିନ୍ଦା ହୋଇ ପଡ଼ିଲେ । ବନବାସୀ ପଟ୍ଟନାୟକ ସେହି କରଣ ପରିବାରର ଗୋଟିଏ ନାମଯାଦା ଲୋକ । ରାଜାଙ୍କ ପାଞ୍ଜିଆ କରଣଥିବାରୁ ଟଙ୍କା ସମ୍ମାନ, ଓ ପ୍ରତିପତ୍ତି ସେତେବେଳ ସମୟରେ କମ୍ ନଥିଲା । କିନ୍ତୁ ଗୋଟିଏ ବିଷୟରେ ତାଙ୍କ ମନରେ ସବୁବେଳେ ଦୁଃଖ ରହୁଥିଲା ଯେ ଲଳିତାଦେଈଙ୍କୁ ବିବାହ କରିବାର ବହୁଦିନ ପରେ ମଧ୍ୟ ତାଙ୍କ କୋଳକୁ ପବିତ୍ର କରିବା ନିମନ୍ତେ ସନ୍ତାନଟିଏ ହୋଇ ନଥିଲା । ଗୌରଭକ୍ତ ବନବାସୀ ଓ ଲଳିତା ଦୁହେଁଯାକ ମିଳିତ କଣ୍ଠରେ ଠାକୁରଙ୍କୁ ଜଣାଣ କରନ୍ତି ଠାକୁରେ ଆମ କୋଳରେ ପିଲାଟିଏ ଦିଅ ।

ସନ ସତର ଶହ ସତସ୍ତରି ମସିହା ଆଶ୍ୱିନମାସ ଶୁକ୍ଳ ପକ୍ଷ ନବମୀ ତିଥି । କେଉଁ ଯୋଗରେ ସେଦିନର ପ୍ରଭାତ ହୋଇଥିଲା କେଜାଣି ବନବାସୀ ପଟ୍ଟନାୟକଙ୍କଗୃହକୁ ଆଲୋକିତକରି ତଦୀୟ ପତ୍ନୀ ଲଳିତା ଦେଈଙ୍କ କୋଳରେ ଜନ୍ମଲାଭ କଲା ଗୋଟିଏ ଶିଶୁ । ତାର କୁଆଁ କୁଆଁ କାନ୍ଦଣାରେ ବାପମାଙ୍କ ଆନନ୍ଦ କହିଲେ ନସରେ । ନାମକରଣ ଉତ୍ସବରେ ଭକ୍ତ ବନବାସୀପଟ୍ଟନାୟକ ପହିଲି ସନ୍ତାନର ନାମଦେଲେ **ଗୋପାଳକୃଷ୍ଣ** ।

ଗୋପାଳକୃଷ୍ଣଙ୍କ ବ୍ୟତୀତ ମାତା. ଲଳିତା ଦେଈଙ୍କ କୋଳରୁ ପର ୨ ଦୁଇଟି ସନ୍ତାନ ଓ ତିନୋଟି ସନ୍ତତି ମାନଙ୍କର କୁଆଁ ରଡ ଶୁଣାଯାଇଥିଲା । ମାତ୍ର ବିଧିର ବିଧାନ ବିଚିତ୍ର । ଭଗବାନ ଚାହୁଁ ନଥିଲେ ବନବାସୀଙ୍କ ମୁହଁରେ ଏତେ ହସ ଦେଖିବାକୁ । ଯେଉଁ ଶିଶୁମାନେ ଜନ୍ମ ହେଲାବେଳେ ନିଜେ କାନ୍ଦି ବାପ ମାଆଙ୍କ ମୁହଁରେ ହସ ଫୁଟାଇଥିଲେ ସେଇମାନେ ଦିନ କେଇଟା ମାତ୍ର ବ୍ୟବଧାନରେ ସମସ୍ତଙ୍କ ମୁହଁରେ ବିଷାଦ ବୋଳି ଆଖିରୁ ଲୁହ ଢାଳି ସାଆନ୍ତ ଗାଆଁ ସେମୁଣ୍ଡ ମଶାଣି ପଦାକୁ ।

ସମସ୍ତେ କହନ୍ତି ଗୋପାଳକୃଷ୍ଣଙ୍କ ଜାତକ ( ଅବଧାନଙ୍କ ତିଆରି ଜନ୍ମ ପତ୍ରିକା ) ବଡ ଉଗ୍ର ଧରଣର ଥିଲା । ବୋଧହୁଏ ସେଇଥିପାଇଁ ତାଙ୍କ ତଳର ଭାଇ ଭଉଣୀମାନଙ୍କୁ କେହି ଗୋଟିଏ ହେଲେ ଶୈଶବଦଶାରେ ବଞ୍ଚି ପାରିଲେ

ନାହିଁ । ଛଅଟି ସନ୍ତାନର ସମସ୍ତ ସ୍ନେହ ମମତାକୁ ଏକୁଟିଆ ଭୋଗ କରି ଗୋପାଳକୃଷ୍ଣ ଶୁକ୍ଳପକ୍ଷ ଚନ୍ଦ୍ରପରି ବଢ଼ିବାକୁ ଲାଗିଲେ । ସାତବର୍ଷ ବୟସରେ ତାଙ୍କର ବିଦ୍ୟାରମ୍ଭ ହେଲା । ମାତ୍ର ସେ ପାଠ ପଢ଼ାରେ ମନ ନ ଦେଇ ଦଶବର୍ଷ ଯାଏ ଗାଈ ମଇଁଷୀ ମାନଙ୍କ ପଛରେ ଗୋଡେଇ ଗୋଡ଼େଇ ବାପା ମାଆଙ୍କର ଚିନ୍ତାର ପାତ୍ର ହେଲେ । ଏକମାତ୍ର କୁଳର ପ୍ରଦୀପ ଏହି ଅଳିଅଳ ସନ୍ତାନର ବିଦ୍ୟାପ୍ରତି ନିରୁତ୍ସାହିତା ଭାବ ଦେଖି ବନବାସୀ ପଟ୍ଟନାୟକଙ୍କର ଦୁଃଖ କହିଲେ ନସରେ ।

## ପାଠ ପଢ଼ିବ

ସେଦିନର କଥା । ଯେଉଁ ଦିନ କି ଗୋପାଳକୃଷ୍ଣଙ୍କ ମନରେ ଅଦ୍ଭୁତ ପୂର୍ବ ପରିବର୍ତ୍ତନ ଆସିଲା । ବୈକୁଣ୍ଠ ପଟ୍ଟନାୟକ ନାମରେ ବନବାସୀ ପଟ୍ଟନାୟକଙ୍କର ଜଣେ ପଡ଼ୋଶୀ ଥିଲେ । ତାଙ୍କ ( ବୈକୁଣ୍ଠଙ୍କ ) ଚଉପାଢ଼ୀରେ ଅଧିକାଂଶ ବେଳେ ପଣ୍ଡିତ ମାନଙ୍କର ଭିଡ଼ ହୋଇ ନାନାବିଧ ଶାସ୍ତ୍ରାଲୋଚନା ଚାଲେ । ବନବାସୀ ପଟ୍ଟନାୟକଙ୍କ ସହ ବୈକୁଣ୍ଠ ମହାଶୟଙ୍କର ସମ୍ପର୍କ ଅତି ମଧୁର ଥିଲା । ଶାସ୍ତ୍ରାଲୋଚନା ସମୟରେ ବନବାସୀ ସେଥିରେ ଅଂଶ ଗ୍ରହଣ କରନ୍ତି । ଏଇଭଳି କୌଣସି ଦିନ ପଣ୍ଡିତ ମାନଙ୍କର ସଭା ବସିଥିବା ବେଳେ ଶିଶୁ ଗୋପାଳକୃଷ୍ଣ ସେଠାରେ ଉପସ୍ଥିତ ହୋଇ, ଉପସ୍ଥିତ ବିଦ୍ବଜ୍ଜନ ମଣ୍ଡଳୀ ସହ ଆପଣା ପିତାଙ୍କୁ ପ୍ରଣିପାତ କରି ଭୟ ଓ ସଙ୍କୋଚର ସହ ସେଠାରେ ବସିପଡ଼ିଲେ । ପାଞ୍ଜିଆ କରଣଙ୍କ ଏହି ଶିଶୁ ପୁତ୍ରଟିର ଅପରୂପ ସୌନ୍ଦର୍ଯ୍ୟ, ନମ୍ରତା ଓ ଶିଷ୍ଟାଚାରରେ ସମସ୍ତେ ମୁଗ୍‌ଧ ହୋଇ ପ୍ରଶଂସା କଲାବେଳେ ଶୁଣିବାକୁ ପାଇଲେ ଯେ, ମହାକାଳ ଫଳ ପରି ଏହି ପିଲାଟିର କେବଳ ଚମଡ଼ା ସୁନ୍ଦର । ଭିତରେ କିଛି ସୁନ୍ଦର ହୋଇନାହିଁ । କୈଶୋରର ମଧ୍ୟାହ୍ନରେ ଉପସ୍ଥିତ ହୋଇମଧ୍ୟ ପିଲାଟା ପାଠ ନପଢ଼ି ଗୋରୁ ମଇଁଷୀ ପଛରେ ଗୋଡାଇ ଗୋଡ଼ାଇ ସମୟ ବିତାଇ ଦେଉଛି । ଏ ବିଷୟ ଯେତେବେଳେ ସଭାସ୍ଥିତ ସଜ୍ଜନମାନେ ଜାଣିଲେ, ଘୃଣାରେ ନାସିକା କୁଞ୍ଚନ କରି ଗୋପାଳକୃଷ୍ଣଙ୍କ ଉପରୁ ମୁହଁ ଫେରାଇ ନେଲେ । ଯେଉଁମାନେ ଅଳ୍ପ ସମୟ ତଳେ ପ୍ରଶଂସା କରିବାକୁ ଶତଜିହ୍ବ ହୋଇ ଉଠିଥିଲେ, ସେଇ ମାନଙ୍କ ମୁହଁରୁ ନିନ୍ଦାଶୁଣି ଗୋପାଳକୃଷ୍ଣ ଅପମାନରେ ଜର୍ଜି

ପଡ଼ିଲେ । ସେହିଦିନ ଠାରୁ ତାଙ୍କ ମନରେ ପରିବର୍ତ୍ତନ ଆସିଲା । ବିଦ୍ୟାଧ୍ୟୟନ ସହିତ ସେ ଶ୍ଳୋକ ଶୋଷ ମଧ୍ୟ ଭୁଲିଗଲେ । ପିଲାଦିନରୁ ତାଙ୍କର ଆରାଧ୍ୟ ଦେବତା ଥିବା ରାଧାକୃଷ୍ଣଙ୍କ ପଣରଥି ପାଠପଢ଼ି ଚାଲିଲେ ।

ପ୍ରାୟ ପନ୍ଦର ବର୍ଷ ବୟସରେ ଅମର କୋଷାଦି ଅଧ୍ୟୟନ ସହ ଛନ୍ଦ, ଉପନିଷଦ, ବେଦ, କଉମୁଦୀ, କାଳିଦାସ ଆଦିଙ୍କ ନାନାଦି କାବ୍ୟ ଶାସ୍ତ୍ର ପଢ଼ି ଜ୍ଞାନ ଗାରିମାରେ ଖୁବ୍ ଅଳ୍ପ ବୟସରୁ ଗୋପାଳକୃଷ୍ଣ ଧୁରନ୍ଧର ହୋଇ ପଡ଼ିଲେ । ସାଧୁ ସଜ୍ଜନମେଳରେ ପରିଚିତ କରାଇ ପୁତ୍ରର ଗୁଣ ବର୍ଦ୍ଧନ ସହିତ ପିତା ବନବାସୀ ପଟ୍ଟନାୟକ ପାରଳାଖେମୁଣ୍ଡି ରାଜ ସଭାକୁ ତାଙ୍କୁ ଖଣ୍ଡମନ୍ତ ସାଙ୍ଗରେ ନେଲେ । ଗୋପାଳକୃଷ୍ଣଙ୍କର ଅସାଧାରଣ ଜ୍ଞାନ ଦେଖି ସମସ୍ତେ ଚମତ୍କୃତ ହେଲେ । ସନ୍ତାନବତ୍ସଳ ପିତା ନିଜର ପିଲାମାନଙ୍କଠାରୁ ଯାହା ଆଶା କରନ୍ତି ବନବାସୀ ପଟ୍ଟନାୟକଙ୍କଠାରେ ତାହାହିଁ ଦେଖିବାକୁ ମିଳିଲା । ଏକ ମାତ୍ର ପୁତ୍ର ଗୋପାଳକୃଷ୍ଣଙ୍କୁ 'ସ୍ୱୈର ନାମ୍ନୀ ସୁନ୍ଦରୀ ଯୁବତୀ ସହ କୋଡ଼ିଏ ବର୍ଷ ବୟସରେ ବିବାହ କରାଇ ଦେଇ ସବୁଦିନ ପାଇଁ ଆଖି ବୁଜିଲେ ।

ଉପଯୁକ୍ତ ପିତାଙ୍କର ଉପଯୁକ୍ତ ଦାୟାଦ ଭାବରେ ଗୋପାଳକୃଷ୍ଣ ପଟ୍ଟନାୟକ ପାରଳାଖେମୁଣ୍ଡିର ଗଜପତି ମହାରାଜଙ୍କ ଦରବାରରେ 'ପାଞ୍ଜିଆ କରଣ' ରୂପେ ନିଯୁକ୍ତି ପାଇଲେ । ତାଙ୍କର କର୍ମ ଦକ୍ଷତା ପ୍ରତ୍ୟେକଙ୍କୁ ମୁଗ୍ଧ କଲା । ମାତ୍ର ଜଣେ ସ୍ୱାର୍ଥ ଲିପ୍ସୁ କର୍ମଚାରୀ ଗୋପାଳକୃଷ୍ଣଙ୍କ ଲୋକ ପ୍ରିୟତାକୁ ବରଦାସ୍ତ କରି ପାରିଲେ ନାହିଁ । ସେ କିଏ ?

## ବିପ୍ଳବୀ ଗୋପାଳକୃଷ୍ଣ

ସେତେବେଳେ 'ପଦ୍ମନାଭ' ନାମରେ ପାରଳାଖେମୁଣ୍ଡି ରାଜ୍ୟର ଜଣେ ମ୍ୟାନେଜର ଥାଆନ୍ତି । ବ୍ରିଟିଶ ସରକାରଙ୍କ ନେଇ ଗୋଡ଼ ଘଷିଥିବା ଏପରି ପ୍ରଭୁତ୍ୱ ଦେଖାଉଥିଲେ ଯେ ତାଙ୍କ ଅତ୍ୟାଚାରରେ ଗଗନ ପବନ ଥରହର ହେଉଥିଲା । ଜୋରସାହି ଶାସନ ସହିତ ପ୍ରଜାକୂଳ ପଦେ ପଦେ ଶ୍ରାନ୍ତକ୍ଳାନ୍ତ । ରାଜଲକ୍ଷ୍ମୀର ଲୀଳା ସ୍ଥଳୀ ପୁଣ୍ୟତମା ଜନନୀ ଭୂମି ଦ୍ୱନ୍ଦ୍ୱକ୍ଷ ଲୁଣ୍ଠନର ଜଣ ଲୁହରେ

ଆବୃ୍ତ୍ତୀଭୂତ । ଅନନ୍ତ ପ୍ରସନ୍ନାକାଶ ଅତ୍ୟାଚାରର ପ୍ରପୀଡ଼ିତ ନିରକ୍ଷ ମାନଙ୍କର ପ୍ରାଣାନ୍ତକ ଆର୍ତ୍ତନାଦରେ ଭକ୍ତ ଗୋପାଳକୃଷ୍ଣଙ୍କ କଂପିତ ପ୍ରାଣ ହାୟ୍ ହାୟ୍ କରି ଉଠେ । ତଥାପି ତାଙ୍କର କି ଅଭିଶାପ ପାରଳାଖେମଣ୍ଡୀ ପ୍ରତି ?

ମେଘ ଆସେ······ବରଷେ ନାହିଁ ।

ଶସ୍ୟ ଲଦେ······ଫଳେ ନାହିଁ ।

ରୁକ୍ଷ ଶୁଶାସର ଦୁର୍ଦ୍ଧର୍ଷ କାପାଳିକର ଅବତାର ଧରି ପଦ୍ମନାଭ ଦେବ ପ୍ରେତ ଦାସ ମାନଙ୍କ ଠାରୁ ଯେଉଁ ତାଣ୍ଡବ ମାଧୁର୍ଯ୍ୟ ଅନୁଭବ କରନ୍ତି ତାର ଶେଷ କେଉଁଠି ? ତାଙ୍କର ଅମାନୁଷିକ ଖଳ, ପୈଶାଚୀକ ପ୍ରବୃତ୍ତି ଦେଖି ଦେଖି ଗୋପାଳକୃଷ୍ଣ ଅସ୍ଥିର ହୋଇ ପଡ଼ିଲେ । ପ୍ରଜାପୁଞ୍ଜର ଆକୁଳ ନିବେଦନ ଶୁଣି ଶୁଣି ସେ ବଧିର ହୋଇଗଲେ । କିଂତୁ ନିବେଦନ ଏମିତି ଚୁପ ହୋଇ ବସିବେ ? ଶେଷକୁ ସ୍ଥିର କରି ନେଲେ ଯେ କୋଟି ଅନ୍ତରର ବିପ୍ଳବ ବହ୍ନି ଦିଗ ଦିଗନ୍ତରୁ ଲେଲିହାନ ମାନ ରସନାରେ ଆସି ପଦ୍ମନାଭ ଦେବଙ୍କୁ କପରି ଛାର ଖାର କରିଦେବ !

ସେତେବେଳେ ପାରଳାଖେମଣ୍ଡୀର ଗଜପତି ଥିଲେ ଜଗନ୍ନାଥ ନାରାୟଣ ଦେବ । ରାଜ୍ୟରେ ପ୍ରଜା ଅଶାନ୍ତ । କେତେ କେତେ ପ୍ରଜା ରାଜ୍ୟ ଛାଡ଼ି ଚାଲି ଯାଉଛନ୍ତି ଏହି କଥା ଚିନ୍ତାକରି କରି ସେ ଏକ ରକମ ପ୍ରାୟ ପାଗଳ ହୋଇ ଗଲେଣି ।

ହଠାତ୍ ଦିନେ ଶୁଣାଗଲା ଯେ ମ୍ୟାନେଜରର ପଦ୍ମନାଭ ଦେବଙ୍କ ଦମନ ନୀତି ବିରୁଦ୍ଧରେ ପାଞ୍ଚିଆ କରଣ ଗୋପାଳକୃଷ୍ଣ ପଟ୍ଟନାୟକ ବିଦ୍ରୋହ ସୃଷ୍ଟି କରି ସେ କଉଳ କିବରେ ପଦଚ୍ୟୁତ ହେବେ ଏଥିପାଇଁ କଲେକ୍ଟରଙ୍କୁ ଲେଖିଛନ୍ତି । ଏକଥା ଶୁଣାଯିବା ପରେ ସ୍ୱାର୍ଥଲିପ୍ସୁ କର୍ମଚାରୀ ମାନେ ଗୋପାଳକୃଷ୍ଣଙ୍କୁ ଜୀବନରେ ମାରିଦେବାପାଇଁ ଷଡ଼ଯନ୍ତ୍ର କଲେ । ସେ ( ଗୋପାଳକୃଷ୍ଣ ) ଯେତେବେଳେ ଏ ଖବର ପାଇଲେ କାହାକୁ କିଛି ନକହି ରାତାରାତି ପାରଳା ଖେମୁଣ୍ଡୀ ଛାଡ଼ି ଗଞ୍ଜାମ ଚାଲିଆସିଲେ ।

## ବିପ୍ଳବୀ ନୁହେଁ କବି

ଯୌବନର ମଧ୍ୟାହ୍ନରେ ଗୋପାଳକୃଷ୍ଣ ନଗର ବୁଲିଯାଇଥିବାବେଳେ ଏକଦା କୁମୁଟି ( ଦକ୍ଷିଣର ବୈଶ୍ୟଜାତି) ଘରର ସୁନ୍ଦରୀ ଯୁବତୀଟିଏ ଦେଖିବାକୁ ପାଇଥିଲେ । ସେହି ସୁନ୍ଦରୀ ଯୁବତୀଟି ଗୋପାଳକୃଷ୍ଣଙ୍କ ହୃଦୟରେ କବିତ୍ୱର ଉତ୍ସ ସୃଷ୍ଟି କରିଥିଲା । ଘରକୁ ଚାଲିଆସି ଯୁବତୀର ଅପରୂପ ଶୋଭାକୁ ଗୋପାଳକୃଷ୍ଣ ଭୁଲି ପାରିଲେ ନାହିଁ । ତାଳ ପତ୍ରର ବକ୍ଷ ବିଦୀର୍ଣ୍ଣ କରି ଲେଖନୀ ମୁନରେ ମଚମଚ କରି ଲେଖିଗଲେ ଜୀବନର ପ୍ରଥମ କବିତା । ''ସ୍ନେହ ଦେଇ ବନ୍ଧି ନଯାରେ'' ଜ୍ଞାନ ଓ ବିପ୍ଲବୀ ଗୋପାଳକୃଷ୍ଣଙ୍କୁ 'କବି ଗୋପାଳକୃଷ୍ଣ' ରୂପେ ତାଙ୍କୁ ପରିଚିତ କରାଇଲା । କିନ୍ତୁ ଗୋପାଳକୃଷ୍ଣଙ୍କ କବିତାର ଆଉ ଜଣେ ସାର୍ଥକ ପୂଜାରୀ କୃପାସିନ୍ଧୁ ନରେନ୍ଦ୍ରଦେବ କହନ୍ତି ଯେ ଗଞ୍ଜାମରେ ରହିଥିବାବେଳେ ବନ୍ଧୁବର ଚକ୍ରପାଣି ପଟ୍ଟନାୟକ ଓ ଆଉ କେତେଜଣଙ୍କ ସହ ଯୁବକ ଗୋପାଳକୃଷ୍ଣ ସନ୍ଧ୍ୟାସମୟରେ ଋଷିକୁଲ୍ୟା ନଦୀକୂଳକୁ ବୁଲି ଯାଇଥିବା ସମୟରେ ପୂର୍ବୋକ୍ତ କୁମୁଟୀ ଜାତୀୟ ସୁନ୍ଦରୀ ଯୁବତୀକୁ ମୁଣ୍ଡରେ ପାଣି ବୋହି ନେଉଥିବାର ଦେଖି ସମସ୍ତେ ଚମତ୍କୃତ ହୋଇଥିଲେ । ଏହାପରେ ସେହି ଯୁବତୀକୁ ଲକ୍ଷ୍ୟକରି ଏକ ଏକ କବିତା ରଚନା କରିବା ନିମନ୍ତେ ଶ୍ରୀକରଣ-ପଟ୍ଟନାୟକ କହିବାରୁ ସମସ୍ତେ କବିତା ଲେଖିଲେ । ମାତ୍ର ଆଗରୁ କେବେ ଲେଖା ଲେଖି କରି ନ ଥିବାରୁ ଗୋପାଳକୃଷ୍ଣ ଅସାମର୍ଥ୍ୟ ପ୍ରକାଶ କଲେ । କିନ୍ତୁ ଶ୍ରୀକରଣ ପଟ୍ଟନାୟକଙ୍କର ଜିଦ୍ ଯେ ପ୍ରତ୍ୟେକଙ୍କୁ କବିତା ଲେଖିବାକୁ ହେବ । ପରିଶେଷରେ ସମସ୍ତଙ୍କ ଅନୁରୋଧରେ ଅନୁରୁଦ୍ଧ ହୋଇ ଗୋପାଳକୃଷ୍ଣ ଯେଉଁ କବିତାଟିକୁ ରଚନା କଲେ ତାହା ପୂର୍ବରୁ କୁହାଯାଇଛି । ଶ୍ରୀକରଣ ପଟ୍ଟନାୟକ ସମସ୍ତଙ୍କ କବିତାଗୁଡ଼ିକୁ ଏକାଠି କରି ଦେଖିଲେ ଯେ ସ୍ୱଳ୍ପ ବୟସ୍କ ଓ ନବୀନ-କବି ଗୋପାଳକୃଷ୍ଣଙ୍କ କବିତାର ଭାବ ଭଙ୍ଗୀଆଦି ଅନ୍ୟାନ୍ୟ କବିମାନଙ୍କ ଲେଖା ଅପେକ୍ଷା ଉପଗ୍ରାହ୍ୟ ଓ ସମୟୋପଯୋଗୀ ହୋଇଛି । ଯେତେବେଳେ ଶ୍ରୀକରଣ-ପଟ୍ଟନାୟକ ସଙ୍ଗୀମେଳରେ ଏହି କଥା ପ୍ରକାଶ କଲେ, ଉପସ୍ଥିତ ବନ୍ଧୁବାନ୍ଧବ ଚକ୍ରପାଣି ପଟ୍ଟନାୟକ ଯୁବକ ଗୋପାଳକୃଷ୍ଣଙ୍କୁ ପ୍ରଥମେ ଅଭିନନ୍ଦନ ଜଣାଇଲେ ଏବଂ କବିତା ଲେଖା ନଛାଡ଼ି ଯଥାମତ ସାଧନା କଲେ ଭବିଷ୍ୟତରେ ପ୍ରଶଂସା ମିଳିବ ବୋଲି ଉପଦେଶ ଦେଇଥିଲେ ।

ପରବର୍ତ୍ତୀ ଜୀବନରେ ଚକ୍ରପାଣି ପଟ୍ଟନାୟକଙ୍କ କଥା ଅକ୍ଷରେ ଅକ୍ଷରେ ସତ ହେଲା । ଗ୍ରାମ୍ୟ ରସରେ କବିତା ଲେଖି ଗୋପାଳକୃଷ୍ଣ ସମସ୍ତଙ୍କୁ ଝପିଗଲେ । ଯାଉଛୁ ଗ୍ରାମାରତନ ଚନ୍ଦ୍ରବଦନା ସ୍ୱାମୀ, ସତେ କହୁବଳ ବନ୍ଧୁ, ହାସ ମଲ୍ଲୀକ, ଆରେ ସରସ ହୃଦୟ୍ୟା କାନ୍ତ ମୋର ଏ ବସନ୍ତ କାଳରେ ଆଦି ଏହି ଗ୍ରାମ୍ୟରସ କବିତାର ଅନ୍ତର୍ଭୁକ୍ତ ଅଟେ ।

ଗ୍ରାମ୍ୟରସର ଗୀତମାନ ଲେଖା ଚାଲିଥିବାବେଳେ ଏକଦା କବିଙ୍କ ଦୀକ୍ଷାଗୁରୁ ଲୋକନାଥ ଗୋସ୍ୱାମୀଙ୍କଠାରୁ ଆଦେଶ ପାଇ ଗ୍ରାମ୍ୟରସର କବିତା ବନ୍ଦ ହୋଇଯାଇ ତା ବଦଳରେ ଭକ୍ତିରସ କବିତାର ଝରଣା କବିଙ୍କ ଲେଖନୀ ମୁନରୁ ମୃତ୍ୟୁ ପର୍ଯ୍ୟନ୍ତ ଛୁଟି ଚାଲିଲା ।

ଗଜପତି ଜଗନ୍ନାଥନାରାୟଣ ଦେବଙ୍କ ପରେ ତାଙ୍କ ପୁଅ ପ୍ରତାପରୁଦ୍ର-ଦେବ ପାରଳା ସିଂହାସନ ଅଳଂକୃତ କରିଥିଲେ । ସେ ମହାଶୟ ଗୋପାଳକୃଷ୍ଣ-ଙ୍କର ଆଲୌକିକ କବି ପ୍ରତିଭା ଦେଖି ମୁଗ୍ଧ ହୋଇଥିଲେ । ତାଙ୍କୁ କବି କଳହଂସ ଉପାଧି ଦେଇ ଏକୋଇଶିଖଣ୍ଡ ଗ୍ରାମରେ କରଶିକ କରିଦେଇ ଥିଲେ । ଗୋପାଳକୃଷ୍ଣ ଯେତେବେଳେ ସଭାତ୍ୟାଗ କରି ଘରକୁ ଯାଆନ୍ତି ସେତେବେଳେ ଗୁଣଗ୍ରାହୀ ମହାରାଜାଙ୍କ ନିର୍ଦ୍ଦେଶରେ ତାଙ୍କ ଆଗରେ ଯୋଡ଼ି ମଶାଲ ଯାଉଥିଲା । ଏହାର ପ୍ରତିବଦଳରେ ସେ କେତେଗୁଡ଼ିଏ ସଂସ୍କୃତ ଶ୍ଳୋକର ପଦ୍ୟାନୁବାଦକରି ମହାରାଜା ପ୍ରତାପରୁଦ୍ରଦେବଙ୍କ ନାମରେ ସେସବୁକୁ ଭଣିତା କରିଥିଲେ ।

ଗ୍ରାମ୍ୟ ଗୀତ, ପ୍ରେମଗୀତ ଓ ଭକ୍ତିଗୀତ ହଜାର ହଜାର ସଂଖ୍ୟାରେ ସେ ଲେଖିଛନ୍ତି । ମାତ୍ର ସେଗୁଡ଼ିକର ପାଣ୍ଡୁଲିପି ସାଇତି ରଖିନଥିବାରୁ ଆଜିକାଲି ଖୋଜି ପାଇବା ଦୁଷ୍କର ହୋଇଛି । ଇନ୍ଦୁନାମ୍ନୀ ଜଣେ ଦେବଦାସୀ ନୃତ୍ୟଛଳରେ ତାଙ୍କର କବିତାଗୁଡ଼ିକୁ ପ୍ରଚାର କରାଇ ଥିଲା । ସେହି ଅବସରରେ ସିଏ ଯେଉଁଠି ତାଙ୍କର ଯେଉଁ କବିତାଟି ଶୁଣିଲା ସେ ସେତକ ଲେଖି ରଖିଲା । ଏହିଭଳି ଭାବରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ତାଙ୍କର କବିତାବଳୀ ଶୁଣିବାକୁ ମିଳୁଥାଏ ।

# ଅନ୍ତିମ ପଥର ଯାତ୍ରୀ

ବୃଦ୍ଧ ବୟସରେ ଜ୍ୟେଷ୍ଠପୁତ୍ର କରୁଣାନିଧି ପଟ୍ଟନାୟକଙ୍କ ମୃତ୍ୟୁଜନିତ ଦୁଃଖ ତାଙ୍କୁ ତିଳ ତିଳ କରି ଦଗ୍ଧୀଭୂତ କରୁଥିଲା । ଏହିଭଳି ସମୟରେ ଜ୍ୱାଇଁ ମରିଯିବାରୁ ଝିଅର ବୈଧବ୍ୟବେଶକୁ ଦେଖି ସେ ଧୈର୍ଯ୍ୟହରା ହୋଇ ପଡ଼ିଲେ । ଖାରଡ଼ା ଗ୍ରାମରେ ମଠଟିଏ ପ୍ରତିଷ୍ଠାକରି ସେହିଠାରେ ନିଜର ସନ୍ୟାସ ଜୀବନ ଯାପନ କରୁଥିବାବେଳେ ୮୫ବର୍ଷ ବୟସରେ ୧୮୭୨ମସିହା ଫାଲ୍‌ଗୁନ ଶୁକ୍ଳ ଦ୍ୱିତୀୟା ତିଥିରେ ଇହଧାମ ଛାଡ଼ି ପରମେଶ୍ୱରଙ୍କର ପଦବାସୀ ହେବା ଲାଳସାରେ ସେ ପାରିକୁ ଚାଲିଗଲେ । ଯେଉଁଠାକୁ ଲୋକ ଥରେ ଗଲେ ଆଉ ଫେରେନାହିଁ ।

ପିତାଙ୍କ ଆଦେଶାନୁଯାୟୀ ତାଙ୍କର ଦୁଇପୁତ୍ର ଗୌରଚନ୍ଦ୍ର ପଟ୍ଟନାୟକ ଓ ହରିବନ୍ଧୁ ପଟ୍ଟନାୟକ ବୈଦିକ ମତରେ ପ୍ରେତଶ୍ରାଦ୍ଧ ନକରି ବୈଷ୍ଣବମତରେ ସମସ୍ତ କର୍ମ ସାଙ୍ଗକଲେ ।

କବି କଳହଂସ, ପାରଳା ଖେମୁଣ୍ଡୀର ବସନ୍ତ କୋକିଳ ଭକ୍ତ କବି ୰ଗୋପାଳକୃଷ୍ଣଙ୍କ ତିରୋଧାନ ଆଜିକୁ ୧୦୭ବର୍ଷ ହୋଇଗଲା । ଏହି ୧୦୭ବର୍ଷରେ କେତେ ନୂଆ ଆସି ପୁରୁଣା ଗଲେଣି । ମାତ୍ର ଗୋପାଳକୃଷ୍ଣ କାବ୍ୟପ୍ରେମୀମାନଙ୍କ ନିକଟରେ ତାଙ୍କର କବିତା ସବୁଦିନେ ଏବେମଧ୍ୟ ଜୀବିତ ଅଛନ୍ତି ଏବଂ ବହୁ ଶତାବ୍ଦି ଧରି ରହିବେ ମଧ୍ୟ । ତାଙ୍କ ଅମର ଲେଖନୀରୁ ନିସୃତ କବିତାମାନ ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ନାମରେ ଯେତେବେଳେ ପ୍ରକାଶ ପାଉଛି ସେତେବେଳେ ତାଙ୍କର ଅମର ଆତ୍ମା ପ୍ରତି ଆମର ଭକ୍ତି ଓ ଶ୍ରଦ୍ଧା ନିବେଦନ କରୁଛୁ ।

ଦାଣ୍ଡି ବୃତ୍ତିର ପ୍ରଚଳନ ଶିଥିଳ ହେବାପରେ 'କୋଇଲି' କବିତା ମଧ୍ୟରେ ଗୀତି ମଧୁର ସନ୍ନିବେଷ୍ଟ କରାଇ କବିତାକୁ ଗଣଭୋଗ୍ୟ କରାଇବାର ପ୍ରାଞ୍ଜ ପ୍ରଚେଷ୍ଟା ସପ୍ତଦଶ ଶତାବ୍ଦି ବେଳକୁ ପୂର୍ଣ୍ଣତା ପ୍ରାପ୍ତ ହୋଇଥିଲା । ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦିର କବିମାନଙ୍କ ମଧ୍ୟରେ ଯେଉଁମାନେ ଗୀତି ଧାରାକୁ ପରିପୁଷ୍ଟ କରିଥିଲେ ସେମାନଙ୍କ ଭିତରେ "ଗୋପାଳକୃଷ୍ଣ ପଟ୍ଟନାୟକ" ଉତ୍କଳ ଭୂମିର ସାହିତ୍ୟାକାଶରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛନ୍ତି । ଏହି ବିଶିଷ୍ଟତାର ପ୍ରଧାନ କାରଣ ହେଲା ତାଙ୍କ ଭାଷାର ସରଳତା ଓ ଭାବର ମାଧୁର୍ଯ୍ୟ । ଯଦିଚ କବିସୂର୍ଯ୍ୟଙ୍କ ଚମ୍ପୂ ର ସଙ୍ଗୀତାବଳୀ ଓଡ଼ିଶାର ଘରେ ଘରେ ପରିଚିତ ତଥାପି ତାହା ସାଧାରଣ ଭାଷାଡମ୍ବର ସକାଶେ ଦୁର୍ବୋଧ ହୋଇ ପଡ଼ିଛି । ଏଇ ହେଲା କବିସୂର୍ଯ୍ୟ ଓ ଭକ୍ତକବି ଗୋପାଳକୃଷ୍ଣଙ୍କ ଭିତରେ ତଫାତ୍ । ଗୋପାଳକୃଷ୍ଣ ସରଳ ସହଜ ଓଡ଼ିଆ ଭାଷାରେ କବିତା ରଚନା କରିଥିବାରୁ ତାହା ସମସ୍ତଙ୍କର ପ୍ରାଣସ୍ପର୍ଶୀ ହୋଇ ପାରିଛି । ଯଦିଚ ସେ ( କବି ଗୋପାଳକୃଷ୍ଣ ) ବ୍ରଜରସ ବା ରାଧାକୃଷ୍ଣଙ୍କ ପ୍ରେମରସକୁ କବିତା ମଧ୍ୟରେ ଫୁଟାଇ ଛନ୍ତି ତଥାପି ତହିଁରେ ତାଙ୍କର ବ୍ୟକ୍ତିଗତ ସ୍ପନ୍ଦନ ଓ ସ୍ୱପ୍ନ ସ୍ୱତଃ ସ୍ଫୁରିତ ହୁଏ ।

ଗୋପାଳ କୃଷ୍ଣଙ୍କ ସମସ୍ତ କବିତା ଉଚ୍ଚାଙ୍ଗ ସଙ୍ଗୀତ ରୂପେ ଓଡ଼ିଶାର ପୂର୍ବ ପଲ୍ଲୀରେ ବିଶେଷ ଭାବରେ ଆଦୃତ । ମାତ୍ର ଗୀତି ବିଭବରେ ବିଭୂଷିତ ଏହି କବିତାଗୁଡ଼ିକର ଗୁଣ ଗରିମା ଗାୟକଙ୍କର ସ୍ୱର ବିନ୍ୟାସ ସାପେକ୍ଷ । କାରଣ ସଙ୍ଗୀତର ଆକର୍ଷଣ ରଚନାର ଲଳିତ ଭୂଷାରେ ଯେତେ ନଥାଏ ସେତେ

ଥାଏ ଗାୟକର ସ୍ୱର ସାଧନା ଓ ସଂଯୋଜନାରେ । ମାତ୍ର ସ୍ୱର ମାଧୁର୍ଯ୍ୟଠାରୁ "ଶିଶୁବେତ୍ତି ପଶୁବେତ୍ତି, ବେତ୍ତିଗୀତ ରସଂ ଫଣୀ ।" ଗୋପାଳକୃଷ୍ଣଙ୍କ ରଚନାର ସଙ୍ଗୀତ ରୂପାୟନ ଏହିପରି ସାପେକ୍ଷିକ ଥିବା ସ୍ଥଳେ ସାହିତ୍ୟ ଭାବେ ଏଗୁଡ଼ିକର ଗୁଣ ପ୍ରତିଷ୍ଠା କିନ୍ତୁ ଅନପେକ୍ଷ, ସ୍ୱୟଂ ଶଳସିଦ୍ଧ । କାବ୍ୟାସ୍ୱାଦ୍ଦ ମାନଙ୍କ ନିକଟରେ ଏହା ଗୀତଗୋବିନ୍ଦୀୟ ରଚନା ପରି ଲଳିତ ଭାବ ବ୍ୟଞ୍ଜକ ଓ ବିମୋହକ ।

ପ୍ରାଚୀନ ବହୁ ଓଡ଼ିଆ କାବ୍ୟ କବିତା ସଦୃଶ ରାଧାକୃଷ୍ଣ ପ୍ରସଙ୍ଗ ଗୋପାଳ କୃଷ୍ଣଙ୍କ କବିତାର ଉପଜୀବ୍ୟ ବସ୍ତୁ । ମାତ୍ର ସମଶ୍ରେଣୀୟ ରଚନା ପର୍ଯ୍ୟାୟରେ ଗୋପାଳକୃଷ୍ଣଙ୍କ ରଚନା ଅନ୍ତରଞ୍ଜକ ବା ଅପ୍ରମେୟ ନୁହେଁ କି ଆଲୋଚ୍ୟ କବି ପୂର୍ବବର୍ତ୍ତୀ ବା ପରବର୍ତ୍ତୀ କୌଣସି କବିଙ୍କ ପ୍ରତିଭା ଭିତରେ ବିମଳିନ କାନ୍ତି ନୁହନ୍ତି । ସେ ନିଜ ଜ୍ୟୋତିରେ ନିଜେ ଭାସ୍ୱାନ୍ । ବ୍ରଜ ରସାତ୍ମକ ଯେତେ ଯେତେ କବିତା ଗୋପାଳକୃଷ୍ଣଙ୍କର ଦେଖାଯାଏ ତାହା ତାଙ୍କର କଳ୍ପନା ପ୍ରସୂତ ନୁହେଁ । ଏହି ରସର ସମସ୍ତ କବିତା ପଞ୍ଚ ମହାଜନ ମାନଙ୍କ ପଥାନୁସରଣରେ ସେହି ମାନଙ୍କ ଗ୍ରନ୍ଥ ଅବଲମ୍ବନରେ ଲିଖିତ ବୋଲି କେହି କେହି ବୈଷ୍ଣବ ଶାସ୍ତ୍ରବିତ୍ ସଜ୍ଜନ-ମାନେ କହିଥାଆନ୍ତି । ରସାମୃତସିନ୍ଧୁ, ବୃନ୍ଦାବନ ଲୀଳାମୃତ ବିଦଗ୍ଧ ମାଧବ, ଉଜ୍ଜ୍ୱଳ ନୀଳମଣି, ଶ୍ରୀକୃଷ୍ଣ ଭାବନା ମୃତ, କୃଷ୍ଣ କର୍ଣ୍ଣାମୃତ, ଗୋବିନ୍ଦ ଲୀଳାମୃତ ଓ ଲଳିତ ମାଧବ ଆଦି ବୈଷ୍ଣବ ଶାସ୍ତ୍ରକୁ ନିଜ ଜୀବନର ପରମ ସମ୍ବଳ ବୋଲି ଗୋପାଳକୃଷ୍ଣ ଅନୁଭବ କରିଥିଲେ । କହିବା ବାହୁଲ୍ୟ ହେବ ଯେ ଉଲ୍ଲିଖିତ ବୈଷ୍ଣବ ଶାସ୍ତ୍ରର ଅନେକ ପ୍ରଭାବ ଗୋପାଳକୃଷ୍ଣଙ୍କ କବିତା ମାନଙ୍କ ଉପରେ ପଡ଼ି ସେ ଗୁଡ଼ିକୁ ଜୀବନ୍ତ ଓ ରସଯୁକ୍ତ କରିଛି ।

ରସ କଲ୍ଲୋଳ, ମଥୁରା ମଙ୍ଗଳ ବା ବିଦଗ୍ଧ ଚିନ୍ତାମଣି ସଦୃଶ କୃଷ୍ଣ ବିଷୟକ କାବ୍ୟ ଗ୍ରନ୍ଥ ପାଠରେ ଯେଉଁ କଳା ସମୃଦ୍ଧି ପରିଦୃଷ୍ଟ ହୁଏ, ଗୋପାଳ-କୃଷ୍ଣଙ୍କ କବିତାବଳୀକୁ ଭାବ ସମରେ ପାଠକଲେ ସମ ଗୌରବ ପରିଲକ୍ଷିତ ହେବ । କାବ୍ୟ ଗ୍ରନ୍ଥରେ ବିଷୟ ସନ୍ନିବେଶ ପରି ଏଥିରେ ଦୈନ୍ୟବୋଧିକା ନାମ କୀର୍ତ୍ତନ, ସ୍ୱାଭିଳାଷ କଥନରେ ଅକଳଙ୍କ ପୂର୍ଣ୍ଣଚନ୍ଦ୍ର ମୁଖବୃନ୍ଦ ଦର୍ଶନରେ ଜନ୍ମ ଜନ୍ମର ଦୁଃଖ ବିମୁକ୍ତ ଆଶା ଓ ରାଧାକୃଷ୍ଣଙ୍କ ସାରରସ ପ୍ରସଙ୍ଗାଦି ସମସ୍ତ

ବର୍ଣ୍ଣିତ ହୋଇଅଛନ୍ତି । ପୁନଶ୍ଚ ସମୁଦାୟଭାବେ ନଦେଖି ପ୍ରତ୍ୟେକ କବିତାକୁ ସ୍ୱତନ୍ତ୍ରଭାବେ ବିଚାର କଲେ ପ୍ରତ୍ୟେକଟି ଖଣ୍ଡାକାଶପ୍ରକୃତ ପ୍ରତିଫଳିତ ବିଟପ ଶିଶିର ବିନ୍ଦୁ ପରି ରମଣୀୟ ଓ ପରିପୂର୍ଣ୍ଣ ବୋଧ ହେବ ।

ଏ ସମ୍ପର୍କରେ ଅନ୍ୟତମ ପ୍ରାଚୀନ କବି ଅଭିମନ୍ୟୁ ସାମନ୍ତ ସିଂହାରଙ୍କର ବିଦଗ୍ଧ ଚିନ୍ତାମଣି ସହ ଗୋପାଳକୃଷ୍ଣଙ୍କ କବିତାବଳୀକୁ ତୁଳନା କରାଯାଇ ପାରେ । "ଓ ବାରିଦ ଆଲେଦାସୀ ହୋଇଲେ କିଦୋଷ" କହିଥିଲେ ଅଭିମନ୍ୟୁ । ଏଠାରେ ମଧ୍ୟ ପ୍ରଭୁଙ୍କ ପ୍ରେମରସରେ ନିଜକୁ ମଜାଇ ଭବିଷ୍ୟତ ସୁଖପ୍ରାପ୍ତି ( ଚରଣ ସେବା ) କୁ ଗୋପାଳ କୃଷ୍ଣ କଳନା କରିନପାରି ତାଙ୍କ ପ୍ରାଣରୁ ସ୍ୱତଃ ପ୍ରକାଶ ପାଇଛି "ଏଡ଼େଭାଗ୍ୟ ମୋର ହେବକି ? ହେବି ବୃନ୍ଦାବନେଶ୍ୱରୀ ସେବକ୍ଷି" ଇତ୍ୟାଦି— ।

ଦିନେ ମଥୁରା ମଙ୍ଗଳର କବି ଭକ୍ତଚରଣ ଦାସ ତାଙ୍କ କବିତାରେ କୃଷ୍ଣ ବୋଲି ଗାଉଥିବି ମୁଖେ, ଥିବି ସେ ଗୋପୀଙ୍କ ପାଖେ ପାଖେ । କହି ନିଜ ମନର ଅଭିଳାଷ ପ୍ରକାଶ କରିଥିଲେ । କିନ୍ତୁ ଭକ୍ତ ପ୍ରବର ଗୋପାଳକୃଷ୍ଣ ଖାଲି ଗୋପୀ ଗୋପାଳ ମନରେ ରହିବା ନିମନ୍ତେ ଚାହିଁନାହାନ୍ତି । ସେ ଚାହିଁଛନ୍ତି କୃଷ୍ଣଙ୍କ ସହିତ ଏକ ଓ ଅଭିନ୍ନ ହୋଇ ତାଙ୍କର ଦେହରେ ମିଶିଯିବାକୁ । ଗୋପଜାତି ସମ୍ବନ୍ଧରେ ତାଙ୍କର ବର୍ଣ୍ଣନା ପ୍ରତ୍ୟେକ କୃଷ୍ଣଭକ୍ତ ମାନଂକର ଆଦରଣୀୟ କବିତା ।

ଗୋପାଳକୃଷ୍ଣଙ୍କ କବିତାବଳୀରେ ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟ ପ୍ରତି ଧ୍ୟାନ ଦିଆଯାଇ ପାରେ । ସେ ନିଜ ମନର ଭାବନାକୁ ପ୍ରାର୍ଥନା ଆଢ଼ରେ ରାଧାକୃଷ୍ଣଙ୍କ ପ୍ରଣୟ ଘଟିତ ସୁ-ରୁଚି ଅନୁକୂଳ, ସ୍ୱଭାବ ସୁନ୍ଦର ସ୍ୱଚ୍ଛ ବର୍ଣ୍ଣନା କରି ଭବିଷ୍ୟତ ଯୁଗ କବିମାନଙ୍କର ଆଦର୍ଶ ହୋଇ ପାରିଛନ୍ତି । ଭଞ୍ଜ ଯୁଗୀୟ କବି ମାନଙ୍କ ମଧ୍ୟରେ ଗୋପାଳକୃଷ୍ଣଙ୍କ କବିତାର ସ୍ଥାନ ସ୍ୱତନ୍ତ୍ର । ଆଜିକାଲି-କାର ଆଧୁନିକ କବିମାନଙ୍କପରି ବା କବି ସମ୍ରାଟଙ୍କ ସମସାମୟିକ ଅନ୍ୟ କବିମାନଙ୍କ ଭଳି ତାଙ୍କ କବିତାରେ ଅତି ରଞ୍ଜନ ବା ଦୈହିକ ମିଳନର ନଗ୍ନଚିତ୍ର ପ୍ରଣୟ ପ୍ରସଙ୍ଗରେ ନାହିଁ । ପାଠକ ପାଠିକା ପ୍ରାଣରେ ଗୋପାଳକୃଷ୍ଣଙ୍କ କବିତାମାନ ତୋଳିଥାଏ ବିଷାଦ ଓ ପ୍ରସାଦର ଝଞ୍ଜା । ରାଧିକାଙ୍କ ମିଳନର ଆଶା ଓ

ଆଶଙ୍କାରେ ନିଜ ମନର ଆତ୍ମପ୍ରକାଶ । ଯୋଗୀ ମନର ଖେଦ ଓ ଅଭିମାନ ସହ ଅନୁରାଗ ରଞ୍ଜିତ ମନର ଆବେଗ ।

କେଶର କୁଞ୍ଜ ଶେଯରେ ବ୍ରଜେନ୍ଦ୍ର ବୃନ୍ଦାଙ୍କୁ ପୁଚ୍ଛନ୍ତି ଧୀରେ, ସହଚରୀରେ ରାଧାବୋଲି କେ ବ୍ରଜରେ ବା "କି ନାମ ବୋଇଲୁ ତୁହିଗୋ ଲଳିତେ" ଶୁଣାଇବା ଦ୍ୱାରା ପରସ୍ପର ମଧ୍ୟରେ ସ୍ନେହ ଓ ପ୍ରୀତିର ଉତ୍ସ ସୃଷ୍ଟି କରାଯାଇଛି । 'ଆରାଧ' ଦେବତାଙ୍କ ଚରଣ ତଳେ ଆରାଧିକା କୁଳକୁ ଜଳାଞ୍ଜଳୀ ଦେଇ ଦେଇଛନ୍ତି । ଆଦ୍ୟ ଅନୁରାଗରେ ଉଭୟ ପ୍ରଣୟୀ ପ୍ରଣୟିନୀ ନିଜ ନିଜ ମଧ୍ୟରେ ଅବଦ୍ଧ ଥିବା ସମୟରେ ଜଣେ ଅନ୍ୟ ଜଣଙ୍କୁ ଜାଣିବା ପାଇଁ କେତେ ବ୍ୟାକୁଳିତ ହୁଏ ଏଠାରେ ସେହିପରି ଘଟିଛି । ଲଳିତା ଓ ବୃନ୍ଦା ଦୁହେଁଯାକ ପ୍ରେମପୁଗଳର ସ୍ୱନାମ ପ୍ରସିଦ୍ଧା ଦୂତୀ । ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଏମାନେ ମଧ୍ୟସ୍ଥତା କରି ଏକର କଥା ଆନକୁ ଜଣାଇଛନ୍ତି । ପରସ୍ପର ମଧ୍ୟରେ ଉକ୍ତି ପ୍ରତ୍ୟୁକ୍ତି ମଧ୍ୟଦେଇ ସେ ଗୁଡ଼ିକର ପ୍ରକାଶ କରାଯିବା ଦ୍ୱାରା ସ୍ନେହ ମମତାର ଗଭୀରତାରେ ସଂଯୋଗ ( ମିଳନ ) ର ଉତ୍ସୁକତା ଉତ୍‌ଥଳ ହୋଇଛିତ ମୁରଲୀର ଅପୂର୍ବ ନିସ୍ୱନ ପ୍ରେମିକ ଶ୍ରେଷ୍ଠଙ୍କ ସଂକେତକୁ କର୍ଣ୍ଣ ଗୋଚର କରାଇ ଛାନ୍ଦରେ ଜଗାଇଛି ସମ୍ବୋଧନ । ପରିବାର ଭିତରେ ପୂଜ୍ୟ ଲୋକ ମାନଙ୍କ ପାଖରେ ଆଇବ ଅଜଣା ଅଶୁଣା ଜାଗରଣରେ ଶରୀର ହୋଇଛି ରୋମାଞ୍ଚିତ ।

ଲଜ୍ଜାପୂର୍ଣ୍ଣ ଜାଗରଣ, ଆଶଙ୍କାଯୁକ୍ତ ଛାନ୍ଦକୁ ଚୟ ଚୟନ କରି ଅଳ୍ପ କେଇପଦ ଭାଷା କବି କଲମରୁ ପ୍ରକାଶ କରାଯାଇଛି—

ଶ୍ୟାମ ସୁନ୍ଦର ମୁରଲୀ ନିନାଦ
ଜାତି ନେବ ବୋଲି ମଣିଲି
ଗୁରୁଜନ ସଙ୍ଗେ କଥା ପରସଙ୍ଗେ
ବସିଥିଲି କି ଚମକି ପଡ଼ିଲି ।

—ଚଇତ—

ପୁଞ୍ଜିଲା ପୁଲକ  ଦେହ ଗୋଟାସାକ
ଛନା ଶୀତରେ ମୁଁ ଥରିଲି
କାହିଁ ଗଲା ମନ  କାହିଁ ଗଲା ଜ୍ଞାନ
କେବେ ନସ୍ମନ ମୁଁ ବୁଝିଲି ।

× × ×

ନରନାରୀ ମାନଙ୍କର ପ୍ରଥମ ପ୍ରଣୟର ଅନୁଭୂତି ଜନିତ ପୁଲକ, ମନର ଆବେଗ ଆଦି ପ୍ରତ୍ୟେକଙ୍କର ବାସ୍ତବ ଅନୁଭୂତି । ମାତ୍ର ଏହା କ'ଣ ସମ୍ଭବ ହୋଇପାରେ ? ମନର ଆବେଗ ମନରେ ମରେ । ସମାଜର ସାମାଜିକ ପରି- ବେଶ ମିଳନ ପଥରେ କଣ୍ଟାଭଳି ଦେଖାଦିଏ । "ପୀରତି ପଥ ଖସଡ଼ା" ପ୍ରଣୟ ମାର୍ଗର ଚିରନ୍ତନ ସତ୍ୟ ଘଟଣା । ଗୁରୁଜନ ମାନଙ୍କ ଶାସନ, ସମାଜର ନାଲି ଖି ରାଧିକାଙ୍କର ସଂକେତ ସ୍ଥାନକୁ ଯିବାର ପଥରୁଦ୍ଧ କରି ଦେଇଛି । ଯାହାଲାଗି ଭିସାରିକା ବେଶ ସାଜିଥିଲେ ତାହା ପାଖକୁ ଯିବା ସମ୍ଭବ ହୋଇ ପାରୁନାହିଁ । କବରୀର ସୁବାସିତ ପୁଷ୍ପମାଳା ଝାଉଁଳି ପଡୁଛି । ମନର ପିପାଶା ମନରେ ମରି ଯାଉଛି । ଅନ୍ତରର ଅଭିଳାଷ ଉଜାଣି ସୁଅରେ ଯେତେବେଳେ ଭାସି ଭାସି ଚାଲିଯାଉଛି···ଠିକ୍ ସେତିକିବେଳେ ସାମାଜିକ ଜୀବନରେ ଥିବା ନିଜର ଅପ୍ରଶସ୍ତ ପରିସରକୁ ନିନ୍ଦାକରି ତାଙ୍କର ଦୁଃଖିତ ପ୍ରାଣରୁ କ୍ଷୀଣ କଣ୍ଠସ୍ୱର ଧ୍ୱନି ନିସୃତ ହୋଇଛି । "ଧିକ ନାରୀଜନ୍ମ କି କଲୁ ଦଇବ ସଦାକରି ପରାଧିନ" ।

ଲଳିତା ଚରିତ୍ର ପ୍ରତି ଏଠାରେ ପ୍ରତ୍ୟେକ ଚିନ୍ତାଶୀଳଙ୍କର ମନରେ ପ୍ରଶ୍ନ ଉଠେ ସେ କିଏ ବୋଲି ? ବାସ୍ତବିକ ଲଳିତା ଚରିତ୍ରରେ ପ୍ରତ୍ୟେକ ଆଶ୍ଚର୍ଯ୍ୟ ହୁଅନ୍ତି । ଗୋପାଳକୃଷ୍ଣ ତାକୁ ଗୋଟାଏ ସତର୍କ ସଙ୍ଗିନୀ ଭଳି ଚିତ୍ରଣ କରିଛନ୍ତି । ଗୁପ୍ତ ପ୍ରେମର ସ୍ରୋତରେ ରାଧା ଭାସି ଭାସି ଚାଲିଛନ୍ତି । ସଂସାରିକ ବନ୍ଧନ

ଭିତରେ ଥାଇ ମଧ୍ୟ କଣ କହିଯାଉଛନ୍ତି ସେ ନିଜେ ବି ଜାଣି ପାରୁ ନାହାନ୍ତି ପ୍ରେମ···ପ୍ରେମ···ପ୍ରେମ । କିନ୍ତୁ ଦୁନିଆ ଆଖିରେ ସେ ହେଉଛନ୍ତି କଳଙ୍କ କାଳିମା ରାଧା ଯେତେବେଳେ କୃଷ୍ଣ ପ୍ରେମରେ ମଜ୍ଜି ଗଲେଣି ସେତେବେଳେ ଯମୁନା କୂଳକୁ ପାଣି ଆଣିବା ବାହାନାରେ ଯିବା ଏକାଧିକ ଥର ହେଉଛି । କୃଷ୍ଣଙ୍କ ମିଳା ମିଶାର ପରିମାଣଟା ଅଧିକରୁ ଅଧିକ ହୋଇ ଦାଣ୍ଡରେ ବାଟରେ ସମସ୍ତଙ୍କ ମନରେ ସଂଦେହ ସୃଷ୍ଟି କରୁଛି । ଠିକ୍ ସେହି ସମୟରେ ଲଳିତା ପହଞ୍ଚି ଯାଇଛି । ସେ ସହି ପାରୁନାହିଁ ରାଧୀକା ନାମର କୁତ୍ସାରଟନା । ତା ପାଇଁ "ବ୍ରଜ ବଜାରେ" ଶୁଣି ସଶଂକ ଚିତ୍ତରେ ଶିହରି ଉଠିଛନ୍ତି ରାଧିକା । ଲୋକ ନିନ୍ଦାକୁ ଡରି ପଳାଇଲ ସହର ଗର୍ଜି ଯାଉଛି । ନାନାପ୍ରକାର ଆଶଙ୍କାରେ ଛାତି ଥରି ଉଠୁଛି । ସେତିକି ବେଳେ × × × ଏକ ହଠ ହଠା ବ୍ରଜ ଯାକ ପଡ଼ିଲାଣି ହୁରିମା, ପାଦକଂଟି ଝୁଲୁଝୁଲୁ ହେଲ ଏତେ ସରିମା × × × କିନ୍ତୁ ସ୍ନେହ ଓ ପ୍ରୀତି ( **Love and affection** ) ର ଅନୁରାଗ ଯେତିକିବେଳେ ବଢ଼ି ବଢ଼ି ତାହା ନିବିଡ଼ରୁ ନିବିଡ଼ତର ହୋଇଛି ସେତିକିବେଳେ ରାଧା ମୁଖରୁ × × × ଶ୍ୟାମ ଅପବାଦ ମୋତେ ଲାଗିଥାଉ ନିତି ସେ ଚନ୍ଦ୍ରାରେ ବଦନଯାଉ × × ଶୁଣି ପ୍ରତ୍ୟେକ ଆଶ୍ଚର୍ଯ୍ୟ ହୁଅନ୍ତି । ପ୍ରକୃତ ପକ୍ଷରେ ଦେଖିବାକୁ ଗଲେ ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ଏଥିରେ ନାହିଁ । ମନୁଷ୍ୟ ଯାହାକୁ ନଦେଖି ଆଗରୁ ଡରୁଥାଏ ତାର ସାମନା ସାମନି ହୋଇଗଲେ ଡରଭୟ କିଛି ରହେନାହିଁ ସେଇ ପ୍ରକାଶେ ସାଧାରଣ ଗ୍ରାମବାସୀ ମଧ୍ୟ ମଶାଣୀରେ ଜନ୍ମକରି ଡର ନାହିଁ ବୋଲି କହୁଥାଏ । ରାଧାଙ୍କ ପରିସ୍ଥିତି ସେହିଭଳି ହୋଇଛି । ଲୋକନିନ୍ଦା ଯେତେବେଳେ ଚରମ ପର୍ଯ୍ୟାୟରେ ପହଞ୍ଚି ଯାଇଛି ସେତେବେଳେ ତାଙ୍କ ନାମର ନିନ୍ଦା ଅପବାଦ ମାନ ଅପଯଶ ନହୋଇ ପରମ 'ଗୌରବ'ରେ ପରି-ଣତ ହୋଇଅଛି । ପ୍ରେମିକ ଶ୍ରେଷ୍ଠ ଶ୍ରୀକୃଷ୍ଣଙ୍କ ପାଖରେ ପୂର୍ଣ୍ଣତା ପ୍ରାପ୍ତ ଆତ୍ମୋତ୍ସର୍ଗ ପରେ ପ୍ରାଣରେ ଆସନ ବାନ୍ଧିଛି ଅକୈତବ ଅନୁରାଗ । ସ୍ୱାର୍ଥ ବିରହିତ ଯେଉଁ ପ୍ଲାବନ ସୁରଆଡ଼େ ଖେଳି ଯାଇଛି ସେଥିରେ ମାନ, ଅପମାନ, ଅଭିମାନ, ଦୟା, ଆଶଂକା ଇତ୍ୟାଦି ବୁଦ୍‌ବୁଦ ସମ ନିଜ ନିଜର ସମସ୍ତ ସତ୍ତାକୁ ହରାଇ ବସିଛନ୍ତି । ଆତ୍ମୋତ୍ସର୍ଗ ପରେ ତାଙ୍କଠାରେ କୌଣସି ପ୍ରକାର କାମନା ଦେଖା ଯାଇନାହିଁ ।

ତସ୍କା ନ କରନ୍ତୁ ମୁଁ ଦାସୀ ସିନାରେ
ଦୁଃଖଦେଇ ଶ୍ୟାମକୁ ରାଧାସୁଖୀ ହେବାକୁ
ଲୁଣିବ କଳଙ୍କ ଆଲୋଚନାରେ ।
ଯେ ତାଙ୍କ ସେବାକାଙ୍କ୍ଷୀ ତା ନଉକରୀ କରି
ହନନେବ ଘଞ୍ଚକେ ଗୁମାନ ନାଁରେ ।

ସ୍ତ୍ରୀସ୍ତ୍ରୁ ପ୍ରାଣର ରୂପଦାନ କରିବାକୁ ଯାଇ ଉଦାହୃତ ପଦ ମଧ୍ୟରେ ଭକ୍ତ କବି ଗୋପାଳକୃଷ୍ଣ, ରାଧିକାଙ୍କ କୃଷ୍ଣଙ୍କଠାରେ ଥିବା ଗଭୀର ଅନୁରକ୍ତିକୁହିଁ ଏଠାରେ ପ୍ରକାଶ କରିଛନ୍ତି ।

ରଚନାର ପ୍ରତି ଛନ୍ଦେ ଛନ୍ଦେ ପ୍ରାଣର ସ୍ପର୍ଶ ଅତି ନିବିଡ଼ ଓ ବାସ୍ତବ । ପ୍ରଣୟିନୀର ମିଳନାକାଙ୍କ୍ଷା ବର୍ଣ୍ଣନା ଯେପରି ସରସ, ବିଫଳତାର ଦଂଶନରେ ବ୍ୟଥାର ମର୍ମବାହ ସେପରି କରୁଣ । ପ୍ରତୀକ୍ଷମାଣା ରାଧାଙ୍କର ମିଳନ ରଜନୀ ନିଃସଙ୍ଗ ଭାବେ ଉତ୍ତୀର୍ଣ୍ଣ ହୋଇ ଯାଇଛି । ବହୁ ଆଦରର ମିଳନ ଶଯ୍ୟା ତାଙ୍କର ରହିଯାଇଛି ପରିଶୂନ୍ୟ । ବ୍ୟର୍ଥକାମୀ ରାଧା, ହୃଦୟର କ୍ଷୋଭ ଭରରେ ଭାଗ୍ୟକୁ ନିନ୍ଦା କରି କହୁଛନ୍ତି—

କ ଯୋଗରେ ଆଜ ସାଜଥିଲି ଶେଯ
କାନନ ମଲ୍ଲୀଦଶା ଲଭିଲି ମା ।

ଠିକ୍ ଏହିଭାବକୁ ନେଇ ବାସକ ସଜା ରାଧାଙ୍କର ସମ୍ପରିସ୍ଥିତିରେ ଏକ ବିଷଦୋକ୍ତି କବିସୂର୍ଯ୍ୟ ବଳଦେବ ରଥଙ୍କ ଲେଖନୀ ମୁନରୁ ପ୍ରକାଶ ପାଇଛି "ପ୍ରାଣ-ନାଥ ବିଜେ ହେଲ ବନମାଳରେ ସଖି" । ମାତ୍ର ଗୋପାଳକୃଷ୍ଣ ଗୋଟିଏ ଦୃଷ୍ଟାନ୍ତରେ ଅଭିମାନର ଅନ୍ତରାଳରେ ରାଧା ପ୍ରାଣର ଉଦ୍‌ଗତ କ୍ଷୋଭକୁ ଯେଉଁଭଳି ଫୁଟାଇ ପାରିଛନ୍ତି କବିସୂର୍ଯ୍ୟଙ୍କ ରଚିତ କବିତାରେ ତାହା ନାହିଁ । ବୈଷ୍ଣବୀୟ ଧାରଣାରେ ରାଧା ଶ୍ରେଷ୍ଠ ଆରାଧନା କାରଣୀ ଶକ୍ତି । ଏଣୁ ଆରାଧ୍ୟଙ୍କ ଉତ୍କଣ୍ଠା ପ୍ରକାଶ ବା ଅନୁରକ୍ତି ଜନିତ ସଂବେଦନା ଅଧିକ ସମର୍ଥନ ଯୋଗ୍ୟ । କବି ତାଙ୍କର ଅଧିକାଂଶ କବିତାରେ ଆରାଧିକା ରାଧିକାଙ୍କ ମନୋଗତ ଅବସ୍ଥାକୁ ରୂପାୟିତ କରି ଅଛନ୍ତି । ଏ ଚିତ୍ରଣ ଯେପରି ସରସ ସେହିପରି ସ୍ୱଭାବ ସୁନ୍ଦର ମନ୍ତ୍ରମାନେ ପ୍ରାଣବନ୍ତ ।

## ଗୋପାଳ କୃଷ୍ଣଙ୍କ କବିତାରେ ରାଧାଚରିତ୍ର

ଗୋପାଳକୃଷ୍ଣଙ୍କ ରାଧା କେବଳ ଯମୁନା ତଟ ବିହାରିଣୀ ନୁହନ୍ତି କି ରାଧାକୃଷ୍ଣଙ୍କ ପ୍ରେମଲୀଳା ଏକ ଅପ୍ରାକୃତ ଐଶ୍ବର୍ଯ୍ୟ ମଣ୍ଡିତ ହୋଇ ସାଧାରଣ ଜୀବନାନୁଭୂତିର ଊର୍ଦ୍ଧ୍ବରେ ଲୋକ ଚିତ୍ତକୁ ସଂଶୟ ମିଶ୍ରିତ ଅନବବୋଧ ଭକ୍ତି ରସରେ ସଂସ୍ନାପିତ କରେନାହିଁ । ରାଧାକୃଷ୍ଣଙ୍କ ପାରସ୍ପରିକ ପ୍ରୀତି, ମିଳନର ଆକୁଳ ଆବେଗ ଭକ୍ତି ତନ୍ମୟ ହୃଦୟର ଗଭୀର ନିବେଦନ କେବଳ ଚରିତ୍ର ବିଶ୍ଳେଷରେ ଭାବ ବିଳାସ ବା କବି ଅନ୍ତରର ଉଚ୍ଛ୍ବସିତ ଅନୁରକ୍ତ ହୋଇ ରହି ନାହିଁ । ବ୍ୟଷ୍ଟି ଭାବନାର ସୀମାଲଙ୍ଘନ କରି ରସ ସମ୍ଭାରରେ ତାହା ସମଷ୍ଟିର ଅନ୍ତରକୁ ସ୍ପର୍ଶ କରିଛି, ଏକର ନିବେଦନ ବହୁ ପ୍ରାଣର ଅନୁଭୂତି ସମ୍ବେଦନକୁ ପ୍ରକଟିତ କରିଛି । ରାଧାକୃଷ୍ଣ ବା ଗୋପଗୋପାଙ୍ଗନାଠାରେ ଯେଉଁ ମହିମା ବା ଦେବତ୍ୱ ଆରୋପିତ ହୋଇଛି, ତାହା କେବଳ କବିଙ୍କ ସ୍ୱାଭିଳାଷ କଥନରେ ସୀମିତ । ଅଥଚ ସ୍ୱ ସ୍ୱ କାର୍ଯ୍ୟ ଓ ଚିନ୍ତାରେ ଚରିତ୍ର ଗୁଡ଼ିକ ଏହି ଦୁନିଆଁର ନର ନାରୀ ସଦୃଶ ହିତ, ଅହିତ, ନିନ୍ଦା, ପ୍ରଶଂସା, ଆଶା, ଆଶଂକାରେ ବିକ୍ଷୋଭିତ ବିଚଳିତ । ରାଧାଙ୍କ ଅନ୍ତରରେ କୃଷ୍ଣଙ୍କ ସ୍ଥାନ ଏତେ ନିବିଡ଼ ଯେ ତାଙ୍କ ଚତୁର୍ଦ୍ଦିଗ ଖାଲି ନିଳୋତ୍ପଳ ମୟ ଦିଶୁଛି । ରନ୍ଧନ ଶାଳାରେ ରୋହିଣୀଙ୍କ ସାଙ୍ଗରେ ଥିବା ବେଳେ ନାଗର ବରଙ୍କ ଉପରେ ଆକସ୍ମିକ ଦୃଷ୍ଟି ପଡ଼ିଯିବାରୁ ସେ ଲାଜରେ ବୁଡ଼ି ଯାଉଛନ୍ତି । ପୁନଶ୍ଚ ଗୋପନ ପ୍ରଣୟ ବ୍ୟକ୍ତ ହୋଇ ଯିବାରେ ରାଧାଙ୍କର ଜାତିରୁ ବାହାରି ଯିବାର ଆଶଂକା । ବୃଦ୍ଧ ଆଭୀର ( ଗଉଡ଼ ବା ଗୋପାଳ ) ସଭାରେ ଚନ୍ଦ୍ରାବଳୀର ଆଚରଣ ସମ୍ପର୍କରେ ବିଚାର ବସିବା ଏସବୁ ଚିତ୍ର ସେତେବେଳର ପ୍ରାକୃତ ଜନ ସମାଜର ନିର୍ମଳ ପ୍ରକାଶ ।

"ଇଚ୍ଛା ମୟ ଭଗବାନ ଶ୍ରୀକୃଷ୍ଣ ପ୍ରଥମତଃ ନିତ୍ୟ ବୃନ୍ଦାବନ ଧାମରେ ଏକାକୀ ବାସ କରୁଥିଲେ । ତାହା ପରେ ସ୍ୱଇଚ୍ଛାରେ ଲୀଳା କରଣେଚ୍ଛୁକ ହୋଇ ନିଜେ ଦ୍ୱିଧାରୂପ ହେଲେ । ତାଙ୍କର ଦକ୍ଷିଣାଙ୍ଗ ଶ୍ରୀକୃଷ୍ଣ ଓ ବାମାଙ୍ଗ ରାଧା ହେଲ । ରାଧାଙ୍କ ବାମାଙ୍ଗରୁ ଜାତ ହେଲେ ମହାଲକ୍ଷ୍ମୀ । ଯେଉଁ ମହାଲକ୍ଷ୍ମୀ ବୈକୁଣ୍ଠ ବାସୀ—ମର୍ତ୍ତ୍ୟରେ ଦ୍ୱାରକା ବାସୀ ଚତୁର୍ଭୁଜ କୃଷ୍ଣଙ୍କର ରୁକ୍ମିଣୀ ନାମ ଧାରିଣୀ ପତ୍ନୀ ।

ଭଗବାନଙ୍କ ଶକ୍ତି ପ୍ରଧାନତଃ ତିନି ଭାଗରେ ବିଭକ୍ତ ।
୧ ପରା ୨ କ୍ଷେତ୍ରଜ୍ଞା ବା ଜୀବଶକ୍ତି ୩ ଅପରା ବା ମାୟାଶକ୍ତି ।
ତନ୍ମଧ୍ୟରୁ ପରାଶକ୍ତି ତ୍ରିବିଧ ହ୍ଲାଦିନୀ, ସନ୍ଧିନୀ ଓ ସମ୍ବିତ୍ ।

ଭଗବାନ 'ହ୍ଲାଦାତ୍ମା' ହେଲେ ହେଁ ଯେଉଁ ଶକ୍ତି ଦ୍ୱାରା ହ୍ଲାଦବାନ ହୋଇ ଜୀବକୁ ଆହ୍ଲାଦ ପ୍ରଦାନ କରନ୍ତି ତାହା 'ହ୍ଲାଦିନୀ; ଶକ୍ତି ନାମରେ ପରିଚିତ ।

ଯେଉଁ ଶକ୍ତିଦ୍ୱାରା ଭଗବାନ ସଦାତ୍ମା ହୋଇ ସୁଦ୍ଧା ସତ୍ତା ଧାରଣ କରନ୍ତି ଓ ଜୀବକୁ ସତ୍ତା ପ୍ରଦାନ କରନ୍ତି ତାହା 'ସଂଧିନୀ' ଶକ୍ତି ।

ଭଗବାନ ନିଜେ ସଂବିଦାତ୍ମା ହୋଇ ସୁଦ୍ଧା ଯେଉଁ ଶକ୍ତି ବଳରେ ନିଜେ ଜ୍ଞାନବାନ ହୁଅନ୍ତି ଓ ଜୀବକୁ ଜ୍ଞାନବାନ କରନ୍ତି ତାହା 'ସଂବିତ' ଶକ୍ତି । ହ୍ଲାଦିନୀ ଶକ୍ତିର ସାର ପ୍ରେମ, ପ୍ରେମର ସାର ଭାବ ଓ ଭାବର ଚରମ ସୀମା ମହାଭାବ । ମହାଭାବର ମାଦନ ଓ ମୋହନ ନାମକ ଯେଉଁ ଦୁଇଟି ଅବସ୍ଥା ଅଛି ତନ୍ମଧ୍ୟରୁ ମାଦନାବସ୍ଥା ଶ୍ରେଷ୍ଠତର । ଅତଏବ ଏଥିରୁ ଜଣା ଯାଉଛି ଯେ ମାଦନାଖ୍ୟା ହେଉଛନ୍ତି ମହାଭାବ ସ୍ୱରୂପିଣୀ ରାଧିକା ଏବଂ ମହାଭାବ ସ୍ୱରୂପିଣୀ ତାଙ୍କର ସହଚରୀ ବ୍ରଜ ଲଲନାମାନେ ହେଉଛନ୍ତି—ମୋହ ନାଖ୍ୟା ।

ରାଧା ଅବତାରିଣୀ । ନାରାୟଣ କାନ୍ତା ମହାଲକ୍ଷ୍ମୀ ଦେବୀ ଶ୍ରୀରାଧିକାଙ୍କର ବିଳାସ ଓ ଅନ୍ୟାନ୍ୟ ଲକ୍ଷ୍ମୀ ଗଣ ରାଧିକା ବିଳାସ ମହାଲକ୍ଷ୍ମୀଙ୍କର ଅଂଶ । ଲୀଳା ଲାଗି ରାଧା ନିଜ ଶ୍ରୀକୃଷ୍ଣଙ୍କ ଭଳି ବହୁ ରୂପରେ ପ୍ରକାଶ ହୋଇଥିଲେ, ତାଙ୍କର ସେହି ବହୁ ରୂପହିଁ ଗୋପୀଗଣ । ରାଧାଙ୍କର ମଞ୍ଜରୀ ଶ୍ରେଣୀସ୍ଥା ବୟସ୍ୟା ମାନଙ୍କୁ ଛାଡ଼ି ଦେଲେ ଅନ୍ୟାନ୍ୟ ସକଳ ବୟସ୍ୟା ମାନ ପାଞ୍ଚ ଶ୍ରେଣୀର ଅଟନ୍ତି ।—

୧ ରାଧା ୨ ନିତ୍ୟ ସଖୀ ୩ ପ୍ରାଣ ସଖୀ ୪ ପ୍ରିୟସଖୀ ୫ ପର ପ୍ରେଷ୍ଠ ସଖୀ । କବି ଯେ ବହୁ ଶାସ୍ତ୍ରଦର୍ଶୀ ଥିଲେ ଏହାହିଁ ତାହାର ପରିଚାୟକ । ବୈଷ୍ଣବ ଶାସ୍ତ୍ର ମତେ ଅନ୍ୟତମ ପ୍ରାଚୀନ କବି ଦେବ ଦୁର୍ଲଭ ଦାସଙ୍କ ପ୍ରମାଣାନୁସାରେ ଲଳିତା ହେଉଛନ୍ତି ଶ୍ରୀରାଧାଙ୍କ ପରପ୍ରେଷ୍ଠ ସଖୀ ।

ଗୋପାଳକୃଷ୍ଣ କବିତା ରଚନା କାଳରେ ପ୍ରାଚୀନ ବହୁ ବିଷୟକୁ ଦୃଷ୍ଟି ରଖି ଲେଖିଥିଲେ । ଅନ୍ୟାନ୍ୟ କବି ମାନଙ୍କ ପରି ତାଙ୍କ ଲେଖାରେ ଅତି ରଞ୍ଜନ ନାହିଁ । କିଂବା କୌଣସି ବିଷୟ ବସ୍ତୁ ତାଙ୍କର ମନଗଢ଼ା ନୁହେଁ । ଏକଥା ସ୍ପଷ୍ଟ ବୁଝାପଡ଼ୁଛି ।

## ରାଧାକୃଷ୍ଣଙ୍କ ମିଳନ ଅଶ୍ଳୀଳ ନୁହେଁ

କେତେ କେତେ ପାଶ୍ଚାତ୍ୟ ଶିକ୍ଷାଭିମାନୀ ଶିକ୍ଷିତ ବ୍ୟକ୍ତିମାନେ ରାଧାକୃଷ୍ଣଙ୍କ ମିଳନକୁ ଅଶ୍ଳୀଳ ଓ ସମାଜ ବିରୋଧୀ ମିଳନ ବୋଲି କହି ଆସନ୍ତି । ସେମାନଙ୍କର ମତ ଯେ ସାଂସାରିକ ଜୀବନରେ ରାଧା ହେଉଛନ୍ତି ଅନ୍ୟର ବିବାହିତା ରମଣୀ ଏବଂ ପାରିବାରିକ ସମ୍ପର୍କରେ କୃଷ୍ଣଙ୍କ ମାଉ ପ୍ରତିମା ମାଉଳାଣୀ । ସେ ସକାଶେ ତାଙ୍କ ସହ ମିଳନକୁ ତତ୍‌କାଳୀନ ସମାଜ ପସନ୍ଦ କରୁନ ଥିଲା । କିନ୍ତୁ ଭକ୍ତକବି ଗୋପାଳକୃଷ୍ଣ ଏହି ସ୍ଥୂଳ ମତର ସଂମ୍ପୂର୍ଣ୍ଣ ବିରୋଧ କରିଛନ୍ତି । ଶ୍ରୀମଦ୍ ଭଗବତ ଗୀତାକୁ ସମର୍ଥନ କରି ସେ କୁହନ୍ତି ଯେ ଦୁଷ୍ଟ ନାଶି ସନ୍ଥ ପାଳିବା ନିମନ୍ତେ ଭଗବାନ ଯୁଗେ ଯୁଗେ ଧରଣୀ ପୃଷ୍ଠରେ ଅବତାର ଗ୍ରହଣ କରନ୍ତି । ଦ୍ୱାପର ଯୁଗରେ ଗୋଲକ ବାସୀ ଭଗବାନ; 'କୃଷ୍ଣ' ଅବତାର ଗ୍ରହଣ କରି ମାୟା ଲୀଳା ଖେଳା କରିଛନ୍ତି—

> ସେହି ମହାପ୍ରଭୁ  ଲୀଳା ଖେଳା ଲାଗି
> ବ୍ରଜେ ହୋଇ ଅବତାର
> କଳା କାହ୍ନୁ ରୂପେ  ଆମ୍ଭ ଆଖି ପଟେ
> କରିଛ ମାୟା ବିହାର ।
>
> ( ଗୋ· ଗ୍ର· ୧୮୮ ପୃଷ୍ଠା )

ପ୍ରକୃତି ଓ ପୁରୁଷ ମିଳନ ବ୍ୟତିରେକେ ସଂସାର ସୃଷ୍ଟି ଅସମ୍ଭବ । ରାଧା ହେଉଛନ୍ତି ପ୍ରକୃତି ଏବଂ କୃଷ୍ଣ ତାଙ୍କର ପୁରୁଷ । ଯୁଗେ ଯୁଗେ ଭିନ୍ନ ନାମ ଧାରଣ କରି ସେମାନେ ମର୍ତ୍ତ୍ୟରେ ଲୀଳା ଖେଳା କରନ୍ତି । ଭାଗବତରେ ଲେଖାଅଛି—

ଗୋପୀ ସ୍ନେହପାଳ ଅଙ୍ଗ କୃଷ୍ଣ । ନର ଶରୀର ସେ ଆଚୋର ॥
ଭକତ ଜନ ତାରିବାରେ । ସେ ଯାତ ମନୁଷ୍ୟ ଶରୀରେ ॥
ତାର ଚରିତ୍ର ମନେ ଚିନ୍ତ । ଭକତି ପଥ ଆଚୋରନ୍ତି ॥
( ଜଗନ୍ନାଥ ଦାସ ଭାଗବତ )

× × × ×

ମାନବ ଦେହଧାରୀ ଶ୍ରୀକୃଷ୍ଣ ମର୍ତ୍ତ୍ୟ ଲୀଳାରେ ବିଭୋର ହୋଇ ଯେତେବେଳେ ନିଜର ଅତୀତ ଓ ବର୍ତ୍ତମାନର ସ୍ମୃତି ଆଦିକୁ ଭୁଲି ଯାଉଛନ୍ତି, ସେତେବେଳେ ଶକ୍ତି ରୂପିଣୀ ରାଧାଙ୍କ ମୁହଁରେ ଚେତାଇ ଦେଇ ଗୋପାଳକୃଷ୍ଣ କହିଛନ୍ତି—

ଶ୍ରୀ ହରି ଯେଜ ଯନା ଗୁହାରି ହେ
ଯୁଗେ ଯୁଗେ ମୁହିଁ ତୁମ୍ଭ କିଙ୍କରୀ ହେ ।
( ଗୋ. ଗ୍ର. ୧୭୭ ପୃଷ୍ଠା )

ନିଜର ସ୍ୱାମୀ ବା ପ୍ରେମିକ ଅନ୍ୟ ଗୋଟିଏ ଯୁବତୀ ସହ ସମ୍ପର୍କସ୍ଥାପନକୁ କୌଣସି ନାରୀ ପସନ୍ଦ କରେନାହିଁ । ଦୁଃଖରେ ଭାଙ୍ଗି ପଡେ ସେ । ନିଜ ଆଡ଼କୁ ପୁଣି ଟାଣି ଆଣିବା ନିମନ୍ତେ ଆପ୍ରାଣ ଚେଷ୍ଟା କରେ । ରାଧାଙ୍କ ଜୀବନରେ ତାହାହିଁ ଘଟିଛି । ଚନ୍ଦ୍ରାବଳୀ ସହ ଶ୍ରୀକୃଷ୍ଣଙ୍କ ପ୍ରଣୟରେ ଅଧୀର ହୋଇପଡ଼ି ଉପରୋକ୍ତ କବିତାକୁ ସେ ଗାଇଛନ୍ତି । ଏହା ଦ୍ୱାରା କବି ଗୋପାଳକୃଷ୍ଣ ସାଂସାରିକ ଜୀବନର ଗୋଟିଏ ସୁନ୍ଦର ଚିତ୍ର ପାଠକ ମାନଙ୍କ ସମ୍ମୁଖରେ ବାଢ଼ିଛନ୍ତି ।

ଗୋପାଳ କୃଷ୍ଣଙ୍କର ଏହି ଯୁକ୍ତିର ଯଥାର୍ଥତା କେତେ ତାର ପ୍ରମାଣ ବ୍ରହ୍ମବୈବର୍ତ୍ତ ପୁରାଣ । ଏଥିରେ ବର୍ଣ୍ଣନା କରାଯାଇଛି ଯେ ଶ୍ରୀ ସୁଦାମା ରାଧାଙ୍କୁ ଅଭି ସମ୍ପାତ ଦେଇ କହିଥିଲେ ଯେ "ତୁମ୍ଭେ ଗୋପୀ ରୂପରେ ମର୍ତ୍ତ୍ୟରେ ଜନ୍ମ ଗ୍ରହଣ କର । ତୁମର କୃଷ୍ଣଙ୍କ ସହ ଶତବର୍ଷ ବ୍ୟାପୀ ବିଚ୍ଛେଦ ଘଟୁ ।"

"ଭବ ଗୋପୀ ଗୋପକନ୍ୟା ଗୋପୀଭିଃ ସ୍ୱାଭିରେବଚ
ତଦ ତେ କୃଷ୍ଣ ବିଚ୍ଛେଦୋ ଭବିଷ୍ୟତି ଶତଂ ସମାଃ ।
( ବ୍ରହ୍ମବୈବର୍ତ୍ତ ପୁରାଣ ପ୍ରକୃତିଖଣ୍ଡ ୫୧ ଅଧ୍ୟାୟ )

ପଦ୍ମ ପୁରାଣରେ ବର୍ଣ୍ଣିତ ଅଛି ଯେ—

କାଳିନ୍ଦ୍ୟାଃ ପୁଳିନେ ରମ୍ୟେ ପୁଣ୍ୟ ବୃନ୍ଦାବନେ ଶୁଭେ
ଗୋପନାରୀ ଭିର ନିଶଂ କ୍ରୀଡ଼ୟାମାସ କେଶବ ।
ରମ୍ୟ କେଳି ସୁଖେ ନୈବ ଗୋପବେଶଧରୋ ହରିଃ
ବଭଃ ପ୍ରେମରସେନାନ୍ଦ ମାସ ହ୍ୟୁ ମୁଦାସ ହ ॥

ନାମରତ୍ନ ଗୀତାର ୨୮ । ୨୯ ।୩୦ ଅଧ୍ୟାୟରେ ଲେଖା ଅଛି ଯେ—

ନନ୍ଦନନ୍ଦନ କୃଷ୍ଣ, ଦେବର୍ଷି ତ୍ରିପୁରାଙ୍କୁ ନୃତ୍ୟସ୍ଥଳୀ ଦେଖାଇବାକୁ ଅନୁରୋଧ କରିଥିଲେ । ତ୍ରିପୁରା ତାଙ୍କୁ ସ୍ତ୍ରୀ ବେଶରେ ନୃତ୍ୟ ସ୍ଥଳୀର ଗୋପୀ ମାନଙ୍କ ସହ ନୃତ୍ୟ କରାଇ ଥିଲେ । ନୃତ୍ୟରେ ତୃପ୍ତ ହେବାରୁ ଗୋପୀମାନେ ଜାଣିପାରିଲେ ଓ ନାରଦଙ୍କର ହରି ମଧ୍ୟ ଧ୍ୟାନରେ ମାନବ ଦେଖି କୃଷ୍ଣଙ୍କର ଧୃଷ୍ଟତା ଅବଗତ ହେଲେ । ନାରଦଙ୍କ କ୍ରୋଧ ହୋଇ ତ୍ରିପୁରାଙ୍କୁ କହିଥିଲେ—

ଗୋପୀଙ୍କ ସଙ୍ଗରେ ତୋତେ ପଠେଇଲୁ ଯହୁଁ
ମୃତ୍ୟୁ ଅଙ୍ଗ ବସ୍ତ୍ରକଳା ଆଣିଲୁ ତୁ କାହୁଁ ।
ମାନବ ବସ୍ତ୍ରଙ୍କୁ ଏଥୁଁ ପାଅ ବେଗେ ଯେଣ୍ଣ,
ମର୍ତ୍ତ୍ୟ ମଣ୍ଡଳରେ ତୁମ୍ଭେ ଜାତ ହୁଅ ବେଳ ।

ଏହି ମତକୁ ସମର୍ଥନ କରି ଶୂନ୍ୟ ସଂହିତାରେ ଅଚ୍ୟୁତାନନ୍ଦ ଦାସ କୃଷ୍ଣଙ୍କ ମୁଖରେ କହିଛନ୍ତି—

× × × ଯେଣେ ମୁଁ ନଗ୍ନହେ ରାଧିକାର ସଙ୍ଗ × × ×
ଆଗେ ରାଧା ପଛେ ମୁହିଁ ଲମ୍ପଟ ଭାବରେ
ଏକସାଜ ବେନିପାଳ ଯୁଗଳ ଅଙ୍ଗରେ । × × ×

## ବାତ୍ସଲ୍ୟ ରସ

ମଧୁର ରସ ବର୍ଣ୍ଣନାରେ କବି ଜଗଣି ଯେଉଁ ଭଳି ରମଣୀୟ, ସନ୍ତାନ ବତ୍ସଳା ଯଶୋଦାଙ୍କ ବାତ୍ସଲ୍ୟ ରସ ବର୍ଣ୍ଣନାରେ ତାହା ସେହିଭଳି ଅନୁରୂପ ବା ଅକୃତ୍ରିମ । ଗୋପାଳନ ସକାଶେ ପ୍ରତ୍ୟହ କୃଷ୍ଣଙ୍କ ବନ ଗମନକୁ ଯଶୋଦା ମୁଖକର ମର୍ମନାଦାନ୍ତ । କୃଷ୍ଣ ଅରଣ୍ୟରେ ଅଶେଷ ଦୁଃଖସହି ଗୋଚାରଣ କରି କୁଟୁମ୍ବ ପୋଷିବା ଅପେକ୍ଷା ସେ ନିଜେ ଭିକ୍ଷାବୃତ୍ତି ଅବଲମ୍ବନ କରିବାକୁ

ପ୍ରସୁତ । ସୂର୍ଯ୍ୟଦେବଙ୍କ ଖରରଶ୍ମିରେ ନିର୍ଗତ ସ୍ୱେଦ ଗୋଷ୍ପଦ ଧୂଳି ସହମିଶି ତାଙ୍କର ଧୂସର ତନୁ ସ୍ମରଣ ଯଶୋଦାଂକ ହୃଦୟକୁ ସତେ ଯେପରି ବିଦୀର୍ଣ୍ଣ କରି ଦେଉଛି । ମନେ ପଡ଼ି ଯାଉଛି କୋଳାଗତ ଶ୍ରୀକୃଷ୍ଣ ତାଙ୍କର ସ୍ତନ୍ୟପାନ କରିବାକୁ ଇଚ୍ଛା କରୁଥିଲେ ହେଁ ସାଥୀମାନେ ନିକଟରେ ଥିବାରୁ ସେହି ଲାଜରେ ତହିଁରୁ କପରି ନିବୃତ୍ତ ହୁଅନ୍ତି । କ୍ଷୁଧାରେ ପୁଅର ପେଟ ବଳି ହୋଇ ଯାଉଥିବା ଆଶଂକାରେ ସେ ଉତ୍କଣ୍ଠିତା ହୋଇ କୃଷ୍ଣଙ୍କ ଘର ବାହୁଡ଼ା ପଥକୁ ଚାହିଁ ରହିଛନ୍ତି । “କେତେବେଳେ ମୋର କୃଷ୍ଣଚନ୍ଦ୍ର ଆସିବ । କୋଳରେ ବସିଲେ ଦେଖିବ ମୋର ଦୁଃଖ ଯିବ ।” ଏହି ପ୍ରସଙ୍ଗରେ ଅଭିମନ୍ୟୁ ସାମନ୍ତ ସିଂହାରଂକର ଲେଖାଠାରୁ ଗୋପାଳକୃଷ୍ଣଂକ ଲେଖା ଅଧିକ ହୃଦୟ ସ୍ପର୍ଶୀ । “କଳାମାଣିକ”ର ବର୍ଣ୍ଣନା ସାମାନ୍ୟ କାବ୍ୟିକ । ମାତ୍ର ଏଥିରେ ଅପେକ୍ଷାକୃତ ସରଳ ପରିପାଟୀରେ ମାତୃ ହୃଦୟର ଅଭିବ୍ୟକ୍ତି ମଞ୍ଜୁଳ ।

କୃଷ୍ଣଙ୍କ ଆଖିକୁ ନିଦ ଆସୁନାହିଁ । ଯଶୋଦା “ବ୍ରଜକୁ ଚୋର ଆସିଛି, ଧେନ ଯିବ ଶୁଅ ତୁନି ହୋଇରେ” ପ୍ରଭୃତି କଥା କହି ତାଙ୍କୁ ଶୁଆଇ ପକାଇବାକୁ ଚେଷ୍ଟା କରୁଛନ୍ତି । ରାତି ନପାହୁଣୁ ଯଶୋଦା ଦଧି ମନ୍ଥିବାରେ ବ୍ୟସ୍ତ । ଏଣେ ନଟୋଳ କୃଷ୍ଣ ନିଦରୁ ଉଠି ଜଞ୍ଜାଳ ଲଗାଉଛନ୍ତି । ଯଶୋଦାଙ୍କର ସସ୍ନେହ କୋପ—

ଉଠିଲୁ ଏତେ ବେଗି କାହିଁକରେ ଦୁଃଖିଧନ
ଦଧି ମନ୍ଥାଇ ଦେବୁ ନାହିଁକରେ ।
ଗୃହ କୃତ୍ୟ ପକାଇ ବସିଥିବ ଏକାଇ
ନିଶିଦିନ ତୋତେ କାଖିଆଇ କରେ ।

ପଦ ଗୁଡ଼ିକରେ କର୍ମନିରତା ଓଡ଼ିଆ ଗୃହିଣୀର ଗୃହଧନ୍ଦା, ସନ୍ତାନ ସନ୍ତତି ମାନଙ୍କର ଅସୁମାରି ଅଳି ଅର୍ଦ୍ଦଟ ମଧ୍ୟରେ ନିପିଡ଼ିତ ଜନନୀର ପ୍ରଶାନ୍ତ କୋପନ ମୁଖ ମଣ୍ଡଳଟି ମନଶ୍ଚକ୍ଷୁରେ ଉଦ୍ଭାସିତ ହୋଇ ଉଠେ ।

ଗୋପାଳକୃଷ୍ଣଙ୍କ କୋଇଲି ରଚନା ମଧ୍ୟ ଓଡ଼ିଆ ସାହିତ୍ୟ କୋଇଲି ପର୍ଯ୍ୟାୟରେ ଉପଯୁକ୍ତ ଆସନ ପାଇବ । ଗୋପାଳନ ନିମିତ୍ତ କୃଷ୍ଣଙ୍କ ବନ ଗମନରେ ଯଶୋଦାଙ୍କର କୃଷ୍ଣଭାବ ସୁମରି ଦୁଃଖ ପ୍ରକାଶ ଏଥିର ବିଷୟ ବସ୍ତୁ ।

## —ତେଇଶି—

ଗୋଧୂଳି ବେଳା ବିଗତ ହୋଇ ଯାଇଛି । ତଥାପି କୃଷ୍ଣ ଘରକୁ ବାହୁଡ଼ି ନାହାନ୍ତି । ଝାଡ଼ ଜଂଗଲରେ ଗୋରୁ ପଛରେ ବୁଲି ବୁଲି କୃଷ୍ଣ ଯେ ଝାଟିପରି କ୍ଷୀଣ ହୋଇ ଯାଉଛନ୍ତି ଏଥିରେ ମାଆ ମନର ଧୈର୍ଯ୍ୟଥିବା କିପରି ରହନ୍ତା ? ଅନ୍ୟାନ୍ୟ କୋଇଲି କବିତା ସଦୃଶ ସେ ପରିଷ୍କାର ଭାବରେ କୋଇଲିକୁ ସମ୍ବୋଧନ କରି ନିଜର ଭାବବ୍ୟକ୍ତ କରି ଅଛନ୍ତି ।

କୋଇଲି ଜଣକ ଚନ୍ଦୁ ଦିଶୁ ନାହିଁ ଆଲୋ ।
ଜୀବନ ସେହି ମୋର ଧନ ସେହି ଲୋ । ଇତ୍ୟାଦି ।

କେଶବ କୋଇଲିପରି ସରଳ ମାର୍ଜିତ ଭାଷାରେ ଲିଖିତ ଏ ରଚନାଟିରେ ବାତ୍ସଲ୍ୟ ରସ ମଧୁର ଭାବରେ ବର୍ଣ୍ଣିତହୋଇଅଛି । ରଚନାର କଥା ବସ୍ତୁ ଦିଗରୁ ବିଚାର କଲେ ଗୋପାଳକୃଷ୍ଣଙ୍କ କବିତାରେ ନୂତନତ୍ୱ ଅବଶ୍ୟ ବିଶେଷ ନାହିଁ । ମାତ୍ର ପ୍ରତି କବିତାରେ କବି ପ୍ରକାଶ ଭଙ୍ଗୀର ଯେଉଁ ବୈଶିଷ୍ଟ୍ୟ ବିଦ୍ୟମାନ ତାହା ସମ ବିଷୟକ ରଚନା ମଧ୍ୟରେ ତାଙ୍କ ଲେଖାକୁ ବିଶିଷ୍ଟ ଭାବେ ମାଧୁର୍ଯ୍ୟାନ୍ୱିତ କରିଛି । ଯାହାର ସାଦୃଶ୍ୟ କେବଳ କବିସୂର୍ଯ୍ୟଙ୍କ ରଚନାରେ ଓ ବନମାଳୀଙ୍କ ପଦ୍ୟାବଳୀରେ ଦେଖିବାକୁ ମିଳିବ ।

ଗୋପାଳ କୃଷ୍ଣ ବିଶିଷ୍ଟ ସଂସ୍କୃତଜ୍ଞ ଥିଲେ । ବଳଦେବଙ୍କ ଚମ୍ପୂର ସଂସ୍କୃତ ରଚନା ପରି ଗୋପାଳକୃଷ୍ଣ ସ୍ତୁତି ଓ ମନ ଶିକ୍ଷାଦି ରଚନାରେ ସଂସ୍କୃତ ଶ୍ଳୋକ ଉପକ୍ରମଣିକା ଦେଇ ପରେ ଓଡ଼ିଆ ରଚନା କରିଛନ୍ତି । ସେ ସଂସ୍କୃତଜ୍ଞ ଥିବା ସତ୍ତ୍ୱେ ତାଙ୍କ ରଚନାରେ ସଂସ୍କୃତ ପଦାଧିକ୍ୟ ବା ଗୌଡ଼ୀୟ ରୀତିର ପ୍ରଭାବ ପରିଲକ୍ଷିତ ହୁଏନାହିଁ । ଦୀନକୃଷ୍ଣଙ୍କ ପରି କାନ୍ତ କୋମଳ ପଦ୍ୟାବଳୀରେ ସେ ତାଙ୍କ ଭାରତୀର ବନ୍ଦନା କରି ଅଛନ୍ତି । ସେ ଯୁଗ ରୀତିର ଅନୁକ୍ରମରେ ପ୍ରବାସୀ ପ୍ରଣୟୀର ପ୍ରଣୟୋନ୍ମା ଚିନ୍ତାମୂଳକ ଗ୍ରାମ୍ୟ ରସକୁ ସେ କେତୋଟି କବିତା, ସେ ଚଉତିଶା ରୀତିରେ ଲେଖିଛନ୍ତି ସେ ଗୁଡ଼ିକର ଅକ୍ଷର ନିୟମ ବନ୍ଧନରେ ରହିମଧ୍ୟ ସାରଲ୍ୟ ବିବର୍ଜିତ ନୁହେଁ । ଅଳ୍ପକୁ ବହୁ ଭାବରେ ଓ ବହୁକୁ ଅଳ୍ପ ଭାବରେ ପ୍ରକାଶ କରିବାହିଁ ଉତ୍କୃଷ୍ଟ କବିର ସାପେକ୍ଷ । ଏହି ଦକ୍ଷତାରେ କବିଭୂତିର ସାର୍ଥକତା । ଗୋପାଳକୃଷ୍ଣଙ୍କ ଠାରେ କବିତ୍ୱର ଏହି ବୈଶିଷ୍ଟ୍ୟ ପ୍ରତିଭାତ । ଉଦାହରଣ ସ୍ୱରୂପ ଲଳିତା ନିକଟରେ ରାଧାଙ୍କର କୃଷ୍ଣଙ୍କ ପ୍ରତି ଅନୁରାଗ କଥନ ବା ରାଧାଙ୍କ ପ୍ରସଙ୍ଗରେ ବୃନ୍ଦା କୃଷ୍ଣଙ୍କର ଜିଜ୍ଞାସା ମଧ୍ୟରେ ଶରୀରର ବିଭିନ୍ନ ଅଙ୍ଗ

ସୌନ୍ଦର୍ଯ୍ୟ ଗୋଟିଏ ଗୋଟିଏ କ୍ଷୁଦ୍ର ପଦରେ ଛନ୍ଦୋବଦ୍ଧ ଢଙ୍ଗରେ ଚମତ୍କାର ଭାବରେ ବର୍ଣ୍ଣିତ ହୋଇଛି । ଅଳ୍ପ କେତୋଟି ପଦ ସମନ୍ୱୟରେ ଗ୍ରନ୍ଥିତ ଯେପରି ସୁନ୍ଦର ଓ ପ୍ରାଞ୍ଜଳ, ଉତ୍ତର ସେହିପରି ସରସ ଓ ସମ୍ପୂର୍ଣ୍ଣ । ରଚନା ଶୈଳୀରେ ଆଧୁନିକ ଢଙ୍ଗରେ ଲିଖିତ ଲିଖନ ରୀତି ଓ ବ୍ୟବହାରିକ କଥନ ରୀତି ମଧ୍ୟରେ ପାର୍ଥକ୍ୟ କ୍ଷୀଣ କରିବାକୁ ଚେଷ୍ଟା ହେଉଅଛି । ସେ ସୂତ୍ରରେ କବି ଗୋପାଳକୃଷ୍ଣଙ୍କ ରଚନା-ଭଙ୍ଗୀ ଏହି ଦୃଷ୍ଟିରୁ ଆଧୁନିକତାର ସନ୍ନିକଟ । କୃଷ୍ଣଙ୍କ ପ୍ରତି ରାଧାଙ୍କର ଗୂଢ଼ ଅଭିମାନ ଲଳିତା ଲକ୍ଷ୍ୟକରି ଜିଜ୍ଞାସା କରିଛି "ଶ୍ୟାମର ତୋର କଥା ନାହିଁକିରେ ତୁ ନକହିଲେ ମୁଁ ଜାଣି ନାହିଁକିରେ ।"

ଅକ୍ଷର ସଂଖ୍ୟା ବା ଯତି ମିଳନକୁ ଲକ୍ଷ୍ୟ ରଖି କବିଙ୍କୁ ଶବ୍ଦ ନିର୍ବାଚନ କରିବାକୁ ହୋଇନାହିଁ । ଅନ୍ତରର ଭାବ, ସଖ୍ୟ ପ୍ରତି ସଖୀର ସ୍ୱଭାବ—କୁତୂହଳ ଉକ୍ତି ସ୍ୱଚ୍ଛନ୍ଦ ସରଳତାରେ ଅଭିବ୍ୟକ୍ତ ହୋଇଛି । ସବୁ କବିତା ଗୁଡ଼ିକରେ ଏହିପରି ଅକୃତ୍ରିମ ପ୍ରକାଶ ସୌଷ୍ଠବ, ପୁରୁଣା ପରିଚିତ କଥାବସ୍ତୁକୁ ନୂତନ ପ୍ରକାରର ପ୍ରଲେପାଞ୍ଜନରେ ସୁସ୍ନିଗ୍ଧ କରି ରସ ଗ୍ରାହକକୁ ମୁଗ୍ଧ କରେ । ପ୍ରଚଳିତ ଲୋକକଥା ଶବ୍ଦର ବିଶିଷ୍ଟାର୍ଥକ ପ୍ରୟୋଗ କବିତାର ଅପରୂପ ସୌନ୍ଦର୍ଯ୍ୟ ସୃଷ୍ଟି କରିଛି—

"ଜଣାଗଲା କାହିଁକି ପରମାଣ
କରଉ ଚୁଡ଼ିକି ଲୋଡ଼ା କେଉଁଣେ ଦରପଣ"

ସମାଲୋଚକ ବୈକୁଣ୍ଠ ନାଥ ରଥଙ୍କ ଭାଷାରେ କହିଲେ ଯଥେଷ୍ଟ ହେବ ଯେ—"କବିତ୍ୱ ସାଧ ସାଧନାର ବସ୍ତୁ ନୁହେଁ । ପ୍ରାଣରସରେ ଏହା ଉତ୍ସାରିତ ।"

ହୃଦୟର ଅନୁଭୂତି ଯେତେବେଳେ ହୁଏ ବିଷାଦ ଓ ଗମ୍ଭୀର; କବିର ଭାଷା ସେତେବେଳେ ହୁଏ ଭାବର ଅନୁଗାମୀ ।

ରାଧାଭାବରେ ବିମୁଗ୍ଧ ଭକ୍ତକବି ଗୋପାଳ କୃଷ୍ଣ ସ୍ୱୀୟ ରଚନାରେ ରାଧାକୃଷ୍ଣ ପ୍ରଣୟର ଯେଉଁ ଚିତ୍ର ଦେଇଛନ୍ତି ତାହା ଯେପରି ମନୋଜ୍ଞ ସେହିପରି ଭାବିଳ । ଚରିତ୍ର ବିଶେଷରେ ଭାବାବେଶରେ ପ୍ରତି ହୃଦୟାନୁଭୂତିର ଛାୟାପାତ ଘଟାଏ ଏହା ପ୍ରାଣସ୍ପର୍ଶୀ ବାସ୍ତବ ଜୀବନର ଆଶା···ଆଶଙ୍କା, ହର୍ଷ···ବିଷାଦରେ ଜୀବନ୍ତ ।

—•⋆✱⋆•—

# ଭକ୍ତକବି ଗୋପାଳକୃଷ୍ଣଙ୍କର ବଂଶ ପରିଚୟ

- ଶ୍ରୀ ବଂଶୀଧାରୀ ପଟ୍ଟନାୟକ
  - ବନବାସୀ ପଟ୍ଟନାୟକ
    - କବି ଗୋପାଳକୃଷ୍ଣ ପଟ୍ଟନାୟକ
      - ଗୌରଚନ୍ଦ୍ର
        - ଶ୍ରୀ ଗୋପୀନାଥ ପଟ୍ଟନାୟକ
          - ୧ ଶ୍ରୀ ରାମକୃଷ୍ଣ ପଟ୍ଟନାୟକ
          - ୨ ଶ୍ରୀ ସୂର୍ଯ୍ୟ ନାରାୟଣ ପଟ୍ଟନାୟକ
          - ୩ ଶ୍ରୀ ନୀଳମଣି ପଟ୍ଟନାୟକ
      - ହରିବନ୍ଧୁ ( କବି ) ( ନିଃସନ୍ତାନ )
      - କରୁଣାସିନ୍ଧୁ ( ବାଲ୍ୟମୃତ )
        - ଶ୍ରୀ ବୈଷ୍ଣବ ଚରଣ ପଟ୍ଟନାୟକ
          - ୧ ଶ୍ରୀ ବନବାସୀ ପଟ୍ଟନାୟକ
          - ୨ ଶ୍ରୀ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ
          - ୩ ଶ୍ରୀ ଚକ୍ରପାଣି ପଟ୍ଟନାୟକ
  - ଶ୍ରୀ ବ୍ରଜବାସୀ ପଟ୍ଟନାୟକ ( ନିଃସନ୍ତାନ )



# ପ୍ରକାଶକଙ୍କ କଲମରୁ

ଓଡ଼ିଶାର ବିଖ୍ୟାତ ଗୀତି କବି ଗୋପାଳକୃଷ୍ଣ ପଟ୍ଟନାୟକଙ୍କର ସମସ୍ତ ରଚନା କଳୀ ସଂଗୃହୀତ ହୋଇ ଆଜ "ଗୋପାଳକୃଷ୍ଣ ଗ୍ରନ୍ଥାବଳୀ" ପ୍ରକାଶ ପାଉଅଛି । ଏହି ଶୁଭ ଅବସରରେ ଉତ୍କଳର ଅତୀତ ସଂସ୍କୃତି ଆଡ଼େ ଥରେମାତ୍ର ସିଂହାବଲୋକନ କଲେ ଜଣାଯିବ ଯେ ପ୍ରତ୍ୟେକ ଶତାବ୍ଦିରେ ଉତ୍କଳ ଭାରତୀଙ୍କର ଜଣେ ଜଣେ ସାର୍ଥକ ଜନ୍ମା ସଂତାନ ଜନ୍ମଲାଭ କରି ଉତ୍କଳର ବାଣୀ ଭଣ୍ଡାରକୁ ପରିପୂର୍ଣ୍ଣ କରି ଯାଇଥାନ୍ତି । ଜୟଦେବଙ୍କ ଗୀତ ଗୋବିନ୍ଦ, ଦୀନକୃଷ୍ଣଙ୍କ ରସକଲ୍ଲୋଳ, କବି ସମ୍ରାଟଙ୍କ ଗ୍ରନ୍ଥାବଳୀ, ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ବିଦଗ୍ଧ ଚିନ୍ତାମଣି, କବି ସୂର୍ଯ୍ୟଙ୍କ ଚମ୍ପୂ ଏବଂ ଭକ୍ତ କବି ଗୋପାଳକୃଷ୍ଣ ପଟ୍ଟନାୟକଙ୍କ ସୁମଧୁର ସଙ୍ଗୀତ ମାନ ପ୍ରାଚୀନୋତ୍କଳ ସାହିତ୍ୟ ଜଗତରେ ଏକ ଏକ ଅମୂଲ୍ୟରତ୍ନ ଭାବରେ ପରିଚିତ ହୋଇ ଆସିଛି । ଏହି ସବୁ ଗୀତି ସାହିତ୍ୟ ଯେତେ ପୁରାତନ ହେଲେମଧ ତାର ମୂଲ୍ୟ ଏପର୍ଯ୍ୟନ୍ତ ପ୍ରକୃତ ସାହିତ୍ୟିକ ମାନଙ୍କ ନିକଟରେ କମିନାହିଁ କି କମିବ ନାହିଁ । ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ବିଖ୍ୟାତ ଧୀରେ ସେନ କାନନରେ କୃଷ୍ଣ ବିଳମ୍ବିତ କୁ କେଦାରରେ ସ୍ୱରଦେଇ ମଫସଲ ଗାଆଁର ଭିକମଗା ଯୋଗୀ ଖାଇଲାବେଳେ ପୁଅ ବିଚ୍ଛେଦ ବିଧୁରା କେଉଁ ମାଆ ଆଖିରୁ ଲୁହ ନଗଡ଼େ ? ? ହଜାର ହଜାର ଦର୍ଶକ ମାନଙ୍କ ଆଗରେ ଗୋଡ଼ରେ ଘୁଂଗୁର ବାନ୍ଧି ଭଞ୍ଜ କବିତାର ତାଳେ ତାଳେ ଯେତେବେଳେ ନର୍ତ୍ତକୀ ନାଚଉଠେ କଳାପ୍ରେମୀ ଜନତା ହୁଏ ନୀରବ ନିସ୍ତବ୍ଧ । ପୁରୁଣା ହୋଇ ଯାଇଛି ବୋଲି କେହି କଣ ଏ ଗୀତକୁ ଅନାଦର କରୁଛି ?

ସେହିଭଳି ଭକ୍ତକବି ଗୋପାଳକୃଷ୍ଣଙ୍କ କବିତା ସମ୍ପର୍କରେ କୁହାଯାଇ ପାରେ । ଏହି ଗ୍ରନ୍ଥର ସଂକଳକ ଶ୍ରୀଯୁକ୍ତ ପାଣିଗ୍ରାହୀଙ୍କ ଭାଷାରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଗୋପାଳକୃଷ୍ଣଙ୍କ କବିତା ଗାଇଲା ବେଳେ ପ୍ରତ୍ୟେକ ତାଙ୍କ ସ୍ପନ୍ଦନ ଦ୍ୱାରା ସ୍ପନ୍ଦିତ ହୋଇ ଥାଆନ୍ତି । ଅନୁସରିତ ! ପ୍ରତ୍ୱେ କାଳ ଯାକ ଗଲା ସରିତ ବା କେଶର କୁଞ୍ଜ ଶେଷରେ କବିତା ଭଳି କବିତାମାନ ବର୍ତ୍ତମାନ ସୁଧା ସହର ମଫସଲ ସବୁଆଡେ ଶୁଣାଯାଏ ।

## —ଅବତରଣି—

କାଳର କରାଳ କବଳରେ ପଡ଼ି ପ୍ରାଚୀନ କବି ମାନଙ୍କର ପ୍ରକାଶିତ ରଚନାବଳୀ କ୍ରମେ କ୍ରମେ ଦୁଷ୍ପ୍ରାପ୍ୟ ହୋଇପଡ଼ୁଛି ତ ସେମାନଙ୍କର ଅପ୍ରକାଶିତ ଲେଖାମାନ କୀଟ ଦଂଷ୍ଟ ହୋଇ ଦିନକୁ ଦିନ ସଂଖ୍ୟାନ୍ୟୁନ କରି ଚାଲିଛନ୍ତି। ଅତୀତରେ ଓଡ଼ିଶାର ପ୍ରଥମ ନାଟ୍ୟ ସାହିତ୍ୟ ନାମରେ ପ୍ରତିଷ୍ଠିତ ଗଣକବି ବୈଷ୍ଣବ ପାଣି କାହ୍ନୁ ପାଣି, ବାଳକୃଷ୍ଣ, ରାମଚନ୍ଦ୍ର ସ୍ୱାଇଁ ଓ ବିରକିଶୋରରାୟଙ୍କ ଗୀତିନାଟ୍ୟମାନ ଆମ୍ଭେ ପ୍ରକାଶ କରି ଓଡ଼ିଶାର ନାଟକ ଜଗତରେ ବିରାଟ ଆଲୋଡ଼ନ ସୃଷ୍ଟି କରାଇଥିଲୁ। ଆଜିମଧ୍ୟ ଜଣେ ପ୍ରାଚୀନ କବି ଗୋପାଳକୃଷ୍ଣଙ୍କ ଅମର ପ୍ରତିଭାପ୍ରତି ସମ୍ମାନ ଜଣାଇ ତାଂକର କବିତାଗୁଚ୍ଛ ଏକତ୍ରିତ କରାଇ ଗ୍ରନ୍ଥାବଳୀ ପ୍ରକାଶ କରୁଛୁ। ଏହି ଗ୍ରନ୍ଥାବଳୀ ପ୍ରକାଶ କରିବା ନିମନ୍ତେ ଆମ୍ଭର ବହୁ ଅର୍ଥବ୍ୟୟ ହୋଇଛି। ଆମ ଅନୁରୋଧରେ ଓଡ଼ିଶାର ଜଣେ ବିଶିଷ୍ଟ ଯୁବ ସାମ୍ବାଦିକ ତଥା ବ୍ୟଙ୍ଗ ସାହିତ୍ୟିକ ଶ୍ରୀଯୁକ୍ତ ସରୋଜ କୁମାର ପାଣିଗ୍ରାହୀ ଏହି ଗ୍ରନ୍ଥ ସଂକଳନ ଦିଗରେ ଯେଉଁ ପରିଶ୍ରମ କରିଛନ୍ତି ତାହା ପ୍ରଶଂସନୀୟ। ଓଡ଼ିଶାର ଜଣେ ପ୍ରାଚୀନ କବିଂକ ଲେଖାବଳୀ ସଂଗ୍ରହ କରିବା ଦ୍ୱାରା ଓଡ଼ିଆ ସାହିତ୍ୟର ଉନ୍ନତି କରିଥିବାରୁ ଗ୍ରନ୍ଥର ପ୍ରକାଶକ ହିସାବରେ ମୁଁ ମୋ ତରଫରୁ ଓ ପାଠକ ମାନଂକ ତରଫରୁ ତାଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ଏବଂ ଏହିଭଳି ଦୁଷ୍ପ୍ରାପ୍ୟ ଗ୍ରନ୍ଥ ସଂକଳନ ଦିଗରେ ବ୍ରତୀ ହେବାପାଇଁ ଭଗବାନଙ୍କ ନିକଟରେ ତାଙ୍କର ଦୀର୍ଘ ଜୀବନ କାମନା କରିବା ସଂଗେ ସଂଗେ ଓଡ଼ିଶାର ଯେଉଁ ଜନନେତାମାନେ ଏହି ଗ୍ରନ୍ଥାବଳୀର ପ୍ରକାଶନ କାର୍ଯ୍ୟକୁ ସ୍ୱାଗତ କରିଛନ୍ତି ସେମାନଙ୍କୁ ମଧ୍ୟ ମୋର କୃତଜ୍ଞତା ଜଣାଉଛି।

ବିନୀତ

**ଏସ୍ ଅମିନୁଲ୍ ଆଲି**

ଓଡ଼ିଶା କୋହିନୂର ପ୍ରେସ ପଞ୍ଜିକାର ମାଲିକ

—ଅଠେଇଶି—

# ମୋ ନିଜ କଥା

ଭାରତ ବିଖ୍ୟାତ ଓଡ଼ିଶା କୋହିନୂର ପ୍ରେସ ପଞ୍ଜିକାର ମାଲିକ ଶ୍ରୀଯୁକ୍ତ ସେଖ ଅମିନୁଲ ଇସଲାମ ମହାଶୟ ଗୋପାଳ କୃଷ୍ଣ ପଟ୍ଟନାୟକଙ୍କ ସମସ୍ତ କବିତା ଗୁଡିକୁ 'ଗ୍ରନ୍ଥାବଳୀ' ଆକାରରେ ପ୍ରକାଶ କରୁଛନ୍ତି । ଅତୀତରେ ଏହି ମହାଶୟଙ୍କ ଦ୍ୱାରା ପ୍ରକାଶିତ 'ସଙ୍ଗୀତ ଗୋପାଳକୃଷ୍ଣ' ନାମକ ଛୋଟିଆ ବହିଟି ଓଡ଼ିଶାର ସଙ୍ଗୀତ ପ୍ରେମି ମାନଙ୍କ ଉପରେ ବହୁତ ପ୍ରଭାବ ପକାଇଥିଲା । ପିଲାଦିନର କଥା ମନେ ପଡ଼ୁଛି—

ଆମ ଗାଆଁ ଇଶ୍ୱରସିଂହ ପାଖରୁ କୋଠିହାଟର ଦୂରତା ଅଧ ମାଇଲଏ ହେବ । ଫାଲ୍‌ଗୁନମାସର ଦୋଳଯାତ୍ରା ଦେଖିବା ନିମନ୍ତେ ସେଠିକି ଯାଉଥାଏ । ଯାତ୍ରାରୁ କେତେ ଜିନିଷ କିଣି ଘରକୁ ଆସିଲି । ସେହି କିଣା ଜିନିଷ ଭିତରେ "ସଙ୍ଗୀତ ଗୋପାଳକୃଷ୍ଣ" ବହି ଖଣ୍ଡିକ ମୋର ଅତି ଆଦରଣୀୟ ଥିଲା ।

ଗୋପାଳକୃଷ୍ଣ କିଏ ସେତେବେଳେ ଜାଣିନଥିଲି । ଜାଣିବାଭଳି ମୋର ବୟସ ହୋଇ ନଥିଲା ବୋଲି । ମାତ୍ର ଏତିକି ଉପଲବ୍‌ଧି କରୁଥିଲି ଯେ 'ଗୋପାଳକୃଷ୍ଣ' ବୋଲି କେହି ଜଣେ କବି ଅଛନ୍ତି । ସେ ଭଲ ଭଲ ଗୀତ ଲେଖନ୍ତି ।

ସେ ଦିନର ବାଲ୍ୟ ଜୀବନ ମୋର ଅତି ବାସ୍ତବ ହୋଇଯାଇଛି । ସାମ୍ପ୍ରତିକ ଜୀବନରେ କେତେ ମୁଲକ ବୁଲି ବୁଲି ୧୯୭୭ ମସିହା ଡିସେମ୍ବର ପୂର୍ବରୁ ଯାଇଥିଲି କୋରାପୁଟ । ପାରଳାଖେମୁଣ୍ଡିରେ କଳିଙ୍ଗ ସାହିତ୍ୟ ସଂସଦର ଗୋଟିଏ ଉତ୍ସବ ହେଉଥାଏ ; ସେଥିରେ ଯୋଗଦେଇ ଯେଉଁ କେତେ-ଜଣ ନୂଆ ବନ୍ଧୁଙ୍କ ସହିତ ପରିଚିତ ହେଲି ତା ଭିତରେ ଦେବୀମଠ ମହନ୍ତ ଶ୍ରୀଯୁକ୍ତ ସୀତାରାମ ଦାଶ ଗୋସ୍ୱାମୀ ଅନ୍ୟତମ । ପାରଳାଖେମୁଣ୍ଡିର ଅତୀତ ସଂସ୍କୃତି ବୁଝାଇବାକୁ ଯାଇ ଗୋପାଳକୃଷ୍ଣ ପାଠାଗାର ଆଡ଼େ ମୋତେ ସେ ବୁଲାଇ ନେଇଥିଲେ । ସେଇଦିନ ମୁଁ ଭଲଭାବରେ ଜାଣିଲି କବି ଗୋପାଳକୃଷ୍ଣ କିଏ ଏବଂ କ'ଣ ସେ ଲେଖିଛନ୍ତି ।

## —ଅନୁଭୂତି—

ପାରଳା ଖେମୁଣ୍ଡୀ ରାଜ୍ୟର ବସନ୍ତ କୋକିଳଙ୍କୁ ଭଲକରି ଚିହ୍ନିବା ପରେ ତାଙ୍କ ଲିଖିତ କବିତା ମାନ ସଂଗ୍ରହ କରିବାରେ ମନ ଦେଲି । କାରଣ ସୀତାରାମ ଦାସ ଗୋସ୍ୱାମୀ ଓ ବାଗଶାଳା ମଠ ମହନ୍ତ ଦୟାଳୁ ଦାସ ଗୋସ୍ୱାମୀଙ୍କ ଠାରୁ ମୁଁ ଶୁଣିଥିଲି ଯେ ଗୋପାଳକୃଷ୍ଣଙ୍କ ବହୁତ କବିତା ଏପର୍ଯ୍ୟନ୍ତ ଲୋକ ଲୋଚନକୁ ଆସି ନାହିଁ ବୋଲି ।

କଟକ କଲେଜ ଫେରନ୍ତା ବାଟରେ ଦୈବାତ୍ ଦେଖାହେଲେ ଓଡ଼ିଶାର ସୁପରିଚିତ ପୁସ୍ତକ ପ୍ରକାଶକ ଶ୍ରୀଯୁକ୍ତ ଅମିନୁଲ୍ ବାବୁ । ଗୋଟିଏ ରିକ୍ସାରେ ବସି ତାଙ୍କର ଓଡ଼ିଶା କୋଟେଡବୁର ପ୍ରେସକୁ ଆସିଲୁ । ନାନାପ୍ରକାର ଆଲୋଚନା ପରେ 'ଗୋପାଳକୃଷ୍ଣ ଗ୍ରନ୍ଥାବଳୀ'ର ପ୍ରକାଶନ ନିମନ୍ତେ ତାଙ୍କର ଅଭିଳାଷ ସେ ମୋତେ ଜଣାଇଲେ ଏବଂ ମୁଁ ତାଙ୍କର ଅନୁରୋଧକୁ ଏଡ଼ାଇ ନପାରି ଗ୍ରନ୍ଥାବଳୀ ସଙ୍କଳନ ଦିଗରେ ମନ ଦେଲି ।

ଭଗବାନ ଶ୍ରୀକୃଷ୍ଣଙ୍କ ଅନୁକଂପାରୁ ଖୁବ୍ କମ୍ ଦିନ ଭିତରେ ମୋତେ ପ୍ରସ୍ତୁତ ହେବାକୁ ପଡ଼ିଲା । ଦିନର କାମ ସାରି ରାତିରେ ବିଛଣାକୁ ଯିବା ପୂର୍ବରୁ ଯାହା ଲେଖିଥାଏ ସକାଳକୁ ତାହା ପ୍ରେସକୁ ଯାଏ ଛପା ହେବା ପାଇଁ । କପି ମିଳାଇ ଆଉ ଥରେ ପଢ଼ି ଯିବାକୁ ମୋତେ ସମୟ ଅଣ୍ଟେ ନାହିଁ । ତେଣୁ ମୁଦ୍ରଣ ଗତ ଓ ଭାଷାଗତ ତ୍ରୁଟି ରହିବା ଅସମ୍ଭବ ନୁହେଁ ।

ଏହି ଗ୍ରନ୍ଥାବଳୀର ସଙ୍କଳନ ଦିଗରେ ମୁଁ ବିଭିନ୍ନ ସ୍ଥାନରୁ ବିଭିନ୍ନ ବ୍ୟକ୍ତିଙ୍କ ଠାରୁ ସାହାଯ୍ୟ ସହାନୁଭୂତି ପାଇଅଛି ।

ଔପନ୍ୟାସିକ ଶ୍ରୀଯୁକ୍ତ କାହ୍ନୁ ଚରଣ ମହାନ୍ତି, ଦୈନିକ 'ସମାଜ'ର ବାର୍ତ୍ତା ସଂପାଦକ ଶ୍ରୀଯୁକ୍ତ ଉଦୟନାଥ ଷଡ଼ଙ୍ଗୀ, ରାଜକବି ସାର କିଶୋର ରାୟଙ୍କ ପ୍ରେରଣା ଗ୍ରନ୍ଥାବଳୀ ସଂକଳନ ଦିଗରେ ମୋର ପ୍ରଧାନ ସମ୍ବଳ ହୋଇଛି । କର୍ମ ପଥରେ ବାଟ ଚାଲୁ ଚାଲୁ ଯେଉଁଠି ଟିକିଏ ଥମି ଯାଉଛି, କଟକ ପଢ଼ିଆରି ଗ୍ରନ୍ଥାଗାର ତତ୍ତ୍ୱାବଧାରକ 'ଗେଡ଼ୁ ବାବୁ' ଘୁଟ ମାରି ମୋତେ ସଜାଗ କରି ଦେଇଛନ୍ତି ଆଗକୁ ମାଡ଼ି ଚାଲିବା ପାଇଁ ।

## —ଭଣିତି—

ଉତ୍କଳର ଗୌରବୋଜ୍ଜ୍ୱଳ ସନ୍ତାନ ନବ ଉତ୍କଳର ନିର୍ମାତା ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ସୁଯୋଗ୍ୟ ପୁତ୍ର ଶ୍ରୀଯୁକ୍ତ ରଙ୍ଗନାଥ ମିଶ୍ର ଆଡ଼ଭୋକେଟ ଓଡ଼ିଶା ହାଇ କୋର୍ଟର ବାରିଷ୍ଟର ରଣଜିତ ମହାନ୍ତି, ଆଡଭୋକେଟ ମଧୁସୂଦନ ମହାନ୍ତି, ଆଡଭୋକେଟ ଗୌରାଙ୍ଗ ଚରଣ ଦାସ, କଟକ ସହର ଭଗତପୁରର ବରିଷ୍ଠ ସମାଜ ସେବୀ ସହଦେବ ମହାରଣା, ମୋତେ ଯେଉଁ ଭଳି ଭାବରେ ସାହାଯ୍ୟ ସହାନୁଭୂତି ଦେଇ କର୍ମ ପଥରେ ଉତ୍ପ୍ରାଣିତ କରିଛନ୍ତି ସବୁଦିନ ପାଇଁ ସେମାନେ ମୋର ନମସ୍ୟ ହୋଇ ରହିବେ ।

ଗ୍ରନ୍ଥବନ୍ଧୁ ବାନାମ୍ବର ପଣ୍ଡା ଓ ଅରଡ଼ ନିବାସୀ ଶ୍ରୀମାନ ଦ୍ରୋଣନିଧି ଜେନା ଗ୍ରନ୍ଥାବଳୀର ମୁଦ୍ରଣ ସମୟରେ ଯେଭଳି ସାହାଯ୍ୟ କରିଛନ୍ତି ସେଥିପାଇଁ ସେମାନଙ୍କର ଦୀର୍ଘ ଜୀବନ କାମନା କରୁଛି ।

ପାରଳାଖେମୁଣ୍ଡି ଦେବୀମଠର ମହନ୍ତ ସୀତାରାମ ଦାସ ଗୋସ୍ୱାମୀ ଓ ଗ୍ରନ୍ଥ ଶ୍ରୀମାନ ରମେଶ ଚନ୍ଦ୍ର ସାହୁ ଭକ୍ତକବି ଗୋପାଳକୃଷ୍ଣଙ୍କର ଫଟୋଟି ପ୍ରକାଶ କରିବା ନିମନ୍ତେ ଯୋଗାଇ ଦେଇ ଥିବାରୁ ସେମାନଙ୍କୁ ମୋ ତରଫରୁ ଓ ଗ୍ରନ୍ଥାବଳୀର ପ୍ରକାଶକ ସେଖ ଅମିନୁଲ ଇସଲାମଙ୍କ ତରଫରୁ ଆନ୍ତରିକତା ଜଣାଉଛି ।

ପରିଶେଷରେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ବରିଷ୍ଠ ଲଢ଼ୁଆ ସୈନିକ, ଗଡ଼ଜାତ ଆନ୍ଦୋଳନର ଖ୍ୟାତନାମା ନେତା ଓଡ଼ିଶାର ଉପମୁଖ୍ୟ ମନ୍ତ୍ରୀ ଶ୍ରୀଯୁକ୍ତ ପବିତ୍ର ମୋହନ ପ୍ରଧାନ, ମନ୍ତ୍ରୀ ଶାନ୍ତନୁ କୁମାର ଦାସ, ମନ୍ତ୍ରୀ ବନମାଳି ପଟ୍ଟନାୟକ, ଉପମନ୍ତ୍ରୀ ମନମୋହନ ଟୁଡ଼ୁ, ସମାଜର ସମ୍ପାଦକ ପଦ୍ମଭୂଷଣ ରାଧାନାଥ ରଥ ଏମ୍. ଏଲ. ଏ, ପୌରୁଷ ସମ୍ପାଦକ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ, ବରିଷ୍ଠ ସାହିତ୍ୟିକ ଓ ସମାଜ ସେବୀ ଶ୍ରୀଯୁକ୍ତ ମଧୁସୂଦନ ମହାନ୍ତି ଆଡ଼ଭୋକେଟ, ପୁରୀ ସଦାଶିବ ସଂସ୍କୃତ ମହାବିଦ୍ୟାଳୟର ଅଧ୍ୟାପକ ବୀର ହନୁମାନ ଶାସ୍ତ୍ରୀ ସାହିତ୍ୟ ଓ ଜ୍ୟୋତିଷାଚାର୍ଯ୍ୟ, 'ଗ୍ରନ୍ଥାବଳୀ' ଦେଖି ନିଜ ନିଜର ମତାମତ ଦେଇ ଥିବାରୁ ସେମାନଙ୍କ ନିକଟରେ ମୋର କୃତଜ୍ଞତା ଜଣାଉଛି ଏବଂ ମୋର ସମସ୍ତ ପ୍ରକାର ତ୍ରୁଟି ସକାଶେ ପାଠକ ମାନଙ୍କ ନିକଟରେ କ୍ଷମାଭିକ୍ଷା କରୁଛି ।

ଶ୍ରୀ ସରୋଜ କୁମାର ପାଣିଗ୍ରାହୀ
**ସଂକଳକ**

# ≡ ସୂଚୀପତ୍ର ≡

| ବିଷୟ | ପୃଷ୍ଠାଙ୍କ |
|---|---|
| **ଏ** | |
| ଏଣିକି ମାନଭେଜ | ୩୨୭ |
| ଏ ଚୋର ବୃନ୍ଦାମଣି | ୪୦୦ |
| ଏଥରକ ଶ୍ୟାମଦୋଷ | ୮ |
| ଏଡେ ଭାଗ୍ୟ ମୋର ହେବକି | ୩୭ |
| ଏନନ୍ଦ ସୂନୁ ଛାମ୍ବି | ୧୨୩ |
| **କ** | |
| କର କରୁଣା ମୟୀ ରାଧେ | ୧ |
| କେଉଣେ ଆସିଲୁ ମନ | ୧୭ |
| କେ ସପ୍ତ ନୀପ ମୂଳରେ | ୧୯ |
| କାଉଁଦା ସୁତାଙ୍କ ରୂପଗୁଣ | ୨୦ |
| କର ଜୁହାର | ୨୫ |
| କି ପାଶୋର ଦେଲି | ୩୩ |
| କେ କି କଣ୍ଠ କି ବଗିଡ଼ାଇଲା | ୩୭ |
| କେଶର କୁଂଜ ଶେଯରେ | ୫୩ |
| କାହ୍ନିଙ୍କ ଶ୍ୟାମ ମୂରତି | ୫୫ |
| କେଉଁ ବିଦେଶୀ ପରବାସରେ | ୭୫ |
| କେଉଁ ପଥିକ ନଗରେ | ୮୧ |
| କି କରିବ ପଛେ ଗୋଡ଼ାଇଲି | ୬୨ |
| କୋଇଲି | ୭୦ |
| କୁଂଜ ବନରେ କାଲିଆ ଦେବତା | ୮୭ |
| କି କଲକ ମୁ ଛୁଟି ଉଦ୍ଧାଲରେ | ୯୮ |
| କେଉଣେ ନିର୍ଗୁଣ ହେ | ୧୦୩ |
| କେଉଁ ତୀର ପର ବାସୀ | ୧୦୪ |
| କଦମ୍ବ ବନେ ବଂଶୀ ବାଜିଲା | ୧୧୨ |
| କୃପା ନକଲେ | ୩୧୩ |
| କଳା କାହ୍ନୁ ହେ | ୩୧୭ |

| ବିଷୟ | ପୃଷ୍ଠାଙ୍କ |
|---|---|
| **କ** | |
| କରୁଣା ମୟୀ ରାଧେ | ୩୧୯ |
| କେବେ ମୁଁ ଅରୁଣ କମଳ | ୩୩୨ |
| କାଳୀୟ ମର୍ଦ୍ଦନ ଶରୀର | ୧୧୫ |
| କେଶବ ଦେବ .ଗୁଆଳୀ ଗଣ | ୧୧୭ |
| କର କୀର୍ତ୍ତନରେ ରସନା ସତତ | ୧୧୮ |
| କେଉଁ ବ୍ରଜ କୁଳାଙ୍ଗନା ମଧ୍ୟେ | ୧୧୯ |
| କରି ଜୁହାର ମାଗୁଛି ମୁଁ | ୧୨୦ |
| କୃପା କରନ୍ତୁ ସେ କୃଷ୍ଣ | ୧୨୩ |
| କନକ ରୁଚିର କାନ୍ତି | ୩୩୩ |
| କପ ହେବାରୁ | ୩୪୪ |
| କୋକଧର ନେବରେ | ୩୪୬ |
| କଳା ଶ୍ରୀମୁଖ ହେ | ୩୫୩ |
| କଲ୍ୟ ଜାଇଥିଲେ | ୧୩୭ |
| କାହ୍ନିଙ୍କ ମନ ନ ଘେନୁ | ୧୪୦ |
| କେପଥ ବଣାକଲି | ୧୪୮ |
| କରନ୍ତୁ ପୀୟୂଷ ଥାଳୀ | ୧୫୦ |
| କହୁଛି ଘେନରେ ମନ | ୩୫୭ |
| କେବଣ ବିରହି | ୩୬୪ |
| କହିବାକୁ ସିନା ଶ୍ୟାମ ପ୍ରୀତି | ୧୫୨ |
| କଣୋଗ ମଣୀ | ୧୫୨ |
| କେତେବୋଲି ମୋ ଦୁଃଖ | ୧୬୩ |
| କହୁଥିଲି ମୁଁ ନାହିଁ ନାହିଁ | ୧୬୫ |
| କହୁଛି କି ମୁହିଁ ଗୁମାନ | ୧୬୬ |
| କି କରିବି କହ ବ୍ରଜବଧୂ | ୧୬୭ |
| କି ବଳଗଲା ରାଧିକେ | ୧୭୦ |
| କହୁଛରେ ମନ | ୩୭୦ |

।

—✻—

## —ନିବେଦନ—

ଗୋପାଳକୃଷ୍ଣ ଗ୍ରନ୍ଥାବଳୀରେ ଯେଉଁ ସବୁ
ମୁଦ୍ରାପ୍ରମାଦ ରହିଛି ୪୦୧ ପୃଷ୍ଠାରେ
ତାହାର ଶୁଦ୍ଧିପତ୍ର ଦେଖନ୍ତୁ ।

# ଗୋପାଳକୃଷ୍ଣ ଗ୍ରନ୍ଥାବଳୀ

## ରାଧାଙ୍କ ସମ୍ମୁଖେ ବିଜ୍ଞପ୍ତି

( ରାଗ ଜଙ୍ଗଲା, ଆଡ଼ତାଳ )

କର କରୁଣା କରୁଣାମୟୀ ରାଧେ!

ଶରଣ ହେଲି ଚରଣାମ୍ବୁଜେ କିଙ୍କରୀ କରି ।୦।

ପ୍ରିୟ ତାଙ୍କୁ ସିଁବାକୁ    ରହସ୍ୟ ବୃତ୍ତାନ୍ତକୁ

ନଖେପ ନବ କୁଙ୍କୁମ ପଙ୍କ ରଜସ୍ତ ।୧।

ବ୍ରଜବଧୂ ଅଙ୍କରେ    ବଜେ କଳ କେଳିରେ

ସେବିଲି ପର ମୁଁ ପୁଷ୍ପ ବ୍ୟଜନ ଧରି ।୨।

ମୋଦକ ଦେଇ ଆନ    ଆପଣା ସମ୍ପାଦନ

ନିବେଦିଲେ ନିଯୋଗ ମୋତେ ଶ୍ରୀ ଯଶୋଦା ।୩।

ଦୂର ନୋହି ମୁହୂର୍ତ୍ତେ    ସଦାରଙ୍ଗ ସଙ୍ଗତେ

ଯାବତ ଶ୍ରୀଅଙ୍ଗ ସେବା ମୁଁ କଲାପରି ।୪।

ଶ୍ରୀ କଞ୍ଜାଂଘ୍ରି ସ୍ମରଣ    କରି କରୁ ଶରଣ

ଗୋପାଳକୃଷ୍ଣ ବୋଲେ ଯାଉ ଯା ବାହାର ।୫।

—*—

ଶ୍ରୀ କୃଷ୍ଣଚନ୍ଦ୍ର କୁମାରୀଙ୍କର ପଦ ପଙ୍କଜରୁ ହୋଇ ଦୂର
କେସେ ତାଙ୍କରି ରୂପ ଗୁଣ ସୁମରି
ବିଳାପ କରଇ ନିରନ୍ତର ଯେ । ରାସେଶ୍ୱରୀ ।
ଭିନ୍ନ ହେଲି କି ମୁଁ ଅଛି ପ୍ରାଣ ଧରି ଯେ ।
ମନେ ହେଉଛି ଏବେ ଦେଖିଲି ପରି ଯେ ।
ପରଂ ପଦରେ ନଥିବାର ମାଧୁରୀ ଯେ । ୧ ।

ଆଉ ବିଲୋକିବି ନାହିଁ ପରି ଶ୍ରୀ ବ୍ରଜବଧୂଙ୍କ ନେତ୍ରକାର ।
ନିରଙ୍କ ଘପୂର୍ଣ୍ଣି ସର୍ବଦା ପ୍ରସନ୍ନ
ଶରତ ଶଶୀ ଶ୍ରୀମୁଖ ତୋରି ଯେ । ରାସେଶ୍ୱରୀ । ୨ ।
ଗୋ କୁଳ କୁଳ ଯୁବତୀଙ୍କର ଗୁରୁଚମ୍ପା ଗଣ୍ଡ ମଣ୍ଡଳର
ଲକ୍ଷେ ଲକ୍ଷ୍ମୀ ଶୋଭା ଲକ୍ଷ୍ୟ ହେବ ନାହିଁ
ପଦାବ୍ଜ ନଖ ତ୍ରିକୋଣକୁ ଯାଉ ଯେ । ରାସେଶ୍ୱରୀ । ୩ ।
ବ୍ରଜେନ୍ଦ୍ର ନନ୍ଦନ ପ୍ରାଣପ୍ରିୟା ସୌଭାଗ୍ୟ ବଳରେ ଅଦ୍ୱିତୀୟା
ହେମନ୍ତ ହେଲେହେଁ କୃଷ୍ଣଦାସୀ ବୋଲି
ଅଭିମାନୀ ଆହ୍ଲାଦ ବିନୟୀ ଯେ । ରାସେଶ୍ୱରୀ । ୪ ।
କୃଷ୍ଣଲାଗି ସ୍ରକ ଧରି ଆସି ବୃନ୍ଦା କାତ୍ରୁ ଉଠି ହସି ହସି
ପାଣି ପ୍ରସାରି ଯେବେ ନେବେ ତୁଆଉଁ
ତୁଆଉଁ ପଡ଼ିଲାର ଉଲ୍ଲସି ଯେ । ରାସେଶ୍ୱରୀ । ୫ ।
ଶ୍ରୀମୂର୍ତ୍ତି ସୁଷମା ବ୍ରଜେଶ୍ୱରୀ ଯେଉଁଠାରେ ଦେଖି ଦେଲେ ଧରି
ଆନନ୍ଦେ ଅଶ୍ରୁ ପୂରି ଯାଇ ନୟନେ
ଯେଣ୍ଟ ଯାନ୍ତ ନେହେ କୋଳ କରି ଯେ । ରାସେଶ୍ୱରୀ । ୬ ।
ପଶା ମୁଁ ପକାଉଥିବା ବେଳେ ଗୋବିନ୍ଦ ଚନ୍ଦ୍ରମା ବସାଇ କୋଳେ
ମୁଖେ ମୁଖ ଦେଇ ତାମ୍ବୁଳ ଦେବାର
ଶୋଭା ନଗଲିହିଁ ହୋଇଲା କାଳ ଯେ । ରାସେଶ୍ୱରୀ । ୭ ।
ବ୍ରଜେନ୍ଦ୍ର ପୁରକୁ ଭୋଜ୍ୟ ଦେଇ ହାସ୍ୟାମିନ ମୋତେ ପଠିଆଇ
ଚାଲଉଟିବା ଯାଏ ଅନାଉ ଥିବାର
ପୁର ପ୍ରାଙ୍ଗଣରେ ଉଭା ହୋଇ ଯେ । ରାସେଶ୍ୱରୀ । ୮ ।
ବାହୁଡ଼ ମୁଁ ଅଇଲି ବେଳକୁ ହସିଲା ହୋଇ ଆସି ରହକୁ

ଚରୁରୁ ପ୍ରାଣେଶ ସମସ୍ତ ମୁଁ କହି
ଦିଅଇ ଚଟାଉ ଶ୍ରୀହସ୍ତକୁ ଯେ । ରାସେଶ୍ୱରୀ । ୯ ।
ନାମ ନ ଧର ପ୍ରାଣ ଶଂକର    ପଛେ ଗୃଲି ଯାଇ ଡାକିଲାର
ପୁଣି ଖୁଜିବାକୁ ବନ ବଜାରରେ
ମୋହନ ଭୁଲାଇ ହୋଇବାର ଯେ । ରାସେଶ୍ୱରୀ । ୧୦ ।
କୁଞ୍ଜ ବଚକଳ ବାଟିକାରେ    ଅଳ କ୍ରୀଡ଼ା ଭୂମି ଶ୍ରୀ କନ୍ଦରେ
ପାଣି ଦେଇ ପ୍ରିୟ ଗୃହୁଁ ଜାଣି ତାଙ୍କ
ନେତ୍ର ବୁଜିବାର ଶ୍ରୀ ହସ୍ତରେ ଯେ ରାସେଶ୍ୱରୀ । ୧୧ ।
ପ୍ରିୟ ସ୍ତନକ୍ଷତ ପୂଜାଧନ    ଆନନ୍ଦ ସ୍ୱରେ ନବ ବଧୂଜନ
ପୁରିଥିଲେ ବ୍ରଜ ବନ୍ଧୁକୁ କହାଇ
ପିବା ସମୟରେ ସୁପ୍ରସନ୍ନ ଯେ । ରାସେଶ୍ୱରୀ । ୧୨ ।
ଦୋଳ ମହାଷ୍ଟରେ ଅର୍ଦ୍ଧ୍ୟସ୍ଥାଳୀ    ବଦାଉ ପ୍ରିୟଙ୍କୁ ନେତ୍ର ଡାଳି
ସମୁଦ୍ର ଉଚ୍ଛୁଳିଲା ପରି ଶୁଭିଲା
ବ୍ରଜବାଳୀ ହେଲେ ହୁଳହୁଳୀ ଯେ । ରାସେଶ୍ୱରୀ । ୧୩ ।
ଆଜ କେତେ କୋଟି ଜନମରେ    ହେମ୍ନେକତ ନେତ୍ର ଯୁଗଳରେ
ପୌର୍ଣ୍ଣମାସୀ ଆଜ ଗୃହିଁ ବୁଡ଼ିଗଲେ
ସ୍ନେହ ସୁଖ-ସୁଧା ବାରିଧିରେ ଯେ । ରାସେଶ୍ୱରୀ । ୧୪ ।
ବଳେ କରିଯାଇ ଶଙ୍କୁଂଳକୁ    ବଳେ ପ୍ରିୟ ନେଇ ହୃଦୟକୁ
ସ୍ୱେଦେ ବସ୍ତ୍ର ପଦ ଧୂଳି ପୋଛୁ ଥାଉ
ମୁଁ ଆଗ ହୁଅନ୍ତି ମୋହନଙ୍କୁ ଯେ । ରାସେଶ୍ୱରୀ । ୧୫ ।
ହାର ଗୁନ୍ଥିବାକୁ ନିଡ଼ାନ୍ତରେ    ଠାରି ଡାକି ମୋତେ ମସ୍ତକରେ
ମୁକ୍ତାମଣି ଯାକ ସେଠୁ ଗୋଟିଆଉ
ଦୁହେଁ ଦେବାର ମୋ ଅଞ୍ଜଳୀରେ । ରାସେଶ୍ୱରୀ । ୧୬ ।
ଆପଣାକୁ ଗୃହିଁ ଏକାକର    ସୁଷ୍ଠା ବଦନେ ବଂଶୀଧାରୀ
ଆଶ୍ଳେଷ କରି ଶ୍ରୀମୁଖେ ଚୁମ୍ବଦେଉ
କହିବାର ହସି ସରି ସରି ଯେ । ରାସେଶ୍ୱରୀ । ୧୭ ।
ଦାନ କେଳିରେ ବ୍ରଜେନ୍ଦ୍ର ସୁତ    ପଛରେ ଯାଇ ଧରୁ ପଣନ୍ତ
ପ୍ରଣୟ ବେଷ ହାସ ଭୂରୁ କୁଞ୍ଚିତ
ହୋଇଥାଇ ବାଣୀ ବର୍ଣ୍ଣ ଲୁପ୍ତ ଯେ । ରାସେଶ୍ୱରୀ । ୧୮ ।

ଓଃଟାର ହୋଇ ପଛକୁ ଆସ୍ୟ ଭୁଲାଇ ଛଡାଇ ବାସ ଶେଷ
ଲୁଚିବାକୁ ଗୋବର୍ଦ୍ଧନ କନ୍ଦରରେ
ନେଇ ମୁଁ କରଇ ପରବେଶ ଯେ । ରାସେଶ୍ୱରୀ । ୧୯ ।

ସୂର୍ଯ୍ୟାର୍ଚ୍ଚନ ଲାଗି ବ୍ରହ୍ମ ବେଶ ହୋଇ ଆସିଥାନ୍ତି ପ୍ରାଣଈଶ
ପୂଜା ବଡ଼ ଓଲଗ ବୋଲୁ ଜଟିଳା ।
ଜନ୍ମାର ହେବାର ହସ ହସ ଯେ । ରାସେଶ୍ୱରୀ ।୨୦ ।

ଦେଖ ବୋଲ ବୃନ୍ଦା ବଧୂପ୍ରାଣି ଛଦ୍ମ ବଟୁକରେ ଦେଉ ଆଣି
ହାତଧରି କହୁ ଲଳିତା ପଛରେ
ଥର ଉଣ୍ଡ ହୋଇବାର ଠାଣି ଯେ । ରାସେଶ୍ୱରୀ । ୨୧ ।

ସମନାଙ୍କୁଁ ଜଣେ ସର୍ବାଂଶରେ ଯାହାଙ୍କୁ ଗୋଲକ ପର୍ଯ୍ୟନ୍ତରେ
ତେମନ୍ତ ବ୍ରଜେନ୍ଦ୍ର ସୁତ କହୁଛନ୍ତି
ସୃଷ୍ଟ ଯା ପଦାବ୍ଜ ଦାସୀଠାରେ ଯେ । ରାସେଶ୍ୱରୀ । ୨୨ ।

ପ୍ରିୟ ସ୍ୱନକ୍ଷତ୍ର ପୂଜାହନ ଜନନୀ ଗୃହକୁ ଯିବାହନ
ଆଲୀ-ନକ୍ଷତ୍ରାବଳୀରେ ପୂର୍ଣ୍ଣ ଚନ୍ଦ୍ର
ଚଳଗଲା ପର ଶୋଭାବନ ଯେ । ରାସେଶ୍ୱରୀ । ୨୩ ।

ଯାଇ ପିତାମାତା ଚରଣରେ ପ୍ରଣମିତ ହେଉ ଧରଣୀରେ
ଦୁହେଁ ଚୋଳୁ ଚୋଳୁ ଯାହା ହେଉଥାନ୍ତି
ସୁଖ, ଶୋକ, ସ୍ନେହ ବାତ୍ସଲ୍ୟରେ ଯେ । ରାସେଶ୍ୱରୀ । ୨୪ ।

ସୁନ୍ଦ୍ରାମାନଙ୍କି ପ୍ରତିମା ପର ହୋଇଥାନ୍ତି ରହିଁ ବଂଶୀଧାରୀ
ଚରଣ ନୂପୁର କ୍ୱଣନରେ ଆହା
ଆହା ରାଜ ଉଠେ ସର୍ବାପୁରୀ ଯେ । ରାସେଶ୍ୱରୀ । ୨୫ ।

ଆହା ସେ କାଳ ଲଳନା ଯାକ ଭୁଲିଲେ ରହିବ କା ବବେକ
ହଣି ପ୍ରାପ୍ତି ହେଲା ପର ମଣୁ ଆନ୍ତି
ବୃଷଭାନୁ ପୁରଜନ ଯାକ ଯେ । ରାସେଶ୍ୱରୀ । ୨୬ ।

ତାମ୍ବୂଳ ଯୋଗାଡ଼ ସପ୍ରମାଦେ ଡାଳ ଡୋଳା ପ୍ରାଣନାଥ ପାଦେ
ଲଜ ହର୍ଷ ମିଶା ଶ୍ରୀ ମୂର୍ତ୍ତିଙ୍କି ଦେଖି
ମଜ୍ଜିଲ ନାହିଁ ମୁଁ ଆନନ୍ଦରେ ଯେ । ରାସେଶ୍ୱରୀ । ୩୦ ।

ଜାଟ୍ୟ ଚମତ୍କାର ଯାକ କଳ ନର୍ତ୍ତକ ସାମନ୍ତ ବନମାଳୀ

ଶ୍ରମ ବୃନ୍ଦେଁ ଆପଣଙ୍କୁ ହୃଦପଦ୍ମେ
ଧରିବାର କରପଦ୍ମେ ତୋଳି ଯେ । ରାସେଶ୍ୱରୀ । ୩୧ ।
ବାଞ୍ଛୁ ନିଜ ପୀତବାସ ଶେଷେ     ବ୍ୟଜନ ଭ୍ରମର ଯୂର ପାଶେ
ସମ୍ଭୂତ ତରଙ୍ଗ ପରି ପଡ଼ୁଥାଇ
ବଳେଲୁ ଥାଇ ମୁଁ ସନ୍ଦରଷେ ଯେ । ରାସେଶ୍ୱରୀ । ୩୨ ।

ଶ୍ରୀ ବୃନ୍ଦାବନେ ପଞ୍ଚାଭିଷେକ     ହେବା ଦିନ ମହୋତ୍ସବ ଯାକ
ଶେଷରେ ନିଃଶେଷ ହେବଙ୍କ ଯେକଥା
ଜିଣି ଗାଉଗଲ ବ୍ରହ୍ମଲୋକ ଯେ । ରାସେଶ୍ୱରୀ । ୩୩ ।

ଶଙ୍ଖ ଚୂଡ଼କୁ ସଂପାରୁ ହରି     ଆସୁ ଭୟେ ତାଙ୍କ କଣ୍ଠଧରି
ହୃଦେ ଲାଗି ରହି ଯିବାର ସୁଷମା
ଏବେ ଈକ୍ଷଣେ ରହିଛି ପୂରି ଯେ । ରାସେଶ୍ୱରୀ । ୩୪ ।

ଥାଉ ଆଉ ଯାକ ପାଶେ ଆଳୀ     ପୁରି ବସିଥାନ୍ତି ଶିର ଢଳି
ଠାରି ତାଙ୍କ ମୁଖୁ ଚର୍ବିତ ତାମ୍ବୁଳ
ଦେବାର ମୁଖ ଚନ୍ଦ୍ରମା ତୋଳି ଯେ । ରାସେଶ୍ୱରୀ । ୩୫ ।

ସ୍ୱ କିଂକରୀ ଜନବତ୍ସଳତା     କରିବେ କି କୋଟି ଜନମ ତା
ଆପଣା ଅନୁଭବ ଶେଷ ଯାବତ
ଦତ୍ତ କରିବାର ଶେଷ ବଦାନ୍ୟତା ଯେ । ରାସେଶ୍ୱରୀ । ୩୬ ।

ରହନ୍ତୁ ଇତର ବ୍ରଜବାଳୀ     ଯାଗୁଣି ସୁନ୍ଦର ପଣ ଭାଳି
ସପୁଲକ ହୋଇ ମଜ୍ଜି ଯାଉ ଥାଇ
ଶୁଣି ପରପତ୍ନୀ ଚନ୍ଦ୍ରାବଳୀ ଯେ । ରାସେଶ୍ୱରୀ । ୩୭ ।

ଥିଲେ ମୁଁ କି ଅପରାଧ କରି     ତୁଚ୍ଛକୁ ହେଲେ ମାଇଲା ପରି
ଶ୍ରୀକର ଗୋଳ ପୁଣି ହସିଦେବାର
ସୁମରି ହେଉଛି ପ୍ରାଣ ଘାରି ଯେ । ରାସେଶ୍ୱରୀ । ୩୮ ।

ଜନମୀ ଗୃହରେ ସ୍ଫୁଟ କରି     ହା ସ୍ୱାମିନି ମୋର ନାମ ଧରି
ତାଙ୍କ ପଶୁରୁ ପ୍ରାଣନାଥ ସମସ୍ତ
କଷ୍ଟ ତୋଷି ଦେବାର ମାଧୁରୀ ଯେ । ରାସେଶ୍ୱରୀ । ୩୯ ।
ନିଭୃତ କୁଞ୍ଜ କୁସୁମ ଶେଯେ     କାଲି କାଳେ କାନ୍ତ କୋଳେ ବଜେ

ଯାଣେ ମୁଁ ବଜାଉ ପଦ୍ମତ ହୃଦରେ
ହସି ଧରିଆନ୍ତୁ ପ୍ରିୟ ଭୁ ଯେ । ରାସେଶ୍ୱରୀ । ୪୦ ।

ଆହାକି ମୋହର ସୁଦଇବ    ପୂର୍ବର ସେ ଭାଗ୍ୟ ଲେଉଟିବ
ବିଲୋକିବ ପ୍ରାଣନାଥଙ୍କ ଅଙ୍କରେ
ହରଷାଶ୍ରୁ ନେତ୍ରେ ପୂରିଯିବ ଯେ । ରାସେଶ୍ୱରୀ । ୪୧ ।

ଆସ ଆସ ବୋଲି ହସି ହସି    ଡାକୁ ତନୁ ପଡ଼ିବ ଉଲ୍ଲସି
ସାଷ୍ଟାଙ୍ଗେ ଦୁହିଁଙ୍କ ପଦାବ୍ଜେ ଲୋଟିବି
ତୋଳିବେ ଶ୍ରୀହସ୍ତେ ଆଶ୍ୱାସି ଯେ । ରାସେଶ୍ୱରୀ । ୪୨ ।

ସତେକି ଶ୍ରୀମୁଖ ବିଲୋକିବି    ପୀୟୂଷ ଦୃଷ୍ଟିରେ ଗାଧୋଇବି
ଚିରକାଳ ଚରଣାବ୍ଜର ବଞ୍ଚିତି—
ଉଗ୍ରବାତ ହୋଇ ଲଭିଇବି ଯେ । ରାସେଶ୍ୱରୀ । ୪୩ ।

ବୃଷଭାନୁ କୁଳ-କୀର୍ତ୍ତିଲତା    ପୌର୍ଣ୍ଣମାସୀଙ୍କ ସର୍ବସ୍ୱଭୂତା
ବୃନ୍ଦାବନ ପ୍ରାଣୀ ପ୍ରାଣ ହା ସମସ୍ତ
କାନ୍ତ କୁଳାଧିଷ୍ଠାତ୍ରୀ ଦେବତା ଯେ । ରାସେଶ୍ୱରୀ । ୪୪ ।

ଶ୍ରୀ ଗୋବିନ୍ଦ ସର୍ବାର୍ଥ-ସାଧିକେ    ଗୋପୀ ପ୍ରେମରତ୍ନ ମଞ୍ଜୁଷିକେ
ଶ୍ରୀ ବ୍ରଜେଶ୍ୱରୀଙ୍କ ବାତ୍ସଲ୍ୟ ବସତି
ହା ଶ୍ରୀ କୀର୍ତ୍ତିଦା ନେତ୍ର ତାରକେ ଯେ । ରାସେଶ୍ୱରୀ । ୪୫ ।

ଆହା ରାମଲାସ୍ୟ ମଞ୍ଚସାରେ    ମଦନ ମୋହନ ସମକ୍ଷରେ
ଅଙ୍ଗାଭ ବ୍ୟଞ୍ଜକ ସୁଭୂଷା ଝଲକ
ଆହା ମନୋଭବ ସ୍ୱ ରୂପରେ ଯେ । ରାସେଶ୍ୱରୀ । ୪୬ ।

ଲଳିତାଂଘ୍ରିରେ ଓଲଟି ହେଉ    କରୁଣା ଗୁଣେ କରେ ଉଠାଉ
ଭବ ଅନ୍ଧକାର କୂପର କଦନ
ସ୍ୱପନରେ ନହଟିବ ଆଉ ଯେ । ରାସେଶ୍ୱରୀ । ୪୭ ।

ଦଣ୍ଡବତ ହୋଇ ବିଶାଖାଙ୍କୁ    ଜୁହାରିବ ପ୍ରଭୁବରଙ୍କୁ
ରୂପ ମଞ୍ଜରୀ ପଦେ ପଡ଼ି ଲଭିବି
ସେବା ଚିନ୍ତାମଣି ରତନକୁ ଯେ । ରାସେଶ୍ୱରୀ । ୪୮ ।

ଦୟାମୟୀ ପଣେ ଦଣ୍ଡବର    ଶ୍ରୀପଦ ପଙ୍କଜ ସେବାମୋର

ଗୋପାଳକୃଷ୍ଣ ଜଣାଉଛୁ ଦଣ୍ଡନେ
ତୃଣ ବଂଶୀ କୋଟି କୋଟି ବାର ଯେ । ରାସେଶ୍ୱରୀ । ୪୯ ।

—*—

( ରାଗ-ମାଣ୍ଡୁ ମାଳବ ଗୌଡ଼ା । ରୂପକ-ତାଳ )

ଉଠିଲୁ ଏତେ ବେଗି କାହିଁକରେ ଦୁଃଖିଧନ !
ଦଧି ମନ୍ଥାଇ ଦେବୁ ନାହିଁକ ରେ । ପଦ ।

ଦେହ ପାସୋର ଦଣ୍ଡେ ନନ୍ଦନଗଲୁ ଏତେ
ବଢ଼ୋଲ ହେଲୁ ମୋର ପାଇଁକରେ । ୧ ।

ଖେଳବୁ ଶ୍ୟାମ ଭୁଲେ ପଢ଼େ ସ୍ୱନ୍ତ ପାଇଲେ
ଶୁଆଇ ଦେବ ଗୀତ ଗାଇକ ରେ । ୨ ।

ମନ୍ଥିବ ମୁଁ କେମନ୍ତ ଖୁଆ ଦଣ୍ଡରୁ ତାତ
ଛାଡ ଦେଉଛୁ ସର ଖୋଇକ ରେ । ୩ ।

ଆହାଏକ ପ୍ରମାଦ କନ୍ଦନା ବାବୁ ପାଦ
ଡ଼ାକ ଯା ବଳରାମ ଭାଇକରେ । ୪ ।

ମନ୍ଥନ ଘଟେ ହାତ ପୂରାଇ ନବନୀତ
କାଢ଼ୁ ବୋଲନ୍ତ ହେଲୁ ବାଇକରେ । ୫ ।

ଭୁଞ୍ଜ ହାତଟା ଖାଇ ନାଚୁଛୁ କାହିଁ ପାଇଁ
ଶିଖିପିବୁ ନବ୍ଦୁହାଁ ଗ୍ଭଇକରେ । ୬ ।

ଗୃହକୃତ୍ୟ ପକାଇ ବସିଥିବ ଏକାଇ
ନଶିଦନ ତୋତେ କାଖେଇ କରେ । ୭ ।

ପଣତରେ ବଦନ ପୋଛିଦେଲେ ଚୁମ୍ବନ
ଗୋପାଳକୃଷ୍ଣ ଚନ୍ଦାଇ ଦୁହିଁକିରେ । ୮ ।

—*—

## ରାଗ—ମାୟା ମାଳବ ଗୌଡ଼ା

( ମିଶ୍ର ରୂପ )

ଏଥରକ ଶ୍ୟାମ ଦୋଷରେ କ୍ଷମାରେ । ପଦ ।

ପଦତଳେ ପଡ଼ି ଯାଉଛନ୍ତି ସଢ଼ି
ତୋଳଦେଲେ ଶ୍ରୀମୁଖ ଚନ୍ଦ୍ରମାରେ । ୧ ।

ନ ଧୋଇଁ ଶ୍ରବଣ କହୁଛନ୍ତି ଶୁଣ
କୃପାନିଧି ବୃଷଭାନୁ ଜେମାରେ । ୨ ।

କେତେ ଥର ସହ୍ବ ଯାଇନାହୁଁ ସହ୍ବ
ଅପରାଧ ତକ ଘେନ ପ୍ରେମାରେ । ୩ ।

ପଶୁପ ନଗରୀ ଶିଖି ଚିବସର
ନଗୁହାଁଲେ କେଶରୀ ମଧ୍ୟମାରେ । ୪ ।

ଗୋପାଳ କୃଷ୍ଣ ସେ ସମୟରେ ଭାବେ
ଅର୍ଥ ହୋଇ ଗଲାଣି ହୀଯାମା ରେ । ୫ ।

—*—

## ରାଗ ପାନ୍ତ ବରାଡ଼ି—ମିଶ୍ର ରୂପତାଳ

ଭଜ ମନ ବ୍ରଜବନ ଦ୍ୱିଜରାଜଙ୍କୁ
ଅଜ ଶେଷ ଭବ ବନ୍ଦ୍ୟ ପଦପଙ୍କଜଙ୍କୁ । ପଦ ।

ନେତ୍ରେ ରଂଜି ଦିବ୍ୟାଞ୍ଜନ ପ୍ରେମରେ କର ଲୋକନ
ବଦ୍ଧେ ବଂଶୀ କ୍ଷୁଦେବ୍ରହ୍ମ ଗୁଂଜ ସ୍ରଜଙ୍କୁ । ୧ ।

ଅମ୍ବୁଜ କୁଟୁମ୍ବ କନ୍ୟା ପ୍ରସ୍ତାର କଦମ୍ବ ବନ୍ୟା
ନଭଚର ରାଧାସ୍କନ୍ଧ ନ୍ୟସ୍ତ ଭୁଜଙ୍କୁ । ୨ ।

ପଶୁପୀ ନକ୍ଷତ୍ରା ବଳୀ ହୋଇ ସର୍ବନ୍ଦ ମଣ୍ଡଳୀ
ଯାଜନ୍ତି ସୁର ପରାଜୟ ସଜଙ୍କୁ । ୩

ଅଖିଳ ରସ ଶ୍ରୀମୂର୍ତ୍ତି କୋଟିଏ ମଦନ ଦ୍ୟୁତି
ଅନାବେନକ ଶ୍ରୀଖଣ୍ଡ ଚୂଳ ଧ୍ୱଜଙ୍କୁ । ୪

ଶ୍ରୀପ୍ରତାପ ରୁଦ୍ର ଦେବ ଭାଷନ୍ତି ସମ୍ଭତ ଭାବ
ହର ଜନ୍ମାନ୍ତର ଅହଂ ତମ ପୁଞ୍ଜଙ୍କୁ । ୫ ।

———

( ପୋଇବାଣୀ )

ରାସେଶ୍ୱର ପଦ ସର୍ବେରୁଦ୍ଧ ଦାସୀ
କରେ ବଳାପକେ ବଞ୍ଚି ଉରେ ବସି । ୧

ଆହା ଶ୍ରୀବୃନ୍ଦାରଣ୍ୟ ଚନ୍ଦ୍ର ବର୍ଦ୍ଧିନୀ
ଆହା ବ୍ରଜ ବଧୂ ପ୍ରାଣ ପ୍ରଣୟିନୀ । ୨ ।

ଆହା ଶ୍ରୀନନ୍ଦସୁତ ଚିତ୍ତକଂଜ ଗୃହିଣୀ
ଆହା ଶ୍ରୀ ପରମାନଂଦ ସ୍ୱରୂପଣୀ । ୩ ।

ହା ସ୍ୱାମିନୀ କରୁଣା ବରଣାଳୟେ
ଆହାସବରମା ରମାଜନ ଶ୍ରେୟେ । ୪ ।

ଆହା ଗୋପୀ ପ୍ରେମରତ୍ନ ମଂଜୁଷିକେ
ଆହା ସ୍ୱାଧ୍ୱୀ ଶିରୋମଣୀ ଶ୍ରୀରାଧିକେ । ୫

ପରିତୃଷ୍ଣ ବତ୍ସଳାରେ ଜଣେ କେହି
ଆହା ପରମପଦରେ ତୁଲ ନାହିଁ । ୬

ଏହି ଯେନ ବଢୁଛି ସତତ ଆଶା
ଲେଉଟିବ ବୋଲି ମୋର ଶୁଭଦଶା । ୭

ହେଲେ ବର ପର ପରାଧିନୀ ମୁଁ ସନ୍ଧକେ
ରାଧେ କ୍ଷମା ବାରାନଧି ଆପଣ ଯେ । ୮

ମୋର ମଉଳୀ ଭୂଷା ଶ୍ରୀପଦତଳ୍ପ
ଆହା ଦୁର ହୋଇଗଲୁ କେତେ କାଳ୍ପ । ୯

ବ୍ରହ୍ମ ବସ୍ତୁସରୁ ଅଧେ ସରିଗଲା
କୃପା କଟାକ୍ଷ ଲବ ନ ପ୍ରସରିଲା । ୧୦

ପଦ ତଳରେ ଶରଣ ଆଜନମୁଁ
ରକ୍ଷିଥିଲର କରେଖ ଜନେ ମୁଁ । ୧୧

ସ୍ୱକିଂକରୀଙ୍କର ପରିତୃଷ୍ଣ କର
ଦରଶନ ଦଅହେଲେଶ୍ରୀ କଶୋଷ୍ଣ । ୧୨

ତୃଷ୍ଣ ଅନଳଜନ କାଳକୁଟ ଅଗ୍ନି
ଢାଳି ହେ ସ୍ୱାମିନୀ ଦେହୁ ନାହିଁ । ୧୩

କୃପା କଟାକ୍ଷ ପିୟୂଷ ଲବ ସିଞ୍ଚି
ଲକ୍ଷ ଦନ୍ତେ ତୃଣିଧରି ଜଣାଉଛି । ୧୪
ଦେଖିବାର ଆଜ ଦୁଃଖ ଶୁଣିଲେତ
ସେହ୍ନ କ୍ଷଣି ଅର୍ଦ୍ଧ ହୋଇଯିବା ତତ୍ତ୍ୱ । ୧୫
ଏତେ ଜଣାଇଲେ ଶୁଣି ନ ଶୁଣିଲ ପରି
ହେବ ବୋଲି ମୋ ମନେ ନଥିଲା । ୧୬
ପିତା ପୁତ୍ରଙ୍କୁ ପଠାଇ ଏକାମୋତେ
ପଥ ଜନଙ୍କୁ ପଚ୍ଛୁ ଥାଅ କେତେ । ୧୭
ଆହା କାହିଁ ଛଡ଼ିଗଲା ତେତେ ସ୍ନେହ
ଦେଖିବାକୁ ଶ୍ରୀମୁଖ ହେଲା ଦୁର୍ଲଭ । ୧୮
ମୋର କୁତ୍ସାଯାକ ଗୁହିଁ ହରଷରେ
କେତେ ତୋଷ ହେବାର ସେ ମୋ ସେବାରେ । ୧୯
ଅଗୁଳା ଗୁଚ୍ଛ ଉଲାଗି ମାଳା ମୋତେ
ତାଙ୍କ ଆଗ କରି ଦେବାର ସେ ହାତେ । ୨୦
ଦାସୀ ହେଲେ ଅନୁଜା ପରିଏ ପାନ
ଶ୍ରୀ ମୁଖରୁ ମୁଖେ ଦେଇ ନାଗବଲ୍ଲୀ । ୨୧
ଆହା କୃଷ୍ଣ ଧନୁ କୂଳ-କୀର୍ତ୍ତି-ବଲ୍ଲୀ
ଗୁଣିବ ମୁଁ ଗୁଣଯାକ କେତେ ବୋଲି । ୨୨
ଆହା କାହ୍ୱ ଚଢ଼ାଇବା ସୁରଭୁଷି
ବଂଶୀ ବାଜଣ ଶିଖାଇବା ମାଧୁରୀ । ୨୩
ଧାତୁ ଚନ୍ଦରେ ବ ମାଳା ଗ୍ରନ୍ଥନରେ
ପ୍ରବର୍ତ୍ତାଇବାର ବସାଇ ପାଶରେ । ୨୪
ବୈଜୟନ୍ତୀ ଗୁନ୍ଥିଲାର ବେଳେ ମୋତେ
ଧୀରେ ଗୀତ ଶିଖାଇ ବାର ସେ କେତେ । ୨୫
ଆହା କେତେ କଥା ମାନ ସେ ପଢ଼ୁଛି
ବାସ ବଢ଼ାଇବାର ମୁଁ କରି କୁଞ୍ଜ । ୨୬
ଅଂଗ ସୁବାସ ସମ୍ଭୃତ ଲୁଟବାସ
ତୋଳି ଧରି ହେଉଥାଇ ବ ସନ୍ତୋଷ । ୨୭

ଘୃତ କର ଉତ୍କଣ୍ଠା ଶ୍ରୀଖଣ୍ଡ ମଳ
ହୃଦେ କି ସୁଖେ ହେଉଥାଇ ମୁଁ ବୋଳା । ୨୮
ଅଭିସାର କାଳେ ଘନ ତମସୀରେ
କର ପଇଠ ଦେଲୁର ମୋ ଚରମରେ । ୨୯
ଧୋଇ ପଦାବ୍ଜ ପୋଛୁ ମୋ ପଣନ୍ତରେ
କରଭର ଦେଲୁର ମୋ ଚରମରେ । ୩୦
କେଉଁ ଜନ୍ମରେ ଆଉ ମିଳିବ ତାହା
ଆହା କେଣ୍ଢ ହେଲେ ହେଲେ ନାହିଁ ସାହା । ୩୧
କେଣେ ଖରି ଯାଇ ଥିଲେ ଆଣି ଲୋଡ଼ି
ଆହା ଲଳିତାଙ୍କ ପଦ ତଳେ ପଡ଼ି । ୩୨
ସେହି ପ୍ରାଣନାଥଙ୍କର କେତେ କଥା
ଜଣାଇ ମୁଁ ଛଡ଼ାଉଛି ହୃଦ ବ୍ୟଥା । ୩୩
ଥରେ ହେଲେ ସେ ସ୍ମରଣା କଲେ ନାହିଁ
ଆହା ଭୁନ ହେଲେ ପଦେ ନ ଜଣାଇ । ୩୪
କେବେ ସ୍ୱାମିନୀ ମୋପରେ ହେଲେ କୋପ
ବହୁଥିବାର ଦେଖି ନୟନୁ ବାଷ୍ପ । ୩୫
ଦୟାମୟୀ ଶ୍ରୀଲଳିତା ବୋଧ କରି
ଘେନ ଯାନ୍ତି ସେ ଗୁମୁରୁ ହାତ ଧରି । ୩୬
ଆହା ତେମନ୍ତ ମମତା କେଣେ ଗଲା
ମୋ ଅଦୃଷ୍ଟକୁ ପୀୟୁଷ ମାର ହେଲା । ୩୭
ଆହା କ୍ଷଣକେ ବାନ୍ଧି କଳପ ବଲ୍ଲି
ପଦଦ୍ୱୟାରୁ ଢେଲ ସେ ଦୂର କରି । ୩୮
ଆହା ଉଚ୍ଛିଷ୍ଟ ପାତ୍ର ମୁଁ ଧୋଇବାକୁ
ବାଧ୍ୟ ଗାରକୁ ହେଲେ ମାର ନେବାକୁ । ୩୯
ସେବା ଶିକ୍ଷା ଗୁରୁ ଶ୍ରୀରୂପ ମଂଜରୀ
ଆହା ନ ଲୋଡ଼ିଲେ କେବେ ମନ କରି । ୪୦
ଆହା ରାସ ଲାସ୍ୟ ରସ ସୁପଣ୍ଡିତା
ଆହା ଘୋଷ ଯୋଷାଙ୍କ ଲଲାଟ ଶିତା । ୪୧

ଆହା ଅପାର କରୁଣା ଅକୂପାର
ବୋଲି ବ୍ରହ୍ମାଣ୍ଡେ ଡ଼ାକ ବାଜୁଛି ଯାର । ୪୨
ମୋହ ଛୁର ଲାଗି ହେବ କି ଅନ୍ୟଥା
ବ୍ରଜ ପୁରେ ସୁଚରିତ ଯାର କଥା । ୪୩
ମୋ ଅଜଣାରେ ଗୋପେନ୍ଦ୍ରଙ୍କର ଭୁଲେ
କୁଂଜେ ଲୁଚିଥିଲେ କ୍ଷଣେ ନ ଦିଶିଲେ । ୪୪
ବୃନ୍ଦାଟବୀ କୁଂଜଯାକ ବୁଲି ବୁଲି
କେତେ ଶୋକ କରୁଥାଇ ମୁଁ ମୂର୍ଚ୍ଛିଲି । ୪୫
ମୋର ପଛେ ପଛେ ଆସି କୃପାମୟୀ
ଆସ ଆସ ବୋଲି ଧୀରେ ଡ଼ାକ ଦେଇ । ୪୬
ଦେଖି ନୟନେ ନୀର ସ୍ୱ ଅଞ୍ଚଳରେ
ପୋଛି ଦେଲ ନେବାର ଯେ ବଦନରେ । ୪୭
ଆଳୀ ସରିକ ଅଜଣା ସେବା ଯାର
ଆହା କେମନ୍ତ କଂକଣୀ ହେଲା ଦୂର । ୪୮
ଆଜ କେସେ ଦେନବ ହୃଦର ଦୁଃଖ
କାହାର ନୋହି ହୋଇଲ ଯେ ବରେଖ । ୪୯
ହେ ଶ୍ରୀ ବୃନ୍ଦା ବନାଧୀଶ ପ୍ରାଣେଶ୍ୱରୀ
ଜୀବ ଯାଉଛୁମ୍ଭ ନାମ ଧରି ଧରି । ୫୦
ବୃନ୍ଦାରଣ୍ୟରେ ପୁଷ୍ପାବଚୟନରେ
ଆଳୀ ରହିଥିଲା କାଳେ ଦୂରେ ଦୂରେ । ୫୧
ଫୁଲ ତୋଳ ତୋଳ ପ୍ରିୟ ପ୍ରୀତି ଗୀତ
କରି କହନ୍ତି ହେବାର ପୁଲକିତ । ୫୨
ଜାଗି ବଣାଖା ବାଣୀ ଶବ୍ଦାଇଲେ
ଲାଜେ ରହିବାର ବ୍ରଜବଧୂ କୋଳେ । ୫୩
ଆଉ ଅଖି ଦେଖିବ ସେ ମହୋତ୍ସବ
କ୍ଷଣ କ୍ଷଣକୁ ଆହା ନୂତନ ଭାବ । ୫୪
ପିନ୍ଧା ପୁରେ ପୁଷ୍ପ- ମଣ୍ଡପରେ
ଦୋଳା ଚଢ଼ାଇ ବସି ସ୍ୱଚ୍ଛନ୍ଦରେ । ୫୫ ।

ହୃଦେରମଣଙ୍କ ଭାବ ଅବଧାର
ଆହାଗୀତ ଗାଇବାର କି ମାଧୁରୀ । ୬୬ ।
ଶୁଣି ପ୍ରାଣ ପଡ଼- ଯାଉ ଯେତେଜନ
ସ୍ତମ୍ଭପରି ରହିଥାନ୍ତି ତେଜି କର୍ଣ୍ଣ । ୬୭ ।
ବୋଲି ବୋଲି ହେଉଥାନ୍ତି ରାଧା ପରି
ଗୁଣ ସୁନ୍ଦର ପଣେ କେ ହେବ ସରି । ୬୮ ।
ଇନ୍ଦୁ ଉଦୟୁ କାଳର ସିନ୍ଧୁ ବ୍ରତ
ଶୁଣି ହୃଦ ହେଉଥାଇ ଉଚ୍ଛଳିତ । ୬୯ ।
ନବ ତରୁଣୀମା ଲକ୍ଷ୍ମୀ ସନ୍ତତରେ
ସେବ ରହିଛି ନ ଚଳ ପଦାବ୍ଜରେ । ୭୦ ।
ବ୍ରଜ ଜନଙ୍କୁ ସହଜ ବନ୍ଧୁ ପରି
ଘେନାଉଛି ଯା ବଚନ ସୁମାଧୁରୀ । ୭୧ ।
ଯେଉଁଠାରେ ବଲ୍ଲେଇଲେ ଗୁରୁଜନ
ଆହା ନେଉଥାନ୍ତି କେତେ ନିର୍ମଞ୍ଛନ । ୭୨ ।
ଓଲଗିଲେ ଚରଂଗୀବ ହୃଥ ବୋଲି
ବୋଲୁ ନେତ୍ରୁ ସ୍ନେହେ ଅଶ୍ରୁପଡେ ଝୁରି । ୭୩ ।
ବଚେଜ କଲେ ସାରୀ ପଞ୍ଜୀରୀ ପାଶରେ
ସେ ଡାକିବାର ଶୁଣିଛି ଯା ଶ୍ରୁତିରେ । ୭୪ ।
ଆଗୋ ମା ବୋଲି କାନ୍ଦିଁବା ବୃଷଭାନୁ
ଡାକିଲାର ସେ ଡାକ ନଯାଏ ମନୁ । ୭୫ ।
ହା ସ୍ୱାମିନି ଅନଙ୍ଗ ମଞ୍ଜରୀ ଡ଼ାକ
ବାର ବାର ଡାକନ୍ତି କି କରି ଡାକ । ୭୬ ।
ଅପ ପଦାନ୍ତେ ଆକାର ଯୁକ୍ତ କରି
ଡାକିଲାର ହୃଦ ହେଉଛି ଯେ ଧାରି । ୭୭ ।
କେତେ ତୋଷ ହେଉଥାଇ ଶୁଣି ମନ
ହା ଦୁର୍ଦ୍ଦ୍ଦଇବ କରି ଦେଲୁ ସ୍ୱପନ । ୭୮ ।
ଉଚ୍ଚାରୁ ଆଉ ସ୍ୱରୂପ ତାଙ୍କ ପରି
ଆହା ମାନସରୁ ନୁହଇ ବାହାରି । ୭୯ ।

ପୁଣି ପଡଇ ଜୟ ଶ୍ରୀ ଗାନ୍ଧର୍ବିକେ
ହେ ଶ୍ରୀମତି ଜୟ ଜୟ ଶ୍ରୀ ରାଧିକେ । ୭୦ ।
ଆହା କି ସୁସ୍ୱର ଆହା କି ମଧୁର
ହାସେ ବାଣୀ ପଡେ ସୁଧା ସହୋଦର । ୭୧ ।
ପ୍ରିୟ ଲେଖ ଆଣି ବିଚକ୍ଷଣ କାର
ଦେଲ ଇକ୍ଷଣେ ଲଗାଇ ଆପଣାର । ୭୨ ।
ଯତ୍ନେ ଲଗାଇ ହୃଦୟ ବସନରେ
ପଦ୍ମ ଦାଡ଼ିମ୍ବ ବୀଜ ଧଃ ଶ୍ରୀକରେ । ୭୩ ।
ତାଙ୍କୁ ଛୁଆଇବାର ଶ୍ରୀହସ୍ତେ ଧରି
ହରେ ହରେ ହସୁ ଅଛ ଯେ ମାଧୁରୀ । ୭୪ ।
ଲୁହିଁ ଚନ୍ଦ୍ରାନନ ଚାହିଁ ଧୀରି କରି
ଭଣେ ହେ ବୃନ୍ଦାବନ ପରମେଶ୍ୱରୀ । ୭୫ ।
ଗୋଷ୍ଠ ପୁରନ୍ଦର ସୁତ ପ୍ରାଣାଧିକେ
ବୋଲୁ ଶ୍ରୀ ଲଳିତା ମିତ୍ର ଜନାନ୍ତିକେ । ୭୬ ।
ରୁହିଁ ବାହାର ପିବାର ଭୟ କରି
ପୂର୍ବ ବୃତ୍ତସୁ ମାନସରେ ସୁମରି । ୭୭ ।
ଦୁହେଁ ହସାହସି ହୋଇ ଆସିବାର
ନୟନରେ ନାଚୁଛି ସେ ଚମତ୍କାର । ୭୮ ।
ବକ୍ରେ କଲାର ହସୁଛି ପଲଙ୍କରେ
ହରି ଆଜ୍ଞା ହୋଇ ଲଳିତା ପରେ । ୭୯ ।
ହିଙ୍ଗି ପାନ ଦେଉ ଦେଉ ରଜବାସେ
ପ୍ରିୟ ଦନ୍ତ ଚାହିଁ ଦେଖି ହସିଲେ ସେ । ୮୦ ।
ଦୁଇ ହାତେ ବୁଜି ହୋଇ ଦୁଇ ନେତ୍ର
ହସି ଲାଜେ ଲଳିତା ହୃଦରେ ବକ୍ର । ୮୧ ।
ଲୁଚିଇ ବାର ହସୁଛି ହା ସ୍ୱାମିନି
ପତଦ୍‌ଗ୍ରହ ଥାଇ ଯେ ମୁଁ କରେ ସେବନ । ୮୨ ।
କେବେ ଶୟନ ମେଳରୁ ଖଣା କରି
ପ୍ରିୟ ମୁଖକୁ ନ ଦେଖ ପରିକରି । ୮୩ ।

ଦଇବରେ ଏକା ହେଲେ ଗୃହ ଆଶି
ନିଜେ ରହ ସେ ଗଣ୍ଡେ ପଣନ୍ତ ରଖି । ୮୪ ।
ପଦ ଅବମା ଉପରେ ସପିବାର
ଗୋଷ୍ଠ ଚନ୍ଦ୍ରମା ତଳକୁ କଷିବାର । ୮୫ ।
ମଜ୍ଜି ରହୁ ମୁଁ ପୀୟୁଷ ବାରିଧିରେ
ଆହା ଦେଖୁଥାଇ କେତେ ସରଧାରେ । ୮୬ ।
କୋଲୁ-ଗୋପାଳକୃଷ୍ଣ ନସ୍ବନୁ ଧାର
ବହୁଗଲା ପୋଛୁ ପୋଛୁ ବାରମ୍ବାର । ୮୭ ।

—✳✳—

ପ୍ରାର୍ଥନା

ରାଗ ସନ୍ଦୁକୁଳ କାମୋଦୀ । ଆଦ୍ୟତାଳ
( ଘେନାଇ ଆମ୍ଭେ ଯେତେ କହିଲୁ—ବୃତ୍ତେ )
ହା ଗୋଷ୍ଠ ପୁରନ୍ଦର ନନ୍ଦନ ହେ ।
ହା ବ୍ରଜବାସୀ ଜନ ଜୀବନ ହେ ।
ହା କାଳନ୍ଦୀ ପୁଳିନ । କଳ ଭେନ୍ଦୁ ସୁନ୍ଦର
ମଦନାର୍ବୁଦ ମଦ ମର୍ଦ୍ଦନ ହେ । ୧
ଶ୍ରୀ ଯଶୋଦା ବାତ୍ସଲ୍ୟ ଲକ୍ଷ୍ମୀରୂପ
କାନ୍ତି ନନ୍ଦକ କୋଟି ତାରାଧିପ
କୁଣ୍ଡଳ ଆନ୍ଦୋଳନ । ଅଳକା ବୃତାନନ
ହା ହା ହାସ ଶ୍ରୀଅଙ୍ଗ ବକ୍ଷେପ ହେ । ୨
ଦ୍ୱାପରଯୁଗ ସ୍ବର ସମ୍ପୁଟରେ
କାର୍ତ୍ତିକ ଶୁଦ୍ଧ ପର୍ବ ମିହକାରେ
ସୁର ପତର ମଦ । ହରଗୋଷ୍ଠ ସଂପଦ
ଗୋପାଳଙ୍କୁ ରଖିଲ ନସ୍ତାର ହେ । ୩ ।
ଏକ ଅଧିକ ରତ୍ନ ବସୁପରେ
ସପ୍ତ ହବା ରଜନୀ ବାମ କରେ
ଗୋବର୍ଦ୍ଧନ ଶିଖଣ୍ଡ । ଛଡ ପର୍ଣ୍ଣଏଧର

ଖାରତ ଚୁହାଇଲ ଜଗତରେ । ୪ ।
ଜାଣି ଜାଣି ଶ୍ରୀ ଗୋସ୍ବେଶ୍ବରୀ କୋଳେ
ଧର ଆପଣଙ୍କୁ ହା ଶୋକାକୁଳେ
ମସ୍ତକେ ଚମ୍ବି ବାର । ସ୍ବରୂପ ଦୁହିଁଙ୍କର
ଶ୍ରୀ ଶ୍ରୀ ପ୍ରତାପରୁଦ୍ର ଦେବ ଭୋଳେ । ୫ ।

—*—

## ରାଗ ଝିଂଝୋଟି—ରୂପକ ତାଳ

ମଦନମୋହନ ମନୋମୋହନ ରେ ଏକ ନୂତନ ଖେଳ । ପଦ ।
ମାରି ଦେଖ ଅଭିସାର — କଲା ଦେଳକୁ ଅସାର
ଭୁହାଇ ନେଇ ସୁଗଳକୁ ବସିଲୁ ଶ୍ରୀ ମୁଖ ଚୋଳି । ୧ ।
ଏହାପରି କର ଭୋରୁ — ଆସୁଛି ତ ମୁଁ ଘୁମୁଁରୁ
ସେନ ଦେଇଛନ୍ତି ବଂଶୀକି କରିବାକୁ ଭୁ ପ୍ରଣାଳ । ୨ ।
କାନନେ ପଶୁ ପକ୍ଷିଙ୍କି — ପ୍ରଭୁ ବଟପୀ ବଲ୍ଲୀକ
ଜନକଜା ଭଲି ଶ୍ରୀରାମ ପରି ପଗୁରୁ ଅଛନ୍ତି । ୩ ।
ଭାବନ୍ତି ଶ୍ରୀମତୀଧୀରେ — ଶଠପଟ ଦର୍ପଣରେ
ଶ୍ୟାମବାମେ ମୋ ଗ୍ଲାଇକ ମୁଁ ରୁହୁଁ ଭ୍ରମଦେଲା ମତ । ୪ ।
ଗୋପାଳ କୃଷ୍ଣ ପରଣି — ମଣାଇ ନେଉ ଚରଣି-
ତନସ୍ଥା ତଟେ ଭେଟିଲେ ସେ ପ୍ରିୟକୁ ଅଧପଢତ । ୫ ।

—*—

## ରାଗ ମାଧୁମାଳବ ଗୌଡ଼ା । ମିଶ୍ରରୂପ ତାଳ

ଶ୍ୟାମ ଯା ଯା ଜୁହାର ତୋ ପୀରିତିକୁ । ପଦ ।
ତୋର କଥାକୁ କୁଳଜା — ପରତେ କରିଥିବ ଯା
ହୃଦୟରେ ମାରି ନ ଦେଖି କାନ୍ତକୁ । ୧ ।
ବରଜର ଗାରଡଆ — ଦେଖାଇ ଏ ଭୁରୁଡ଼ିଆଁ
ମନମଥ ଭୁତ ଲଗାଉ ସଙ୍ଗକୁ । ୨ ।

ମୁଁ କୃଷ୍ଣ ଦୁଷ୍ଟଦଳନର          ହୋଇଲି ଜାଣେ ବାଳୁତ
ମାଣ୍ଡ ମଜାଇ ଥିଲି ଜେ ସୁବର୍ଣ୍ଣଙ୍କ । ୩ ।
ଗୋବର୍ଦ୍ଧନ ମଣ୍ଡଧରୁ          ଲୁଚି ଅଇଲି ବେଳରୁ
ଖୁନ୍ଦୁଁ ନଥିଲି ମୁଁ ସେ ଜନନ୍ତଙ୍କ । ୪ ।
ଗୋପାଳ କୃଷ୍ଣ କହଇ          ବୋଲନ୍ତୁ ସେ ମୁଁ ଲୁହଁଇ
ତୁମ୍ଭ ନେୟାଳନେ ତୁରିଁବ ଧରଣୀଙ୍କ । ୫ ।

—*—

## ରାଗ ଯଦୁକୁଳ କାମୋଦୀ । ମିଶ୍ର ରୂପତାଳ

( ନାଗରବରର ପ୍ରେମ କରେଷି ଭଣ୍ଟ-ବୃନ୍ଦେ )

ଅବଦେବୀ ବଇକ ଏ ଜଣାଇଲା
କି ମୁଁ କୃଷ୍ଣ ବେଲ ମୁଁ ଭାଲେ ହୋଇଲି । ପଦ ।
ଅଲଗା ଲଗୁଥିବ          ସଦନ ଯାକ ନବ
ସହତ କଳ୍ପୀକି ଦଣ୍ଡ ଦେଲି । ୧ ।
ଅଣ୍ଡିଗଲି ଘ୍ରାଣକୁ          ଦୁଃଖେ ଘୁଞ୍ଚ ଫଳକୁ
ତୁମ୍ଭଁ ମା ବୋଲି ଧନ ଦସି ତୁରିଁଲି । ୨ ।
କି ଉନ୍ମାଇ ଗାବନ          ଆଦ୍ୟ ଅଇଲି ବନ
ସହକର ମୁଖକୁ ବୃଷ୍ଟି ନଥିଲ । ୩ ।
ଲଳ ନରକବାଭ          ଉଦ୍ଧୁ କେଳ ପ୍ରଭାର
ଅଜନ ସ୍ନୁଇବୁରେ ବଳ ନଥିଲି । ୪ ।
ଗୋପାଳ କୃଷ୍ଣ କୋହଲ          ଅଙ୍ଗେ ଶଷ୍ଟା ଭଲେ
ଦେଖ ଆଜ ଆଖରି ଚନ୍ଦ୍ର ଥିଲି । ୫ ।

—*—

## ରାଗ ତୋଡ଼ି—ଏକତାଳି

କେଉଁଣେ ଆସିଲୁ ମନ ଉଣ୍ଡ ନଯାଇ ।
ସମସ୍ତ ବଳଜୀବ ଦେଖିକ ଭାଇ । ପଦ ।
ଗୋଷ୍ଠୀଚଳ ଚନ୍ଦ୍ରମା          ଶ୍ରୀ କୃଷ୍ଣଚନ୍ଦ୍ର ନେମା
ପଦାର ଜଦ ସେବାକୁ ଯୁକ୍ତ ଦେଇ । ୧ ।

ନିଭୃତ କୁଞ୍ଜରେତ  ଅଳି ବାନ୍ଧିବେ ଝୁଡ
    ଡାକି କଣ୍ଠଖଣ୍ଟି ଏବେ ଦେବ ଉଠାଇ । ୨ ।
ଦୋଇଲେ ଅପହ୍ନୁତ  ଧରିକାଞ୍ଚୀ ପାହ୍ନୁତ
    ସ୍ୱାମିନୀ ଆଗେଯାନ୍ତୁ ପଥ କଢ଼ାଇ । ୩ ।
ସୂର୍ଯ୍ୟ ପୂଜା ବେଳରେ  ସ୍ୱାମିନୀ ଅଞ୍ଚଳରେ
    ବେଗେ ଅର୍ଘ୍ୟପାତ୍ର ଧଇଅନ୍ତୁ ବଢ଼ାଇ । ୪ ।
ନନ୍ଦପୁରକୁ ଯିବେ  ଯିବେ ଗହନେ କୁ ଯେ
    ଥାଇ ପ୍ରାଙ୍ଗଣେ ପଦ ଧଇଅନ୍ତୁ ଧୋଇ । ୫ ।
ନାଗେଶ୍ୱରୀ କୁଞ୍ଜରେ  ଶ୍ରୀ ରତନ ଦୋଳାରେ
    ଯିବେ ଜଳେ କୁ ଦେଖନ୍ତୁ ପଦ ଥାଇ । ୬ ।
ସାରି ଜଳଲୀଳାକୁ  ବାସଲଗି ହେବାକୁ
    କଣ୍ଠା ବଉଳି କରନ୍ତୁ ପଛ ଥାଇ । ୭ ।
ସ୍ୱେଶ୍ୱରୀ ଚୋରି ହସ୍ତେ  ବଂଶୀ ନେଲେ ଗୁପତେ
    ଯତନେ ରଖିଥାନ୍ତୁ ପଦ୍ମ ଲୁଚାଇ । ୮ ।
ଶ୍ରୀମଣ୍ଡ ଗୃହାନରେ  ଲଳିତାଙ୍କ ପଦରେ
    ଜଣାନ୍ତୁ ଜଣାଣ ଶ୍ରୀ ଗୋବିନ୍ଦ ପାଇ । ୯ ।
ପ୍ରାଣନାଥ ଗ୍ରାମକୁ  ଯିବେ କଲ୍ପ କାଳକୁ
    ଲେଉଟିବେ ବେଗେ ଏବେ ଯାଅ ଚଳାଇ । ୧୦ ।
କେତେ ପ୍ରହେଳୀ ଗାନ  ଆହା ସ୍ୱପ ଦର୍ଶନ
    ଭ୍ରମ ନାଶିବୁ ଫୁଲ ପଶା ଖେଳାଇ । ୧୧ ।
ନାଗରେନ୍ଦ୍ର ଗ୍ରାମକୁ  ବୃନ୍ଦା ଆସୁ ଦୂରନ୍ତୁ
    ସ୍ୱେଶ୍ୱରୀଙ୍କ ଋତରେ ଦେବୁ ଭେଟାଇ । ୧୨ ।
ନାସ୍ତି ଶିର ଭୂଷାକୁ  ନାଗର ମୁକୁଟକୁ
    ମୁରୁଛିଲୁ କିପରି କୁ ନ ଲୋଡ଼ାଇ । ୧୩ ।
ମଧୁପାନ ଉତ୍ସବରେ  ଜଣିଥାନ୍ତୁ ଲଗରେ
    ସୁଧା ଫଳାପ ଶୁଣି ହସିବୁ ଦୋଇ । ୧୪ ।
ନିକୁଞ୍ଜ ଆଙ୍ଗଣରେ  ଚନ୍ଦ୍ରମା କିରଣରେ
    ପ୍ରହେଳୀ ଉତ୍ତରୀକ ଶୁଣିଲୁ ନାହିଁ । ୧୫ ।

ସଖାଖେଳ ବେଳରେ ସ୍ୱମିନ ନ ବସିଲେ
ବଳେ ଲଳତା ଦେବେ ଧଣ୍ଡ ବସାଇ । ୧୬ ।
ଗୋପାଳ କୃଷ୍ଣ ଭଣେ ପ୍ରାଣକୁ ରଚା ଗଢ଼ଣେ
ନଅ ଗୁଜନା ଦେଡ଼ ଭିତରେ ଲଇ । ୧୭ ।

## ରାଗ ହରିକାମୋଦ ମିଶ୍ର ରୂପ ତାଳ

ସାଜ ସଜ ଗୋଷ୍ଠ ଚନ୍ଦ୍ରମା ଆସିବେ ଆଜ । ପଦ
ଦେଇଛନ୍ତି ଝର ଧର ଧୀର ଧୀର
ରସ ରଂଗିଣୀ କାହ୍ନିଁକି ଲାଜ । ୧
ମୋ ବାଣୀ ପ୍ରଣୀତ କର ପ୍ରାଣମିତ
ଶାନ୍ତ ଶାନ୍ତ ହୋଇ ଯିବ ସଜ । ୨
କଟିଛନ୍ତି ବାଟ ଶିଖଣ୍ଡି ମୁକୁଟ
ପଠାଇଲୁ ବୋଲି ଲାଗି ସଜ । ୩
ଘେନ ମୋ ବଚନ ହୁଅସୁ ପ୍ରସନ୍ନ
ପର ପତ୍ନୀଙ୍କର ଲାଜ ତେଜ । ୪
କଂକଣ ଝଂକାର ନଖରେ କଂକଣ
ଗୋପାଳ କୃଷ୍ଣ ବୋଲଇ ବ୍ରଜ । ୫

—*—

## ରାଗ ଝଂଜୋଟି ମିଶ୍ର ରୂପ ତାଳ

( ଜାମନେ ଥିଲା ଏକଥାରେ—ବୃତ୍ତେ )

କେ ଦଣ୍ଡା ନୀପମୂଳରେ । ନୂଆ ବାଦ୍ଧବାଡ଼ ପଥ ଏ ବଟଣ । ପଦ
ପ୍ରଗନ ପୁଚ୍ଛ ଟେକ ସଦରଣେ । ବରହ ନାଚୁଛି ଚରମ ଦେଶେ ।
ଇନ୍ଦ୍ରଧନୁ ଉଦେ ହୋଇଛି ପରା । କ କେକ ଶିଖଣ୍ଡ ମୁକୁଟ ତୋର ସେ ।
କଟୀରେ କ ପୀତବାସ ଶୋଭୁଛି । କ୍ଷଣପ୍ରଭା ଅବା ସ୍ଥିର ହୋଇଛି ସେ ।
ଗଣ୍ଡ ବାସବ ମଣି ଆଦରଣେ । କୁଣ୍ଡଳ ଘମଣି ପରି ଢଳ ସେ ସେ ।
ବକ ଆବଳୀକ ମୁକୁତା ହାର । ଜଗ ଜନ ମନମୃଗ ବାଗୁରା ସେ ।
ସ୍ମୃତି ବୃନ୍ଦାରଣ୍ୟ ଚକ୍ରବର୍ତ୍ତୀ । ଶୃଙ୍ଗାର ରସ କି ହେଲା ମୂରତି ସେ ।
ଗୋପାଳ କୃଷ୍ଣ କହେ କ୍ରମ ବଧୂ । ଯେ ଗୋପବଧୂ ଜୀବନର ବନ୍ଧୁ ସେ ।

—*—

## ରାଗ ଚକ୍ରା କେଦାର

କହିଦା ସଖୀଙ୍କ ମୁହେଁ ଶୁଣି । କେ ସେ ଦାସୀ ଗୁଣି ପୁନଃ ପୁନ ।
କରଇ ବିଳାପ ପ୍ରେ ଶ୍ୟାମଙ୍କ ପେଖି
ସୁଗ ନାଗର କର ସ୍ମରଣ ସେ । କଙ୍କଣ । ୧
ଖଦ୍ୟୋତଭା ତଟ କୁଞ୍ଜ ରେ । ଖଗନନ୍ଦନ ବନାନ୍ତରେ ।
ଖଂଜନାକ୍ଷୀ ଆସୁ ଉଠିପ୍ରିୟ ମାଗୁ
ଜଗିଥିବ ମୁଁ ଦ୍ୱାର ପାଶରେ ହେ । ସ୍ୱାମିନୀ । ୨
ଗବାକ୍ଷ ଜାଳରେ ନେତ୍ର ଡାଳ । ଗଲ ସୁହୁଁ ଥିଲ ବେଳେ ଆଳୀ ।
ଗୋବିନ୍ଦ ପଦ ଚଳିଲେ ଦେହଳୀ କ
ଯିବ ମୁଁ କେଳ ଚଳପ ଗୋଳ ହେ । ସ୍ୱାମିନୀ । ୩
ଘର୍ମ ମିଶା ସିନ୍ଦୂର ଶୀକର । ସଞ୍ଜେ ଠାଁ ଠାଁ ଧୋଇ ପଡ଼ିବାର ।
ସୋଷି ଦେବ ଶଙ୍ଖେ ଅଳକ୍ତ ଚନ୍ଦ୍ରକୁ
ସ୍ୱର୍ଣ୍ଣ ସେଜରେ ଶ୍ରୀ ପଦାବ୍ଜର ହେ । ସ୍ୱାମିନୀ । ୪
ଙରେଖ ମୁଁ ଛିନ୍ନ ମୋତିହାର । ନେବ ଗୋଟିଆଇ ପଡ଼ିବାର ।
ନୂପୁର କାଞ୍ଚୀ କାଞ୍ଚୁଲି ଯେସ ଧର
ଦେବ ପୁର ପଥେ ଆଗୁସାର ହେ । ସ୍ୱାମିନୀ । ୫
ଚୂଳ ଆସୁଛି ଜଟିଳା ଦେହି । ଟକ ସତ୍ୟର ବୋଲୁ କଣ୍ଠ ଖଟୀ ।
ଚଞ୍ଚଳେକ୍ଷଣୀ ଚଳୁ ମୁଁ ସୁଲଆଗେ
ସୁହୁଁ ଥିବ ପଙ୍କଜୁ ଖାଳିଟି ହେ । ସ୍ୱାମିନୀ । ୬
ଛ ବଣଜଳା ଚନ୍ଦ୍ର ଲପନେ । ଛପି ପ୍ରବେଶୁ ବଧ ସଦନେ
ଛ ଦ ପ୍ରିୟଙ୍କର ଶ୍ରୀ ଅଙ୍ଗେ ବନ୍ଦୋଜ
ମାଗି ଲୁଚାଇ ଦେଶ ସତନେ ହେ । ସ୍ୱାମିନୀ । ୭
ଯାଇ ଖେପେ ସହୁଡ଼ି ଭିତ୍ତିରେ । ଜମ୍ବୁନ ଦାଢ଼ୀ ଶବ ପଟରେ
ଜଳନ ବଧୂ ଛଡକ ସୁହୁଁ ସୁହୁଁ
ତୋଳି ଦେବ ଉଦଃ ଉଣନ୍ତରେ । ସ୍ୱାମିନୀ । ୮
ଝିନ ଉପୃକ୍ତଣ ଯାହୁରାଇ । ଝସ ନନ୍ଦୁନା ହେ ପଡ଼ୁଡ଼ାଇ
ଝିଲ ଅଳତା ଉଂକତ ପଦଧର
ଧୀରେ ଦେବ ଅଙ୍ଗୁଳି ଫୁଟାଇ ହେ । ସ୍ୱାମିନୀ । ୯

ନଃ ଶେଷରେ ନିଶି ହେଲା ହତ । ନୃତ୍ୟ କୃତ୍ୟର ବନ୍ଧୁ ଯାବତ
ନିର୍ବାହ କରିପୁଣି ଆସି ଭେଟନ୍ତୁଁ
ଅପହୃତ ହୋଇଥିବନ ତ ହେ । ସ୍ୱାମିନି । ୧୦
ଟାଣେ ଜଟିଳା ଡାକନ୍ତେ ଉଠି । ଟେକି ପଲକ ଦେଖି ବମ୍ବୋଷ୍ଠୀ
ଟଳ ଟଳ ହୋଇ ଗୃହଯାଇ ପୀଠେ
ବସୁଦେବ ଖାରଦନ୍ତ କାଠି ହେ । ସ୍ୱାମିନି । ୧୧
ଠାକୁରାଣୀ ଦନ୍ତ ସମାର୍ଜ୍ଜନ । ଠିକେ ବତ୍ରୁ କଢ଼ାଇବ ବନ
ଠ ବର୍ଣ୍ଣ ମୁଖ ସୁବର୍ଣ୍ଣାଙ୍ଗୀ ପ୍ରକ୍ଷାଳୁ
ଧଳେ ଦେବ ପୋଛିବା ବସନ ହେ । ସ୍ୱାମିନି । ୧୨
ଡାଙ୍କ ମଧ୍ୟ ବାହ୍ୟ କୃତ୍ୟ ସାରି । ଡାକୁ ମୋତେ ଆହାଧୀର କରି
ଡାହାଣ ବାମ ପାଣି ପାଦ ଧୋଇବ
ମୃଦ ଦେଇ ନିଗିଡ଼ାଇ ବାରି ହେ । ସ୍ୱାମିନି । ୧୩ ।
ତାକୁଥିବେ ତୋଳା ହର୍ଦ୍ଧି ଦ୍ରୁତ । ତାଳେ କ୍ଷଣୀ ତୈଳ ସେବାସନ୍ତୁ
ତୋକଲ୍ଲ [illegible]ରି ସୁଧା ଶୁଣି ମଣିବ
ବୋଲି ଆଣଯା ବାର ରମ୍ଭୋରୁ ହେ । ସ୍ୱାମିନି । ୧୪
ଅବ୍ଜ ଯୁତ ସୁବାସିତ ନୀର । ଅଭିଷେକ କରୁ ମୁଁ ସଭିର
ଅନ୍ତପନେ ଚୀନାଂଶୁକେ ଶ୍ଳୀଲନତା
ମାଜି ମୋଛିବେ ଶ୍ରୀକଳେବର ହେ । ସ୍ୱାମିନି । ୧୫
ଭୂଲ୍ୟ କାଳାରୁଣ ଦ୍ୟୁତିଲଙ୍ଘି । ତନୁଦଶ୍ମ ହୋଇ ଆଢ଼େ ଲାଗି
ତତ୍କାଳ କଜ୍ଜ୍ୱଳ କାନ୍ତୀ ଚୀନ ଚେଳ
ପିନ୍ଧ ଚଳବ କଳ ଧୌତାଙ୍ଗୀ ହେ । ସ୍ୱାମିନି । ୧୬
ଥିର ହୋଇ ବସୁ ଆସନରେ । ଥାଇ ଲଳିତା ପଛକଭରେ
ଥୋଇ ଟଙ୍କାରି କଙ୍କତିକା କୁନ୍ତଳ
ଫେଡ଼ି ବେଢ଼ିବେ ଅଳି ନିକର ହେ । ସ୍ୱାମିନି । ୧୭
ଦେବ ଘନ୍ଧଢ଼ ତାଳ ଗୃମର । ଦିବ୍ୟ ମଣି ସ୍ତବକ ନିକର
ଦେଇ ଶ୍ୟାମଳ ବେଣୀ ବ୍ୟାଳୀ ସାଜବେ
ହରିବାକୁ ଧୈର୍ଯ୍ୟ ବ୍ରଜେନ୍ଦ୍ରର ହେ । ସ୍ୱାମିନି । ୧୮
ଧରି ଥିବ ମୁଁ ଘୃସୃଣ ପାଦେ । ଅନ୍ୟ ବିଶାଖା ଲେପି ଶ୍ରୀଗାତ୍ରେ

ଧୀରେ ଭକ୍ତି ଛେଦ କର ମୃଗ ମଦ
ଶିଫ କଳ୍ପିତେ ଉରଜ ଗାଢେ ହେ । ସ୍ୱାମିନି । ୧୯
ଣଟିଳରେ ସିଂଦୁର ବିଂଦୁକୁ । ନଯୋଜୁ ଖରୁଥିବ ମନକୁ
ନକୁଳ ବିହାଷି ନୟନରେ କାମ—
ଚମ ନାଶିବ ବୋଲି କ୍ଷଣକୁ ହେ । ସ୍ୱାମିନି । ୨୦
ପଦ୍ମ ପକ୍ଷାଗ୍ରଫିତ ଭ୍ରମର । ପର ଦର୍ଶିବ କେତେ ସୁଂଦର
ପରମାନଂଦ ସ୍ୱରୂପିଣୀ ତବୁକେ
ବିଂଦୁ ନ ଯୋଜୁ ମୃଗ ମଦର ହେ । ସ୍ୱାମିନି । ୨୧
ଫୁଲ ନର୍ମଦା ଅଣି ଦେବାର । ଫେଡ଼ ପିନ୍ଧାଇ ଦେବ ସଭର
ଫଳ ଉଠିବ ମୋ ତନୁ ସୀମନ୍ତରେ
ଲେଖି ଲଳିତା ସିଂଦୁର ଗାର ହେ । ସ୍ୱାମିନି । ୨୨
ବ୍ରଜ ବଧୂ ସୁଖୀ ହେବା ପାଇଁ । ବକ୍ଷୋଜକୁ ରଖିବଲୁକାଇ
ବିଚିତ୍ର କାଞ୍ଚୁଲି ନାନା ହାରାବଳି
ଦେବ ଜତନେ ଲାଗି କରାଇ ହେ । ସ୍ୱାମିନି । ୨୩
ଖର ପାଇବ ମୋତେ ସେବାରେ । ଉପ୍ଟ ତେଳ ଅଂଜନ ନେତ୍ରରେ
ଭର ମାର୍ଜି ଦେବ କର ଦରଶନ
ବ୍ରଜ ବଧୂ ହେବେ ମୋ ପରବେର ହେ । ସ୍ୱାମିନି । ୨୪
ମଣି ରତ୍ନାଳଙ୍କାର ଯାବତ । ମଥା ଯାଏ ପଦକୁ ଉତ୍ତରତ
ମଣ୍ଡି କ ଉସ୍ତୁଭ ମିଶ୍ର ଶମନ୍ତକ
ମଣି କର ଦେବ ଅଳଂକୃତ ହେ । ସ୍ୱାମିନି । ୨୫
ଯେଉଁ ଚରଣ କଞ୍ଜର ଧୂଳି । ସୁବାଦର ହୋଇବାର ବୋଲି
ସତ୍ନେ ଲେଖିଦେବ ଲକ୍ଷ୍ମୀ କ ମେ ପଦେ
ଯାର ରକ୍ତାମ୍ବୁଜ ନୀଜଗ୍ଳାନ ହେ । ସ୍ୱାମିନି । ୨୬
ହତ ସଦ ସଂସ୍କୃତ ମେଳା । ରମଣୀପ୍ସୁ ଉଚକଳ ମାଳା
ରମଣୀ ମୁକୁଟ ମଣି କଣ୍ଠେ ଦେବ
ଆନେ ନ ତନ୍ତୁ ପ୍ରାଣେଶ ଡୋଳା ହେ । ସ୍ୱାମିନି । ୨୭
ଖଳା ଡମରୁ ସେନ ସ୍ତନରେ । ଲଳିତାଙ୍ଗୀ ବୃନ୍ଦ ବାନ୍ଧିବାରେ
ଲଳିତା ସଙ୍ଗେ ଦ୍ୟୁମଣି ମଣି ବେଣି

ମଧ୍ୟେ ଭଲେ କରିବ ସଜ୍ଜରେ ହେ । ସ୍ୱାମିନ । ୨୮
ବନଭିନ ଆରାଧନା ସାରି । ତାସେ ବାସ୍ତୁକୃତ୍ୟ କରି କରି
ଭଲ୍ଲେଲୁ କୁଜଲତା ଆସି ଡାକବେ
ଜଟିଳାଙ୍କ ସମାଧାନ କରି ହେ । ସ୍ୱାମିନ । ୨୯
ସବୁ ସ୍ତ୍ରୀ ସଦନକୁ ସାଇ । ସୀତକାର ଝାଙ୍କୁ କସଇ
ସଭ୍ରର ସେକୁନ୍ଦବଲ୍ଲୀ ଭ୍ରମ ପାଶେ
ଗୋଷ୍ଠୀ ଭରିବେ ଆଳୀଙ୍କି ନେଇ ହେ । ସ୍ୱାମିନ । ୩୦
ସନ୍ଧ ଆସିବାକୁ ନାହିଁ ଡରି । ସବୁ କୃତ୍ୟ ଅନ୍ତ ସଦନର
ଶୁଣି ଜଟିଳା ବୋଲିବେ ଯାଅ ଚୌଣ୍ଡ ମାସ
କମ୍ବଳନ୍ତ ବାର ବାର ହେ । ସ୍ୱାମିନ । ୩୧
ସବ ସଖୀ ସଙ୍ଗେ ବନେ କରୁ । ସୂଦସ୍ୱାରେ ମୋତେ ଶିରେ ଠାନ୍ତୁ
ସଦ୍ୟାନ ପ୍ରାଣେ ଶଙ୍କର ଧରି ପିଚ
ରୂପ ମଂଜରୀଙ୍କ ଆଦେଶରୁ ହେ । ସ୍ୱାମିନ । ୩୨
ଚର୍ଷେ ମଣ୍ଡି ପାଦ ରାଜପଥ । ହୋଇ ଭେଟ ଗୋଷ୍ଠୁ ପ୍ରାଣନାଥ
ଦପି ରହୁଁ ଥିବେ ଶ୍ରୀବ୍ରଜେଶ୍ୱରୀଙ୍କି
ପ୍ରଣମିବ ହୋଇ ହେଟ ମାଥ ହେ । ସ୍ୱାମିନ । ୩୩
କ୍ଷମାକର ମୁଖକୁ ଅନାଇ । କ୍ଷୀରେଦଧି ପ୍ରାଏ ରଙ୍ଗୀ ହୋଇ
କ୍ଷଣେ କୋଳ କରି ଶିରେ ଚୁମ୍ବ ଦେଇ
ଗୋପାଳ କୃଷ୍ଣାଂଘ୍ରି ଦେବ ଧୋଇ ହେ । ସ୍ୱାମିନ । ୩୪

—*—

## ରାଗ ମୋହନା—ରୂପକ ତାଳ

( ମୋ ଜୀବର ଜୀବନ—ବୃନ୍ଦେ )

ମାନ କରୁ ଥିଲି
ବ୍ରଜ ବଧୂ ନେତ୍ର ଲୁହ        ପୋଛୁଇବ ବୋଲି ପିନା ମୁଁ । ପଦ ।
ମନୋରଥ ପୂରିଇଲି
ଜଗାବନ ପଦାର ବିନ୍ଦ   ସେମାନେକ ପରମାନନ୍ଦ ହୋଇଲି । ୧ ।
ଏଥର ନିଷ୍ଠିନ୍ତ ହେଲି
ମୋ ସେନ ଦୁଃଖ ପାଉଥିଲି କେତେ ଯେ ତୁମ୍ଭ ବାଞ୍ଛା ପୂର୍ଣ୍ଣିକଲି ।୨।

ବରଜର ଚନ୍ଦ୍ରାବଳୀ
ବଇଶି ମୋଠାରେ ଏପାଳି  କରିବ ଶ୍ୟାମଙ୍କୁ ଗଳାର ମାଳ । ୩ ।
ସୁଖୀ ହୋଇବେ ଅତୁଳ
ଏଣିକ ଗୁଆଳୀ ପ୍ରଣୟରେ ମଜ୍ଜି  ଶ୍ରୀ ଯଶୋଦାଙ୍କ ସଙ୍ଗାଳ । ୪ ।
ଆଳୀ ଦେଖୁ ଲୁଚ ନାଳୀ
ବନ୍ଧୁ ଗୋପାଳକୃଷ୍ଣ କହେ  ଆଇଲେ ଦେଖି ଶ୍ରୀଖଣ୍ଡ ମଣ୍ଡଳ । ୫ ।

—**—

## ରାଗ ଖମାଚ—ଆଦ୍ଧତାଳ

( ଭଜମନ ରାଧେକୃଷ୍ଣ ବୋଲି—ବୃତ୍ତେ )

ଯନରତ ରାଧାକୃଷ୍ଣ ଶ୍ରୀ ମୂର୍ତ୍ତିଙ୍କି ଧ୍ୟାୟି ।
ମନ ସଂଗଣ୍ଡରେ ରସି ଯାଅନା ଚଳାଇ । ପଦ ।

ବିଶ୍ୱ ବିଷ ଗର୍ଭରେ  ମଜ୍ଜି ଅନୁ ବରତରେ
ଭବଭୋଗ ପ୍ରତ୍ୟାଶାରେ ମାରନା ଭ୍ରମାଇ । ୧ ।
କଳାଧ କନ୍ୟା ପୁଳକେ  କୁସୁମିତ କୁଂଜବନେ
ରତ୍ନ ଚିନ୍ତାମଣି ସିଂହାସନରେ ବସାଇ । ୨ ।
କୁଂଜନ ଦଳତାଞ୍ଜନ  ବଦନାସୁ ସୁରଂଜନ
ତନୁ ଦ୍ୟୁତିକ ଦିବ୍ୟ ଲୋଚନରେ ଅନାଇ । ୩ ।
ଷୋଳ ସୁପୁଷ୍ପଚେଷ୍ଟରେ  ଧ୍ୟାନକୁ ଯେ ଆଗୋଚର
ଭାବରେ ଭାବ ସେବ ମୋ ସଂକଳ୍ପ ପୂରାଇ । ୪ ।
ସ୍ୱଜାଏସୁ ସାଧୁ ସଙ୍ଗେ  ସ୍ୱାରସିକ କଥା ରଙ୍ଗେ
ଦିନ ନିଅ ଶ୍ରୀରାଧା ଗୋବିନ୍ଦ ଗୀତଗାଇ । ୫ ।
ଗୋପାଳକୃଷ୍ଣ ଭଣିତ  ହୋଇଛୁ ତୋ ଅନୁଗତ
ମୋ ଜୀବକୁ ସେ ପଦାବ୍ଜ ଛାଅରେ ମିଳାଇ । ୬ ।

—*—

## ରାଗ ଝଂଜୋଟୀ—ମିଶ୍ରରୂପ ତାଳ

( ମୁରଲୀ ତୋତେ ଶରଣ ଗଲି—ବୃତ୍ତେ )

ତାଳତ ରାଧା ରମଣ ବୋଲକ
ଦୂତ କି ବୋଲଇ ସେନବା ଭଲ ଯେ । ପଦ ।
ଧୋଇଲା ବାରଣ ପଗଏ ଧୂଳ
ବଢ଼ଏ ନ ଯାଉ ହେବତ ବୋଳ ଯେ । ୧ ।
ଆଖିର ପୁଟରେ ଏ ନଟ ଭ୍ରୂବଲ୍ଲୀ ।
ଅଛି କେ ଅପରନ୍ତେ ଛଇଳ ଯେ । ୨ ।
ବପୁଃ ସନ୍ଧୀନ୍ତୁ ବଳବା ଗୁଞ୍ଜାଳୀ
ଯାକର ଯା କର ମଥା ମୁଚୁଳୀ ଯେ । ୩ ।
ଗଉଣ ଛାର୍ଥ ଆଉ ବାଟ ଭୁଲ
ଛଡ଼ ବଂଶୀ ଛୁଇଁ ଗୁଡଳ ଦୋଲ ଯେ । ୪ ।
ଜା ଅଧର ସବୁ ଗୋକୁଳ ବାଳୀ
ମଧୁ ପିଇବାର ଅଧୁଆଳୀ ଯେ । ୫ ।
ଗୋପାଳ କୃଷ୍ଣଙ୍କୁ ସେ ବନମାଳୀ
ଜାଣନ୍ତୁ ଜାଣି ହେଉଛୁ ବାଉଳ ହେ । ୬ ।

## ରାଗ ନାଦନାମକ୍ରିୟା—ମିଶ୍ରରୂପ ତାଳ

( ଧୀର ସମୀରେ ବସି ଡାକୁଛି ତୋନାରେ—ବୃତ୍ତେ )

କର ଜୁହାର ମାଗୁଛି ମୁଁ ବଂଶୀ ତୋତେ
ହରିକଣ୍ଠେ ଜନ୍ମ ମୋ ଦଶା ଇଚ୍ଛତେ । ପଦ ।
କୃଷ୍ଣ ମୁଖର ବଦ ସମୀର ମକରନ୍ଦ
ରସିକା ତୁ ଅନୁଗ୍ରହ କର ମୋତେ । ୧ ।
ଅଧର ତୃଣ ମଣି ସଜନର ଗୁହ୍ମଣୀ
ତଦାବ୍ରଜର ଦୂର ଦୁଃଖ ଜଣା ଯେତେ । ୨ ।
ତ୍ରୈଲୋକ୍ୟ ନିରୁପମ ବ୍ରଜ ବନିତା ପ୍ରେମ
ଚାତୁରେ ଶ୍ରୀ ପ୍ରତାପରୁଦ୍ର ସନ୍ତତେ । ୩ ।

—*—

## ଦୋଳି ଗୀତ

ଶ୍ରୀ ନନ୍ଦ ସୁନ୍ଦରୀ ବନ ପଠେଇ ସୁତଙ୍କୁ
ଭଳନ୍ତି ଅପରାହ୍ଣ କାଳେ ସିଂହଦ୍ୱାରେ ରହି । ୧ ।

କେତେବେଳକୁ ମୋ କୃଷ୍ଣଚନ୍ଦ୍ର ଆସିବ
କୋଳରେ ବସିଲେ ଦେଖିବ ମୋର ଦୁଃଖ ଯିବ । ୨ ।

ଗଲବେଳୁ ବାବୁ ବନେ ଗୋରୁ ଚରାଇ
ବଡ଼ ଅଜାଣ ଲୋକ ମୋତେ କେହ୍ନ ଦୋଷ ନାହିଁ । ୩ ।

ପାପିନୀ ମୋ ଗର୍ଭେ କାହିଁପାଇଁ ଜନ୍ମିଲୁ
ଦଣ୍ଡେ ନ ରହିଲୁ ସଦନେ ବନେ ଘର କଲୁ । ୪ ।

ଏ ଗ୍ରୀଷମ କାଳେ କ୍ଷୁଧା ତୃଷା ଆକୁଳେ
ଗୋରୁ ଚରାଉଥିବୁ ବସି କେଉଁ ତରୁତଳେ । ୫ ।

ନବ ନବନୀତ ଠାରୁ ଦେହ କୋମଳ
ଏ ଖରାଗ୍ନିରେ ବହୁଥିବ କେତେ ଶ୍ରମଝାଳ । ୬ ।

ଦୁଃଖୀର ଜୀବନ ଦରିଦ୍ରର ସମ୍ବଳ
କେଉଁ ଗଡ଼ିଗଲା ନଇଲା ମୋର ବନମାଳୀ । ୭ ।

ସ୍ୱପ୍ନେ ଅଲଗା ନୋହୁ କ୍ଷଣେ ହୃଦୟରୁ
ପଠାଉ ବନକୁ ନିତ୍ୟ ମୁଁ ନାହିଁ କରୁ କରୁ । ୮ ।

ବଳି ଦେଉଥିବ କ୍ଷୁଧା ବଶେ ଉଦର
କେଉଁ ସଜନୀ ତା ଦେଖିଲେ ଧରିବ ଶରୀର । ୯ ।

ମୁଁ କୋଳକଲେତ ସ୍ତନ ପାନକୁ ମନ
ସଖା ବସିବେ ବୋଲି ଯିବା କରୁ ବରଜନ । ୧୦ ।

ଫାଟି ଯାଉ ନାହିଁ ମୋ ପାଷାଣର ଛାତି
ପଠାଇ ଦେଉଛି ବନକୁ ସଜଳିର ନିତି । ୧୧ ।

ଆରେ ଗୋକୁଳ ନୃପତି ଲୁକ ପ୍ରତାପ
ଧନଜନ ଦୁଃଖ ପାଇଲୁ କଲି ମୁଁ ପାପ । ୧୨ ।

କେତେ କୋଟି ଜନ୍ମେ କେତେ ତପସ୍ୟା କରି
ଦଳିତ ଇଚ୍ଛା ହେବାକୁ ପଶୁ ଏତେ ସରି । ୧୩ ।

ମକର କୁଣ୍ଡଳ ତୋ ଶିଖଣ୍ଡ ମୁକୁଟ
ଅଳକା କଳର ସୁଷମାଭୋ ଲଲାଟ ପଟ । ୧୪ ।
ନାଶା ବଂଶିର ନୂଆଁ ଶିଆ ମୁକୁତା
ନୂତ ଯାଇ ତୋ କପାଳର ଗୋରଚନା ଚିତା । ୧୫ ।
ମୁରଲୀର ମଣି ଛଣି ତନୁ ସୁନ୍ଦର
କୋଟିଏ ବ୍ରହ୍ମାଣ୍ଡ ନନର ମୁକୁଟାଳଙ୍କାର । ୧୬ ।
ଧେନୁ ପଛେ ବୁଲୁ କଥାଇଲେ ପ୍ରପଦ
କେତେଠାରେ ବସୁଥିବଟି ମୋ କେଶ ସମ୍ପଦ । ୧୭ ।
କେବଳ ଧେନୁ ଧୂଳ ପଡ଼ଥିବ ଅଙ୍ଗରେ
ଝାଡ଼ଦେବ କୋଳେ ବସାଇ ମୋର ପଣନ୍ତରେ । ୧୮ ।
ତୋ କଣ୍ଠି ଉତ୍ତଂସ ପଲ୍ଲବର ସୁଷମା
କେତେ ବେଳକୁ ଦେଖିବରେ ଗୋପସ୍ତ୍ରୀ ଚନ୍ଦମା । ୧୯ ।
ଷ୍ଟଳ୍ପ ବନପଥେ ବଂଶୀ ସ୍ୱନ ଶୁଭିଲା
ସେ ସ୍ୱର ବଶ୍ରିଲା ନୟନେ ଲୁହ ପୂରଗଲା । ୨୦ ।
ଗର୍ଣ୍ଣିକର ବରେ ନବ ପ୍ରସୂତି ଧେନୁ
ପଗ୍ରସ୍ତେ ଚଳଲେ ଜନନୀ କ୍ଷୀର ଶ୍ରବୁ ସ୍ତନୁ । ୨୧ ।
ବଂଶୀଧ୍ୱନୀ ଲକ୍ଷ୍ୟ ବନ ସ୍ରଜ ସଙ୍ଗରେ
ଚଳିଲେ ରାଣୀ ଗୋପାଳ ସ୍ମୃତି ମଣ୍ଡଳରେ । ୨୨ ।
ଗୋକୁଳ କୁଳଜା ରାଜପଥେ ମିଳିଲେ
ଆଲିଙ୍ଗିଲେ କୃଷ ପାନୁଜା ଅଙ୍କାଳ ମଣ୍ଡିଲେ । ୨୩ ।
ନେହ ମିଳନ ଶ୍ରୀରାଧା ଗୋବନ୍ଦଙ୍କର
ନଥିବ ତିନ ଭୁବନରେ ଆହା ଚମତ୍କାର । ୨୪ ।
ଲକ୍ଷଣ କୁଣକ ପିୟୂଷର ସେଚନ
ଜାଳବେଳ ଜନ ହୋଇଲେ ପରମ ପ୍ରସନ୍ନ । ୨୫ ।
ଜନନୀ ପାଣି ପ୍ରସାରୁ ଆସି ମୋହନ
କୁଢ଼ାରୁ କୋଳ କର ଶିରେ ବହିଲେ ଚୁମ୍ବନ । ୨୬ ।
ସ୍ନେହେ ମିଳି ବଢ଼ାଇଲେ ସ୍ନାନ ଅଶନ
ହର୍ଷେ ଗୋପାଳକୃଷ୍ଣ କଲେ ସ୍ଵପୁର ସେବନ । ୨୭ ।

—✱—

## ରାଗ ଖମାଚ—ଆଦିତାଳ

( ଭଜମନ ହରପ୍ରାଣ ପ୍ରେୟସୀ ଶ୍ରୀମନ୍ତଙ୍କି—ବୃତ୍ତେ )

ଭାବ ଭାବ ଦିନ ଗଣି କାଳ କଟିଗଲା
କେବଳ ଦେହକୁ ଶ୍ରୀ ପଦାବ୍ଜ ପ୍ରାନ୍ତ ନ ଦଶିଲା ୦ ।

ଗୋକୁଳାଚଳ ଚନ୍ଦ୍ରମା ଅଙ୍କେ କରିବା ସୁଷମା
ଆଲୋକନ ସଂକଳ୍ପ ଆଜକୁ ନ ପୂରିଲା । ୧ ।

ପ୍ରିୟ ସଙ୍ଗେ ପରିହାସ ଆହା ସେ ବାଣୀ ପୀୟୂଷ
କଣ ହେଲେ ଶ୍ରବଣରେ ଅବର ନ ପଡ଼ିଲା । ୨ ।

ଶ୍ରୀ ବ୍ରଜେନ୍ଦ୍ର ପ୍ରାଣପ୍ରିୟା ପାନ ଦର୍ପଣ ହେଲା
ଦେଖିବା ଆଶା ସନ୍ତତରେ ସ୍ୱାମିନୀ ବଢ଼ିଲା । ୩ ।

ଶ୍ରୀ ଲଳିତା ଦକ୍ଷିଣରେ ରୂପ ମଞ୍ଜରୀ ସମ୍ମୁଖରେ
ଥିବ ମୋତେ ଶ୍ରୀମୁଖର ସେବା ତ ନ ମିଳିଲା । ୪ ।

ବଂଶୀ ଦଶନରେ ତୃଣ ହୋଇଥିଲ ଯେ ଶରଣ
ଦେବାକୁ ଜଙ୍ଘସ୍ଥ ଗୋପାଳ କୃଷ୍ଣ ଜଣିଲା । ୫ ।

---*---

## ସ୍ୱାଭୀଷ୍ଟ ଲାଳସା—ରାଗ ରାମକେରୀ

( କଳାକଳେବର କହ୍ନାଇ ବୃତ୍ତେ )

ଶ୍ରୀ ଗୁରୁଦତ୍ତ ତନୁ ଏବେ ହୋଇ ଯାଆନ୍ତା ମୋର
ଯାଇ ପୁଣି ଉଦ୍ଧବ ହୁଅନ୍ତି ପାଶେ ଶ୍ରୀ ସରସୀର । ୧ ।

ସାଷ୍ଟାଙ୍ଗ ପ୍ରଣାମ କରନ୍ତୁ ମୁଁ ହୃଷ୍ଟ ହୋଇ ସଘନ
ପୁଲକ ହୋଇ ବହନ୍ତା ଯେ ନେତ୍ରାନନ୍ଦାଶ୍ରୁଧାର । ୨ ।

ସଉଦ୍ଧ ଗରଣ୍ୟ ବଲ୍ଲକ ପ୍ରତି ବୃକ୍ଷ ବଲ୍ଲୀଙ୍କି
ଓଲଟି ଆଶ୍ଳେଷ କରନ୍ତ ସାଦରେ ନାମଧାଙ୍କ । ୩ ।

ହା ବୃନ୍ଦାବନ ଧରଣୀରେ ସୂକ୍ଷ୍ମ ସିକତା ଉପେ
ଯୁଗଳାଙ୍ଘ୍ରିଂ ଚିହ୍ନ ଦେଖନ୍ତ ନେତ୍ର ପଥମରେ । ୪ ।

ମାଧବୀ ବଲ୍ଲୀ ବେଷ୍ଟିତ ଶ୍ରୀ କେଶର କୁଞ୍ଜରେ
ନାନା ରତ୍ନମଣି ଜଡ଼ିତ ସ୍ୱର୍ଣ୍ଣ ମଣ୍ଡପ ପରେ । ୫ ।
ଆଳୀ ମଞ୍ଜରୀ ହୋଇଣ ପରିବାର ବେଷ୍ଟିତ
ଦିବ୍ୟାସନରେ ଗୋ ସ୍ୱାମିନି ପ୍ରାଣନାଥ ସହିତ । ୬ ।
ବିଲୋକ ପରମ ଅଦ୍ଭୁତ ପରାନନ୍ଦ ସ୍ୱରୂପ
ପଡ଼ ରହନ୍ତୁ ପଦାବ୍ଜ ତଳେ ଲଭି ସୁଖ ଅମାପ । ୭ ।
ସମସ୍ତଙ୍କ ଦୃଷ୍ଟି ପଡ଼ନ ତୁଅନ୍ତା ଏକାଥରେ
ଆସ ବୋଲି ଆଜ୍ଞା ଦିଅନ୍ତେ ସ୍ୱାମିନୀ ଶ୍ରୀମୁଖରେ । ୮ ।
ଶିରେ ଠାରି ରୂପ ମଞ୍ଜରୀ ଡାକନ୍ତେ ଯେ ପାଶକୁ
ଯାଇ ଶ୍ରୀରୂପମୁରେ ରହନ୍ତି ସ୍ୱୀକାରି ଲଳିତାଙ୍କୁ । ୯ ।
ଶ୍ରୀ କିଶୋରୀ ମଣି ପକାଇ ଦୟା ଦୃଷ୍ଟି ମୋ ପରେ
ଅର୍ପଣ ଦିଅନ୍ତେ ରୂପପୂର୍ବ ମଞ୍ଜରୀ ମୋ ହାତରେ । ୧୦ ।
ହସି ଶ୍ରୀ ବ୍ରଜେନ୍ଦ୍ର ଭାଷନ୍ତେ ପୂର୍ବପରି ଏ ମୁହିଁ
କାହାକୁ ଚାହିଁଲେ ଦେବୁକ ତୋ ସ୍ୱାମିନଙ୍କି କହ । ୧୧ ।
ଧଣ୍ଟୁ ନଥିଲୁ ଉପହାର ଧରି ନ ଆସୁ ଆଜ
ସବୁ ଦିନେ ପଦସେବାକୁ ଆଗ ହୋଇ ଯେ ଥାଉ । ୧୨ ।
ଶୁଣି ମୋ ନୟନୁ ବହିବ ଲୁହ ନକହି କଥା
ଶ୍ରୀପଦାବ୍ଜକୁ ମୁଁ ଅନାଇ ରହିଁ ପୋତିବି ମଥା । ୧୩ ।
ହା ପ୍ରାଣେଶ୍ୱରୀ ପ୍ରାଣନାଥ ଆଘ୍ରାଣ ସ୍ପର୍ଶ କର
ଆସିବ ମଥାରେ ମୋହର ଯାନ୍ତୁ ଲାଗେ କୁଠାରୁ । ୧୪ ।
ଦୟାକୁ କିଶୋରୀମଣି ଯେ ବୋଧକରନ୍ତେ ମୋତେ
ଚରଣେ ଶ୍ରୀକର ସ୍ମରଣୀ ଗୋବିନ୍ଦ ପ୍ରାର୍ଥେ । ୧୫ ।



## ରାଗ ଆନନ୍ଦ ଭୈରବୀ—ଆଦିତାଳ

ହୋଲ ଯନ୍ତ୍ର କୁଳକୁ ଚେକ ଜାଳାଞ୍ଜଳି ।
କାଳଶ୍ୟାମ ପ୍ରୀତିକି ଗରବ ସଂଜ୍ଞାନ । ପଦ ।
କହୁଥିଲି ମୁଁ ସେତେକ ବାର ବୃନ୍ଦାବଳୀ

ଦେଖିଲ ତା ପାଦ ପଦତଳେ ନଖାଙ୍ଗୁଳ । ୧ ।
କୋଟି ଜନ୍ମାନ୍ତର ପୁଣ୍ୟଫଳ ଗଲା ମିଳ
ମୁଁ ଯୋଗିଣୀ ଜାଣ ଅଳୀ ସେ ମୋହର ଆଳୀ । ୨ ।
ମୋ ହୃଦର ନବ ମୃଗମଦ ପତ୍ରାବଳୀ
ମତ୍ତ ମଧୁକର ସେ ମୁଁ କାନନ ନଅଳୀ । ୩ ।
ସୁଗୁଣ ସୁନ୍ଦର ପଣ ଯାଦ ଭଳ ଭଳ
ନାମ ଜପୁଥିବ ଏକୋଟେଶ ଜପାମାଳ । ୪ ।
ଅଖିଳ ସୌନ୍ଦର୍ଯ୍ୟବନ୍ତ ମଣ୍ଡଳର ମାଳ
ଭଜନ୍ତୁଅ ବୋଲନ୍ତୁ ଶ୍ରୀ ଲଳିତା ଏ ପାଳ । ୫ ।
ସୁଭୂଷ୍ଟି କାନନୁ ବାହୁଡା ବଂଶୀ ଡାକଇ
କୋଲେ ଗୋପାଳ କୃଷ୍ଣ ଭ୍ରମର ତାଳ ତାଳା ୬ ।

—*—

## ରାଗ ଆନନ୍ଦ ଭୈରବୀ—ମିଶ୍ର ରୂପତାଳ

( ମୋହନଙ୍କୁ ଦେଖି—ବୃନ୍ଦେ )

ମୂର୍ଚ୍ଛିବା ପଦାର୍ଥ କି ସେ ଗୋଷ୍ଠଚନ୍ଦ୍ରମା ସଖିରେ ।
ଅଗେ ଦେଖ ମୂର୍ତ୍ତି ଅକ ନିକୁଞ୍ଜ ଶେଜରେ ।
ନବାଙ୍ଗ ନିଦ୍ରା ଭୂଷିଲ ତନୁ ସୁଷମା । ୧ ।
ପୁରନ୍ଦରମଣି ଦର୍ପଣରୁ ଚିକ୍କଣ
ଭୂଷଣର ଭୂଷା ମୋ ନେତ୍ର ପ୍ରତିମା । ୨ ।
ମୃଗମଦ ନୀଳୋତ୍ପଳ ଚର ଚଉମଳ
ସରସ ଚିତ୍ରିତ ସୁମନ ସୁଗନ୍ଧିମା । ୩ ।
କାନନ ବାହୁଡା ବେଶ ରସାଳସ୍ୟ ଶେଷ
ମଦନ ମୁଖ ପ୍ରାନ୍ତର ସୁମଧୁରିମା । ୪ ।
ଗୋପାଳକୃଷ୍ଣ କହଇ ସ୍ୱାମିନୀ ଏଣିକ
ନ ଦେଖିଲେ ସିନା ହୃଦୟର ଗରିମା । ୫ ।

—*—

## ରାଗ—ଶଙ୍କରା ଭରଣ (ରୂପକ ତାଳ)

(ପୋଉଷ୍ପ ପର ଅନୁରାଗ—ବୁଝେ)

ଜଗବନ୍ଧୁ ଦୟାଳୁ । ଆଉ ମନ କାହିଁ ପାଇଁ ଭାବୁଛରେ ।
ରହ ଉଦ୍ଧରିବେ ଏ ସଂସାରୁରେ । ପଦ

ସିନ୍ଧୁ ପାଧି କୃପାକର    ମହିମାବ୍ଧି
ନୀଳାଚଳ ସୁଧାକର
ନିଖିଳ ପ୍ରାଣିହିତକାରୀ    ତୋ ଛୁର ବଦନ
କ ତାଙ୍କୁ ଭୋର । ୧

ପତିବାଦ ନେଏଣ    ସ୍ୱରୂପେ ଅଛନ୍ତି
କରୁଣା ନୃପ ପ୍ରତାପେ
ସୁବର୍ଣ୍ଣଙ୍କ କାମ    ପୂରଖାନ୍ତି ସମ
ଅଧୀନ୍ତୁ ଭକ୍ତ ଜନେ । ୨

ଦାମୋଦର ଚଲେ    ନମାଗୁ ଯା ଦେଖିଲ
ଖଣ୍ଡିତ ଥିବ ପୁରାଣେ
ବୃଥା ହୋଇବକ    ଜଣାଇ ବାରନ୍ତୁ
ପ୍ରଣାମ କର ଚରଣେ । ୩

କୃପାନ୍ତୁ ପଣକେ    କଳକ ପିଅଇ
ଦେଉଥିଲ ଭବ ବନ୍ଧ
ଦୋଷ ଘେନ କପ    ଦଣ୍ଡିବେ ଜନନୀ
ରଣରେ ଦେଲେ ଶତ କ । ୪

ନୃପମୂନ ଗୋପୀ    ପଶୁ ପିତୃଙ୍କର
ଶତ୍ରୁଷପ୍ତ ଆତ୍ମ ମୋକ୍ଷ ।
କରନ୍ତି ଯା ନାମ    ମାନବେ ଦେବ ପ୍ରଭୁ
ହୋଇ ଅନନ୍ତ ପ୍ରକାଶ । ୫

କାରଣ କର    ପରକାଶ ଘୋଷଣ ବ୍ରହ୍ମାଣ୍ଡ
ଭକ୍ତି ପଟାଇ
କାହାକୁ ପାଇଛି    ନ କର ସ୍ମରଣ
ଦୁଃଖି ହେଉ କାହିଁ ପାଇଁ । ୬

କୁବ୍ଜ୍ୟ ମଣ୍ଡଳରେ ଡାକବାର ବେଶ
ବାଧା ଦେଲେ ଦ୍ରୌପଦୀଙ୍କି
ଆଜ ରାଧା ସୁଖି ବୋଲ ମୁଁ କହୁଣି
କହୁ ଅଛନ୍ତି ସେ ଡାକ । ୭

ଭକ୍ତ ବନ୍ଧୁ ପଣ ଭାରତ ଯୁଦ୍ଧରେ
ଖୁଣ୍ଟାରେ ଦେଖାଇଲେ
ନିୟମ ଲଂଘି ରଥରୁ ଡେଇଁ
ରଥ ଚରଣ ଧରି ଧାଇଁଲେ । ୮

ଶରଣ ପଶି ବିଭୀଷଣ ଆସିଛି
ବୋଲି କହୁ ଶ୍ରୀରାମୁରେ
ଦେଲେନି ଡେରେ ଦେଲେକ୍ଷୁ ତାକୁ ଲଂକା
ପଦଶ୍ରୀ ଭକ୍ତ ଲୀଳାରେ । ୯

ବଧି ଦଶମୁଖ ବୋଲି ହନୁମାନ
କଲନ୍ତି ଅନୁମୋଦନ
କୃଷ୍ଣ କରବେ ଭକ୍ତିଭକ୍ତ ପ୍ରଭୁତେ
ଏପରି ଜାଣିବ ମନ । ୧୦

ଧ୍ରୁବ ମନୋରଥ ପୂର୍ଣ୍ଣ କରିବାର
ପ୍ରତ୍ୟକ୍ଷରେ ତ ଦେଖୁଛୁ
ଚରଣ ପରଶ ସଂଗରେ ପଥର
ପଥର ନାରୀ ହୋଇଛି । ୧୧

ପ୍ରହର ଅର୍ଦ୍ଧକେ ଧୂଳି ଦଳେ ଭକ୍ତ
ବଇଶ ରାକ୍ଷସ ମେଳୁ
ସେ ପ୍ରହଲ୍ଲାଦଙ୍କ ବିପଦ ଠାରୁ ନ
ନ ଭୁଲିଲ ତୋ ଶେଷକୁଳୁ । ୧୨

ଭଜନ କୀର୍ତ୍ତନ ଆତ୍ମ ସମର୍ପଣ
ଦାସ୍ୟ ସଖ୍ୟାଦିବାଦନ
ସ୍ମରଣ ପୂଜା ଶ୍ରବଣ ନବରତ୍ନ
କୃଷ୍ଣ କରନ୍ତିଛନ୍ତି ଦାନ । ୧୩

ରମା ଶୁକବନ୍ଦି ଦନ୍ ମାନାର୍ଚ୍ଚିତ
ଅସୁର ଦୈତ୍ୟ ଦନୁଜ
ସୁଧୀ ପରଶିତ ହୋଇ ଅଲଙ୍କୃତ
ଲଭିଛନ୍ତି ପଦକଂଜ
ବୋଲିବୁ ମୁଁ ହୀନ ଭଜନ ସାଧନ
ନ ଜାଣଇ ଜନମରୁ
ଆଜାମିଳ ଜାମଳାର୍ଜ୍ଜୁନ କି
ତପ କରିଥିଲେ କି ପୂର୍ବରୁ ? ୧୫
ଯା ଗୁଣାର୍ଣ୍ଣବରୁ କି ଦୁଏ ବର୍ଣ୍ଣିଲେ
ଶେଷରେ ନ ହେବ ଶେଷ
କି କହିବ ତାହା ଗୋପାଳକୃଷ୍ଣର
ନ ହୁଁଇ କାଷ୍ଠ ସଦୃଶ । ୧୬



## ରାଗ କେଦାର—ତାଳ ଝିପଟା

କି ପାଶୋରି ହେଲି କାର୍ତ୍ତିକରେ ରହିଲି
ଶ୍ରୀକିଶୋରୀ କୁଂଜ ବିହାରିଙ୍କି
ପରମ ଧାମରେ ସମନ ଥିଲା ଯେ
ହେମ ମରକତ ମାଧୁରୀକି । ପଦ
ରମା ସମାନ ସୁଷମା ବ୍ରଜ ରାମା—
ଉତ୍ତ ମାଙ୍କ ମାଳା ଭୂଷ ଶ୍ରାନ୍ ଜେମା
ରୋଷ୍ଟ ଚନ୍ଦ୍ରମା ବାମା ନେତ୍ର ଚିତ୍ରମା
କାମାନ୍ଧ ଶ୍ୟାମ ବଂଶୀ ଧାରିଙ୍କି । ୧
ଦାସୀ ଭୂତ୍ତ ଶିର ମାଳ ଉପୁରାଣ
ତେଣେ ପ୍ରଚଳାକ ଚୂଳ ବିଭୂଷଣ
ତରଳ ତାର ଈକ୍ଷଣ ବିଶୋଧଣ
ହା ହା ରୋମାଞ୍ଚ ତନୁ ଶିରକ । ୨

ହା ରାସ ରସ ତାଣ୍ଡବ ସୁପଣ୍ଡିତା
ହା ସାନ୍ଦ୍ରକାକଳି ରତନ ମଣ୍ଡିତା
ହା ମାର୍ତ୍ତଣ୍ଡ ଜାଜ୍ୱର—ରଶ୍ମି ଖଣ୍ଡିତ
ଉରୁ ନେହାଞ୍ଚଳ ଉତ୍ତୁଙ୍ଗ କ । ୩

ଅଧୋନ୍ନତ କୁଚ—ପୂର୍ଣ୍ଣ ଚନ୍ଦ୍ରାନନ
ଲଜ ହର୍ଷ ହାସ ସୁନର୍ମ ବଚନ
ପରସ୍ପରେ ପ୍ରେମ ସୁଧାବ୍ଧି ମଜ୍ଜନ
ଜବାଧର ଯୁବା ଜନ୍ମାରଙ୍କି । ୪

ଦେଖି ଦୂରରୁ କେ ପାଉଛନ୍ତି ଯିବାର
ଥର ଥରକେ ପଦ୍ମକୁ ଘୂର୍ଣ୍ଣ ବାର
ପ୍ରିୟୁ ଲାଗି ହେଲେ ଅବଲମ୍ବିବାର
ହସିଲା ହୋଇ ସହଚରୀଙ୍କି । ୫

କୁସୁମ ସେଜରେ ବ୍ରଜ ଯୁବରାଜ
କୁଂଜ ଦ୍ୱାରକୁ ରାଧାଙ୍କୁ କରସଜ
ଉଦ୍ଧା କରିବାର ଆହା ଆଳୀବ୍ରଜ
ନ ଦେଖ ଅଙ୍କଂକ ସେ ପାରକ । ୬

ଗୋପାଳ କୃଷ୍ଣ ମାନ ସେ ନିରନ୍ତର
ଚିନ୍ତ ବ୍ୟାକୁଳେ କପାଳେ ମାରକର
ହା କ ଦୂର ଦୃଷ୍ଟ ହେଲ ଏତେ ଦୂର
ବୋଲ ନେତ୍ରୁ ଢେଳଇ ବାରକ । ୭



## ରାଗ ଝଙ୍କୋଟୀ । ଏକତାଳ

ବାଜନ ବାଜନ ରେ । ଗୁଣ ମଞ୍ଜନା ହେଲେନ ମା
ଳୋଟୁଛନ୍ତି କଳନଦଜ । ଶର ଫୁଲକମ୍ପା ଅବମାରେ । ପଦ
ସ୍ମରି ସୁମରି ହସି । ଜାଣତୋ ସୁଷମା ଶ୍ରୀ କଶୋଷ
ଗାଉଥିଲେ ଗୀତ କଣ । ଧଣ ସାଣା ପ୍ରାଣ ସଂଗିମାରେ । ୧
ପ୍ରସାରି କର ସାସ୍ତକ । ବସାଇ ଧୀରେ ତୋ ସ୍ୱାମିଙ୍କ
ଡାକ ଆସିବେ ଏଣିକ । ବୋଲୁ ନେଇ ଥନ ଥନ ମାରେ । ୨
ଆସୁଥିବୁ ପଗ୍ର ବୋଲ । ଘଡ଼ ଘଡ଼ିକ ନବ ଛଇଲ
ତୋଳ ସଘନେ ଭ୍ରୁ ବଲ୍ଲୀ । ଗୁହୁଁଥିଲେ ଚନ୍ଦ୍ର ବଦନରେ । ୩
ଶ୍ୟାମ କଶବାର ଦୋଷ । ସନ୍ଧ୍ୟ ମୋହର ହେଲଗୋ ଆସ
ଦୁଅ କ ନଦୁଅ କେଶ । ବ୍ରଜ ଯୋଷ୍ୟ ଶିର ମଣ୍ଡମାରେ । ୪
ନଖରୁ ଶିଖ ପର୍ଯ୍ୟନ୍ତେ । ଆଳୀ ସାଜିଲେ ବେଶ ଭରତେ
ଗୋପାଳକୃଷ୍ଣ ପୁରତେ । ଦେନଗଲ୍ପ ଲାଗବର୍ତ୍ତିମାରେ । ୫

## ରାଗ ସେହାନା ଏକତାଳ

ମୋ ମନରୁ ଯାଉ ନାହିଁ ରେ ସଙ୍ଗାତ !
ବ୍ରଜେନ୍ଦୁ ବୋଲକେ ଜାଣଇ ତମାଳ
ଭ୍ରମରେ ଦେଲି ଅନାଇଲେ ରେ । ୧
କରହ ମୁକୁଟ ଖଞ୍ଜଣି ଗୁଞ୍ଜୁଷ
ଶବେକ ଫେଲ୍ଲ ହଜାଇ ରେ । ୨
ରତ୍ନ ରତ୍ନ ଡୋଳା ଡାଳି ଦେଇ ଶ୍ରୁତି
ଚଟେ ଦେବାର ଥଜାଇ ରେ । ୩
ଗେଣ୍ଡେନ୍ଦ୍ର—ପୂଚ୍ୟ ପୁଞ୍ଜ ଅନୁଭବକୁ
ଅଛନ୍ତି କାହାର ପାଇଁ ରେ ।୪
ପୁଷ୍ପବାଟୀ ଶିଳା ଦେହରଣ କଥା
ଗୋପାଳ କୃଷ୍ଣ କହଇ ରେ । ୫

—*—

## ରୂପ କଲ୍ୟାଣ—ରୂପକ ତାଳ

( ରାତ୍ରି ପାହିଗଲା ହେ ଝାଡ—ବୃତ୍ତରେ )

ଏତେ ଭାଗ୍ୟ ମୋର ହେବକି ?
ହେଉ ବୃନ୍ଦାବନେ ଶ୍ୱରୀ ସେବକୀ
ଶ୍ରୀ ଗୁରୁଦତ୍ତ ବୀଜମନ୍ତ୍ର କଳପ
କଳପ ବଲ୍ଲୀରେ ପ୍ରେମ ଫଳ ଫଳିବ କି ? । ପଦ ।
ଶ୍ରୀ ସ୍ୱାମିନୀଙ୍କର ଯାବତ
ଅଷ୍ଟକାଳ ସେବା ସତତ
ଶ୍ରୀରୂପ ମଞ୍ଜରୀ ଆଜ୍ଞା ଶିରେ ଧରି
କରିବ ମନୋରଥ ପୂରିବ କି ?
ବ୍ରଜରାଜ କୁଳ ଚନ୍ଦ୍ରମା ଦୋଷ କରିବା ପାଇଁ କ୍ଷମା
ଲଳିତାଙ୍କ ପଦାବ୍ଜେ ଖଣ୍ଡ ଜଣାଇବା ଶୁଭଦଶା ସମ୍ଭବିବ କି ?
ଗୋଷ୍ଠେଶ୍ୱରୀ କୋଳରେ ମରି ବଧୂ ସୁଖେ ଲାଳନା କରି
ସ୍ନେହେ ଅଶ୍ରୁ ପୋଛୁ ସ୍ନେହଶ୍ୱରୀଙ୍କ ଲଜ୍ଜା ନମ୍ରମୁଖ ବସ୍ତ୍ର ଦେଖାଇବ କି ?
ରାସର ସାମୃତାବ୍‌ଧି ବଧୂ ଅଙ୍କରେ ଜଟିଳାଙ୍କ ବଧୂ
ସଜେ କରିବାର ଦେଖି ମୋ ଆଖିର ସୁଖ ଅକୂପାର ଉଚ୍ଛୁଳିବ କି ?
ହୃଦେ ଧରି ସେ ଦୁଇ ରୂପ ଶ୍ରୀ ମଞ୍ଜରୀ ସଖୀ କଳାପ
ବୋଲେ ଗୋପାଳକୃଷ୍ଣ ମୁଖେ ଶ୍ରୀରାଧାକୃଷ୍ଣ ବୋଲି ଗାବ ବରଜିବ କି

## ରାଗ ଧନାଶ୍ରୀ ମିଶ୍ରରୂପ ତାଳ

( ମୋହନ ରାତ୍ରି ଶଯ୍ୟା ପଡ଼ିଲା—ବୃତ୍ତେ )

କେ କି କହି କି ବଗଡ଼ାଇଲା ରେ
ମୋହନକୁଂ ମଧ୍ୟରେ ଖଡ଼ାଇଲାରେ । ପଦ ।
ପ୍ରଥମ କରି ଆଜ ବ୍ରଜରାଜ ତନୁଜ
ନେବରୁ ଘର ନଗିଡ଼ାଇଲା ରେ । ୧
ଚୋଲଗି ରବିକନ୍ୟା— ତୀର କୁସୁମ ବନ୍ୟା
ନିକୁଞ୍ଜ ଯାକ କେତେ ଲେଡ଼ାଇଲାରେ । ୨

ରୁହୁଁ ଚମ୍ପକ କଳୀ　　ସଜନୀ ଭୁଲି ବୋଲି
ଶ୍ୟାମ ଶ୍ରୀଭୁଜରେ ତ ଭିଡ଼ାଇଲା ରେ । ୩
ପଡ଼ିଲା କେତେ ଦଣ୍ଡ　　ନବ ଶିଖି ଶିଖଣ୍ଡ
ମୁକୁଟ ମଥାରୁ ଛଡ଼ାଇଲାରେ । ୪
ଅଇଲ ସେ ସମୟୁ　　ହେଜ ମୁଁ କଣ
ପାଇଁ ସୁବଳଂକୁ ଦଉଡ଼ାଇଲାରେ । ୫
ଗୋପାଳକୃଷ୍ଣ ଭଣି　　ଶ୍ରୀମତିଙ୍କି ସେକ୍ଷଣି
ଭେଟାଇ ଶ୍ୟାମ ଦୁଃଖ ଛଡ଼ାଇଲା ରେ । ୬

—*—

## ରାଗ ପରଜ—ମିଶ୍ର ଝମ୍ପ ତାଳ

( ସନ୍ତ ସିକନ ଲୋଡ଼ ଲୋଡ଼ ସେ ମୋତେ—ବୃତ୍ତେ )

ରହି ଯାଇଛି ତୃଷା ତୃଷିତା ନିରତ ସନ୍ଧ ପ୍ରୀତିରେ । ସଦ
ଭୁ ବ୍ରଜବଧୂ ଯେମନ୍ତ　　ରୂପବଶ ରୂପବନ୍ତ
ବୁଡ଼ନ୍ତି ପ୍ରେମ ସୁଧା ସିଂଧୁରେ ।
କ୍ଷଣେ ହୋଇବକ ରହି　　ପଡ଼ିଲେ ମୂର୍ଚ୍ଛା ମୂର୍ଚ୍ଛି
ବଳେ ସିଣ୍ଡିସିବ ସ୍ମୃତିରେ । ୧
ଭୃଙ୍ଗାପ୍ସୁ ଜନ ନଥିଲ　　କାଳରେ ଜାଣୁ ଛିଲ
ଯାହା ଅନୁଭବ ସୁପାତରେ,
ସ୍ପୃଷ୍ଟ ହୋଇଗଲେ ମନେ　　ଗାପୁନେ ଅବାସ୍ତପନେ
ଲୋଟୁ ଦିନ ସରିବ କି କ୍ଷତିରେ । ୨
କଥା କେତେବେଳେ ଯାଇ　　ନ କହିବ ନ ଅନାଇଁ
ଏକା ଏକ ହୋଇଲେ ଲାଗରେ,
କେତେଟି ଗାଢ଼ାଳିଂଗନ　　କେତେଟି ସରୁ ଚୁମ୍ବନ
ସରିସିବ ହରଷ ସ୍ପୃଷ୍ଟିରେ । ୩
ଗଭା ଗନ୍ଧ ବନ ବାଟେ　　ଜଗା ଜଗି ଜଳ ଘାଟେ
ହେଲେ ଲୁଚି ନ ଦେଖିଲେ ପ୍ରାଣେ,

ଅସଜା ହେଉଥିବତ     ଗୋପାଳ କୃଷ୍ଣ ଭଣିତ
ଯାଉ ହୋଇ ଶଂକର ଅନ୍ତରେ । ୪



## ରାଗ ନାଟ   କୁରଙ୍ଗୀ ରୂପକ ତାଳ

ସନ୍ଧ୍ୱ ଏହିଟି ପଶୁପୀ ଲମ୍ପଟିଆ
ବରହ୍ଣ ବରହ ମୁକୁଟିଆ । ୦ ।
ନୂତନ ବାରିବାହ     ପରିହଶୁଅଛି ଦେହ
ଅନା କଳନ୍ଦ ସୂତା ତନୟ । ୧ ।
ବ୍ରଜଶିଶୁଙ୍କ ସଙ୍ଗେ     ବଂଶିବଜାଇ ରଙ୍ଗେ
ନାଚ ଆସୁଛି ପୀତ ଧଟିଆ । ୨
ନାସିକା ମୋତିବର     ଝଶୁଛି କି ସୁନ୍ଦର
ରତ୍ନ ମେଖଳା କ୍ଷୁଦ୍ର ଘଣ୍ଟିଆ । ୩ ।
ଗୋରଚନା ତିଳକ     ଦକାଉଛି ବିବେକ
ସୁରୁଚିର ଚନ୍ଦନ ପାଟିଆ । ୪ ।
ଅନା ଗୋ କି ମାଧୁର୍ଯ୍ୟ     ଶ୍ରୀ ମୁଖେ ଶ୍ରମବାରି
କୁଟିଳ ଅଳକ ଲଲାଟିଆ । ୫ ।
ଆହା କୁଣ୍ଡଳ ପ୍ରଭା     ଗଣ୍ଡସ୍ଥଳରେ ଶୋଭା
ପତିବ୍ରତା ଚିତ୍ତ ଉଚ୍ଚାଟିଆ । ୬ ।
ଗଇରିକ ରଞ୍ଜିତ     ବନ୍ୟସ୍ରଜ ଆବୃତ
ହୃଦ ନୀଳମଣି କବାଟିଆ । ୭ ।
ପିନ୍ଧିଛି ସେ ବେଶନ୍ତେ     ଫୁଲ ଜାନୁ ପର୍ଯ୍ୟନ୍ତେ
ଲମ୍ବାଇ ଦେଇ କୁଞ୍ଜ କୁଟିଆ । ୮ ।
ହୋଇବାର ସୀଭଙ୍ଗ     ଛନ୍ଦ ଚରଣ ଯୁଗ
ଅନା ଅତୁଳ ତୁଳା କୁଟିଆ ।୯ ।
ଭ୍ରୂଭଙ୍ଗି ପରସରକୁ     ଡାଳ ଡାଳ ଡୋଳାକୁ
ବୃହୁଁଛି କେତେ ନଟ କୁଟିଆ । ୧୦ ।

ନୂଆ ମଦନ ମୂର୍ତ୍ତି ନାଗର ଚକ୍ରବର୍ତ୍ତୀ
ଲଳନା ମନ ଧନ ଲୁଟିଆ । ୧୧ ।
କେ ବଧି ଗଲ ବକ ମଥୁରା ପଥେ ଲୁକ
ଦାନ ଘେନିବା ନଟ ଘଟିଆ । ୧୨ ।
ପଡପଡଣେ କଂଶୋଗ୍ରା ତୋତେ ଦୁଃଅନ୍ତା ସତ
ନ କଲୁ ବଦ୍ଧ ଅସଲ ଝିଆ । ୧୩ ।
ଲେଖାଇ ସଖୀ ହାତେ ରଖିଛୁ ଯା ଗୁପତେ
ସଜନ ତେ ସେ ଶଠ ପଟିଆ । ୧୪ ।
ନବ ନୀପମଞ୍ଜରୀ କର୍ଣ୍ଣେ ଉତ୍ତଂସ କର
ହେଉଛୁ ଧେନୁ ପଛ ପଟିଆ । ୧୫ ।
ଗୋପାଳକୃଷ୍ଣ ଭଣେ ରାଧା ବୋଲନ୍ତ କ୍ଷଣେ
ବସିଲେ ଦେଖନ୍ତ ଏକୁଟିଆ । ୧୬ ।

—*—

## ବନମାଳ ଗୀତ

( ଏଗୀତଟିର ତାତ୍ପର୍ଯ୍ୟ ଏହି ଯେ ଶ୍ରୀକୃଷ୍ଣଙ୍କ ବଦନ ପରେ ଶ୍ରୀରାଧା ହର୍ଷୋତ୍ ଫୁଲ୍ଲିତ ହୋଇ ନିଜ ମନୋଭାବକୁ କଂଠରୁ ପ୍ରକାଶ କରୁଛନ୍ତି )

### ରାଗ—ଭୂପଟିଆରି

ପଥ ଛାଡ଼ ଦେ ମୁଁ ଯିବ ଫୁଲ ତୋଳ ଯେ । ବନମାଳୀ ।
ସ୍ନାନ କରିଛୁ ପୂଜିବ କର ମାଳ ଯେ । ପଦ
ବୃନ୍ଦାବନେ ପୁଷ୍ପ ତୋଳୁ ରଂଗେ ।
ଗୋଷ୍ଠ ସୁଧାକର ରାଧା ଆଗେ ।
ମିଳନ୍ତେ ଅନାଇ ଚମକି ଭାଷନ୍ତ
ଛନ୍ଦ ହୋଇମନ ଉଦବେଗେ ଯେ । ୧
ବୁହିଂବାକୁ ଆଖି ଢାଳ ଢାଳ···
କୁହିଂଇଟି ମୁଁ ସେ ଚନ୍ଦ୍ରାବଳୀ

ବରଜ ଦାଣ୍ଡରେ ବଜାର ବସାଇ
ବଇଶି ଦ୍ୱାରରେ ନମସ୍ତ ଚାଳି ଯେ । ୨

ବନ ମଧ୍ୟେ ଏକ କଳ୍ପବୃକ···,
ଯା ଯା ବାଟେ ବାଟେ ଯିବା ଲୋକ
ସେ ତୋ ସଙ୍ଗତେ ଖେଳିଲ ହେଉଥିବ
ତା ଆଗେ ଦୁଅଇ ଭଂଗିଯାକ । ୩

ମୂରଲୀ ଛୁଆଇଁ ଦେଲ ଲଗେ···,
ପୁଲକ ପୂରିଗଲା ଶ୍ରୀ ଅଂଗେ
ଥିର ଅପସର ଆଣିନେଇ ବାଂଶୀ
ଖେଳନ୍ତୁ ଲାଗନାହିଁ ମୋ ସଂଗେ ଯେ । ୪

ବାଳକ ବୁଦ୍ଧି ତ ଶୁଦ୍ଧ ନାହିଁ···,
ଛୁଇଁ ଦେଲୁ ପର କନ୍ଧ କନ୍ଧ
ବଳ ଯାଉଛିନା ଉପଦ୍ରବ ଯାକ
ଯାଉ ବୋଲୁ ଯିବା ସନ୍ଧ ସନ୍ଧ ଯେ । ୫

ଲୁହିଁଇ ମୁଁ ତୋ ଚାପରଭଳ···
ଉଧ ଯା ଘରେ ଯେ ବୁଭୁକ୍ଷା ଆଳ
ନିକଟେ ଅଛନ୍ତି ଲଳତା ଜାଣିଲେ
ମୁଖକୁ ନଷ୍ଟହିଁ ଦେବେ ଗାଳି ଯେ । ୬

ପଟାକୁ ଡର ଖୁଭାଇ ଡାକ···
ନ ପାରିବାରୁ ମୁଁ ସଜନୀ କ
ନର୍ମଳକୁଳ ପଣ୍ଡ ବ୍ରତା ବରତ
ନାମ କରୁଛୁ ଏ ଧରମ କ ଯେ । ୭

ହୋଇବାରୁ ଲାଗ ଲାଗ ହରି···
ଲୀଳା କମଳ ଶ୍ରୀହସ୍ତେ ଧରି
ମାରି ହସିଲା ହୋଇ ଧୀରେ ବୋଲନ୍ତି
ପଳାଅ ଅଇଲା ସହଚରୀ ଯେ । ୮

ଯାଅ ଦୁଅନା ମୋ ଚାଷ ପାଷ··
ନାଶ କରି ଦେଲୁ ସୁମନଶ

ହାତକୁ ହାତ ବଜାଇ ଦେଇ ପୁଣି ବୋଲୁଛୁ
ଆହ୍ଲବ କାହାର ଦୋଷ ଯେ । ୯
ଛୁଡ଼ ଗଲା ଲଳା ଅରବିଂଦ···
ଏବ୍ରୁଷଣି ଆସି ଆଳିବୃନ୍ଦ
ପଚାରିଲେ ତାଙ୍କୁ କାହାଳ କହିବ··
ହସୁଅଛୁ ପୁଣି ମଂଦ ମଦଂ ଯେ । ୧୦
ଓଗୋାକ୍ତୁ ସରଣୀ ଗଲେ ଯେଣେ
ଚରମ ବାସ ଜଙ୍ଗାଛୁ ତେଣେ
ପଶୁରିବ କ ତୋ ଜନନୀ କ ଯାଇ
ଏରତି ଯାଜ ସେ ଗୋଷ୍ଠାଙ୍ଗଣୀ ସେ । ୧୧
ସବାଳ ମଦନ ରୂପୋଧଣି··
ନବାଞ୍ଜନ ପୁଞ୍ଜ ସରକାନ୍ତି
କୁଂଜବନ ଯାଜ ଦେବତା ବୋଲୁଛି
ଏହା ଦେଖି ସଖୀ କହୁଥାନ୍ତି ଯେ । ୧୨
ନାରୀ—ମନ—ଧନ ହରିବାର···
ଖଣ୍ଡ କୂଳ ଗୁରୁଭୁ ନାଗର
ରୂପଗୁଣ ବଂଶୀ ଆକୃଷ୍ଟ ପ୍ରକୃତି
ବଶାଇ ଦେଇଛୁ ବେଦବନ୍ଧୁ ଯେ । ୧୩
ଆହା ମୁଖରୀ ଆସନ୍ନା ହେଲେ···
ପଳାଇ ଯାଆନ୍ତି ଗ୍ରାହଗଲେ
ଆଜି ଏ କାରଜ ବଳନ ଆସିବ
ନାହିଁ ମୋ ଦେହରେ ପ୍ରାଣ ଅଟଳ ଯେ । ୧୪
ହେଉଛି କାଲଧୂଳୀ ଖେଳବାର
ଝାଳେ ଢଗେ ତନୁ ଜରର
ଚୁଣ୍ଡି କୁନ୍ତଳ ମୁଖକୁ ପଡୁଥିଲା···
ତଣ୍ଡିକ ପଛରେ ଧାଇଁବାର ଯେ । ୧୫
ହର ବିଚଳିତ ବାଲ୍ୟାବସ୍ଥା···
ଏତେ ବେଗି କାହିଁ ଏତେ କଥା।

ପର ରମଣୀଙ୍କୁ ଦେଖିଲେ ଦୂରରୁ…
ଲଇଁ ଯାଉ ଥାନ୍ତା ସିନା ମଥା ଯେ । ୧୬
ପତ୍ନୀ ଶ୍ରଦ୍ଧା ଥିଲେ ବ୍ରଜେଶ୍ୱରଙ୍କ…
ଆଗେ କହ ଦେବେ ବଖାଣି କରି
ପର ପରମଦା ପରେ ଆଶାକଲେ…
ମନୁଷ୍ୟଙ୍କ କେତେ ଶାନ୍ତ ସରି ଯେ । ୧୭
ଜନ୍ମ ଜନ୍ମାନ୍ତରେ ତପ କରି…
ପଣ୍ଡ ପାଇଥିଲେ ଏକ୍ଷ୍ମପରି
ହାତ ପଛଆଡ଼େ ଲୁହ ପୋଛୁ ପୋଛୁ
ବନ ନେବ ସିନା ମନମାରି ଯେ । ୧୮

ଜମୁନା ତଟରୁ ନାଗଣୀଙ୍କର…
ଲଟବାସ ସବୁ ଓଟ୍ଟେର ପାର
ଗୋପରେ ଆଜକୁ ବାଜୁଛି ଘୋଷଣା…
ଅଣ୍ଡି ନାହିଁ ଲାଜ ଅରକର ଯେ । ୧୯

ଏଣୁ ବନ୍ଧୁ ଏଣ୍ଡେ ଉଚ୍ଛୃଙ୍ଖଳ…
ଆଡ଼ୁରି ଅଚ୍ଛୁତ କାଳବେଳ
ଯଉବନ ଲଜ ଛୁଇଁଛନ୍ତି ନାହିଁ…
ବ୍ରଜ ହୋଇଗଲା କୋଳାହଳ ଯେ । ୨୦
ବ୍ରଜବଧୂ ଗଲେ ଦନ୍ଦ ଦଳ…
ଯମୁନାରେ ବାନ୍ଧ ତରଣୀକ
ସ୍ରୋତ ମଧ୍ୟେ ନାବ ରଖି ତାଙ୍କୁ
କଲା ଉଦାସୀ ଧରଣୀ ଧରଙ୍କ ଯେ । ୨୧
-ସଖୀମାନେ କହୁଥିଲେ ଯାହା…
ଅନୁଭବ ଆଜ କଲା ତାହା
ଶ୍ରୀ ଗୋପେଶ୍ୱରଙ୍କ ଗର୍ଭରୁ ସମ୍ଭୂତ
ହୋଇବାକୁ ଏକା ଥିଲା ଏହା ଯେ । ୨୨
ଗୋପ ଜାତିରେ କର ହୋଇ ବଂଶ…
ବଇଁଶି ବଜାଇ କେ ନଟବେଶ

ହୋଇ ନାଚଥିଲା ବହ୍ନିକ ବହ୍ନିଲ···
କରିବାକୁ ସାଧ୍ୱୀବ୍ରତ ଧ୍ୱଂସ ସେ । ୨୩
ଯାହାକୁ ସନ୍ତତେ ଡ଼ରୁଥିଲି···
ତା ଆଗେ ଏକାକୀ ପଡ଼ିଗଲି
କାହାକୁ ଡାକିବି କାନନ ମଧ୍ୟରେ
କେହ୍ନିନାହିଁ ଜାତି ହରାଇଲି ସେ । ୨୪
ଘରକୁ ଗଲେ ସେ ବଣାଖାକୁ···
ଫଗୁଣର ସିନା କାନନକୁ
ଫୁଲ ତୋଳଥିବ ବୋଲି ଡ଼ାକିଆଣି
କରାଇଲା ଇଏ ବିଡ଼ମ୍ବନକୁ ସେ । ୨୫
ଗୃହ ପତି ଜନନୀ ଜଟିଳା···
ଗରଳ ଭଳତା ବାଣୀଜ୍ୱାଳା
ଏପରି ଥିଲାର ଡ଼ାକିଲେ କାଟିବ···
କଟାଳ କୁଠାରେ ମୋର ଗଳା ସେ । ୨୬
ଗଉରୀ ତୀର୍ଥକୁ ଚନ୍ଦ୍ରାବଳୀ···
ଗଲା ପୂଜି ସାରିବନ କାଳୀ
ମନ କାମନା ପୂରାଇବ ସେସିନା
ଯାର ଲୋଡ଼ା ଥିଲେ ତାର ଆଳ ସେ । ୨୭
ପାଶେ ଥିଲା କେବଳେ ଆର୍ଯ୍ୟଗଣ···
କାହିଁ ଥାଇଟି ଏ ଧୂର୍ତ୍ତପଣ
ଦଶ ଅଂଗୁଳୀକୁ ଅନାଇଁ ରହିଲି—
ପରବଶୁ ଥାଇ ଆଚରଣ ସେ । ୨୮
ଗୋପେନ୍ଦ୍ର ନନ୍ଦନ ଅଲୌକିକ···
ସୁନ୍ଦର ପଣ ସୁଗୁଣ ଯାକ ।
ଛୁରପର ବଧୂ ପରସଂଗରଙ୍ଗ
ଆଶାରେ ନବୁଢ଼ା ଏତେ ଟେକ ସେ । ୨୯ ।
କେ ଦେଖିଲେ ପ୍ରୀତି ଥିଲାପରି···
ଏବେ ପଡ଼ିଯିବ ବ୍ରଜ ହରି

ଘାଟକ ଜାଣ୍ଡ ମୋ ଶୀଖଣ୍ଡ ମୁକୁଟ···
କୁଳକୁ ଦେବେ ମୋ କଣ୍ଠାଳ କରି ଯେ । ୩୦ ।
ନାଗର ହଟ ନକର ବୃଥା···
ଲୁଚିବ ନାହିଁଟି ଏ ସବଥା
ବଦନେ ବାସ ଦେଇ ଲୋକେ ହସିବେ
କାଳକୁ ବୋଲି ରହିବଟି କଥା ଯେ । ୩୧ ।
ଏହି କ୍ଷଣିଟି ଆଣ୍ଡିରେ ଧାଇଁ···
ସଖା ଏ ଆପଣା ନାମଦେଇ ।
ଡାକି ଡାକି ଏହିପଥେ ଗଲେ ମୁହିଁ
ଥାଉଛି ଏଠାରେ ଆସ ଯାଇଁ ଯେ । ୩୨ ।
ଗିରି ଗୋପାଳଙ୍କୁ ଗିରିଧରି···
ଉଦ୍ଧରିଛ କେଡ଼େ ଉପକାରୀ ।
ପଣେନ୍ତ ପ୍ରସାରି ମାଗୁଛି ମୁଁ ଏତେ···
ଆଉ ଦୁଇ ଥରେ ଦୟା କରି ଯେ । ୩୩ ।
ରହୁ ହାସ ପରିହାସ ଯାକ···
ନିକଟେ ଶୁଭୁଛି ଲୋକ ଡାକ ।
ସୁହାର କରୁଛି ରହି ନପାରଇ
ହୃଦ ଦେଉଛି ମୋ ଦକ ଦକ ଯେ । ୩୪ ।
ନଷ୍ଟେଁ ଆସିବ ଶପଥ ମୋର···
ଏହି ପଥରେ ନାଗର ବର ।
ଯାହା ବୋଇଲେ ମୁଁ ନସ୍ୟମ କରୁଛି
ଅବଶ୍ୟ କରିବ ଅଙ୍ଗୀକାର ଯେ । ୩୫ ।
ଫିଟିଗଲୁ ମୋ କବରୀ ଭାର···
ଝାଳେ ପୂରିଲଣି କଳେବର ।
କାହା ମୁଖ ଚୁହିଁ ଆସିଥିଲି ଆଜି
ପଡ଼ିଗଲି ଏତେ ହାରବର ଯେ । ୩୬ ।
କି ଶବ୍ଦ ହେଲେଟି ଅଳିଆଳି···
ଏତିକ ବେଳକୁ ପାଶେ ମିଳି ।

କବରୀବଳୀ ମୋ ବିବେକ ହରିଲେ
ଆହା କେଉଁ ଅନ୍ତେ ଗଲେ ଆଳି ଯେ । ୩୭ ।
ହସି ବ୍ରଜବନ୍ଧୁ ମଧୁକର···
ନକର କର ଶ୍ରୀକରଉର ।
ଖସିଲେ ହୃଦେ ଲଗାଇ କି କହିବ
ପରିଜନେ ଅବଧାନ କରଯେ । ୩୮ ।
ନକ୍ଷତ୍ର ମାଳା ହୃଦରୁ ଫେଇ···
ମୋହନ ଶ୍ରୀରାଧା କଣ୍ଠେ ଦେଇ ।
ବିନମ୍ର ହୋଇ ଖଣ୍ଡିଲେ ହେ ମିଷ୍ଟ ମିଷ୍ଟ
ବାଣୀ ସକମ୍ପ ତନୁ କମ୍ପ ଯେ । ୩୯ ।
କଳ୍ପି ଜହାଡରେ ସଖୀ ବୃନ୍ଦ
ରହି ଶୁଣୁଥିଲେ ସେ କଳହ ।
ଶ୍ରୀକୃଷ୍ଣ ଶ୍ରୀମନ୍ତ ମିଳନ ବିଲୋକି
ସୁଖରେ ପାଶୋରି ଦେଲେ ଦେହ ଯେ । ୪୦ ।
ଶ୍ରୀକୁଞ୍ଜ ସେଠୁ ନିକୁଞ୍ଜ ସେ ଯେ···
ଶ୍ରୀରାଧା ମାଧବ କଲେ ବିଜେ ।
ସୁଷ୍ଟୁ ବ୍ୟଞ୍ଜନ ଧରି ଗୋପାଳ କୃଷ୍ଣ ପଞ୍ଚ ନାୟିକା
ପଦାବ୍ଜେ ଭଜେ ଯେ-ବନମାଳୀ । ୪୧ ।

—*—



## ରାଗ ମାୟା ମାଳବ ଗୌଡ଼ା—ମିଶ୍ର ଗ୍ରୁପତାଳ

ବରଜ ଶିଖି ସଖି ଯିବଟି ଘର ରେ
ଟାପରା ନୁହଇ ଟି କଂଶାଖ ରେ । ପଦ ।
ଶ୍ୟାମଠାରୁ ଆସି     କ କହୁଛି ଦାର୍ପା
ଶୁଣି ନେବେ ରହୁ ନାହିଁ ବାରରେ । ୧ ।
କେ ତାଙ୍କୁ ତୋଟଶ     ଅଛି ଗୋପ ନାରୀ
ନପାରିଲୁ ଏତକ ବଚ୍ଛର ରେ । ୨ ।
ନଳମା ଦଳରେ     ଏକା ନିକୁଞ୍ଜରେ
ଶୁଆଇଲୁ ତୋତେ ଏକ ଘରରେ । ୩ ।
ହାତଧରି କେତେ     ଜଣାଇଲି ତୋତେ
ନ ଦେନ ହସାଇଲୁ ବଇଶାରେ ରେ । ୪ ।
ଧ୍ୟାନ ଦୋଇଲନ     ତୋ ହୃଦ ସଜନୀ
ହସିବାକୁ ଅଛୁ କଆଉର ରେ । ୫ ।
ଏକା ବୋଲେ ଉଠ     କରନା ଗୋ ମଠ
ମାଗୁଛି ମୁଁ ପଣତ ପ୍ରସାର ରେ । ୬ ।
ଲୁହଁ ଘଟେ ସଜ     ହେ ସ୍ୱାମିନ ଆଜ
ବୋଲେ ଗୋପାଳକୃଷ୍ଣ ଜୁହାରରେ । ୭ ।

—*—

## ରାଗ ସୌରାଷ୍ଟ୍ର —ମିଶ୍ରଗ୍ରୁପତାଳ

( ମଦନ ମୋହନ ନାଗେନ୍ଦ୍ର ଦନ୍ତ ମଲ୍ଲଙ୍କ ରେଜ ପ୍ରଭୃ-ସ୍ମୃତେ )
ବ୍ରଜେନ୍ଦ୍ର କୁମାର

ତରଣୀ ତନୟା ତରଣୀରେ ଆଜ କଲା କେତେ ହରବର । ପଦ ।
ପାରି କରି ଦେବ ବୋଲି ସେ ପାରିକ ହାତ ଧରି ଘେନି ଗଲା
ତଗରେ ବସାଇ ଆଗାଧ ବାରିରେ ଷେପଣି ବସାଇ ଦେଲା ।୧ ।
ଶ୍ରୀ କିଶୋର ଶଶୀ କରେଧରି ବଂଶୀ ଅଳପ ଅଳପ ହସି
ସେ ହାନ୍ତରେ ରହି ଦେଲା ମା ଝୁଲାଇ ଗଲା ଗଲା ବୋଲି ଭାଷି ।୨।

ଦ୍ୱୀପ ନିକଟରେ କଣ୍ଠ ଦଘ୍ନମାରେ ନଉକା ଥକାଇ ଦେଲା
ଜଣ ଜଣଙ୍କୁ କାଖିଆଇ ପହଁର ଏପାଖିରେ ଗୁଡ଼ ଦେଲା । ୩ ।
ଆଶ୍ରୁ ମୁଖେ ମୁଖ ଲଗାଇ ଦିଅଇ ଅନାୟୁତ୍ତ ହେଲ ପର ।
ନିତମ୍ବରେ ହାତ ଦିଅଇ ଊର୍ଦ୍ଧ୍ୱକୁ ଟେକିଲା ପଦ୍ମଏ କର । ୪ ।
ଗୋପାଳକୃଷ୍ଣ କହଇ ଭୁଲି ହୁଅ ସେଠାରେ ଗଲା ସେ କଥା
ବ୍ରଜଯାକ ସ୍ଫୁଟ ହୋଇଯିବ ଏବେ ଲଜେ ମୁଆଁ ଇବ ମଥା । ୫ ।



## ରାଗ ଖରହର ପ୍ରିୟା—ମିଶ୍ର ରୂପ ତାଳ

ମୁହିଁ । ମୁହିଁ କିଶୋର ଚନ୍ଦ୍ରମାଙ୍କର ମୋର
ଆଜ ଯମୁନାଘାଟରେ ହୋଇ ଗଲା ମା । ୦ ।
ବେଳା ଶିଳାରେ ବସି ହେଳାରେ ତନୁ ଘଷି
ହେଉ ଥିଲ ବୟସୀ ଠାର ଦେଲ ମା । ୧ ।
ଉଠୁ ମୁଁ ଝଟକରି ଆଳୀ ଆପଟ କରି
ପ୍ରତି ପ୍ରଶ୍ନକ ଯାକ ଅଣାଲ ମା । ୨ ।
ଫିଟି ଚରମେ କେଶ ଲୋଟୁଥିଲ ଗୋ ବାସ
ଥିବା ଠାରେ ଯତନରେ ନଥିଲ ମା । ୩ ।
ଆଉଷ ରହ ବୋଲି ଯେକାଳେ ଭୁରୁ ବଳି
ଲୁଙ୍କି ରହୁଁ ମୋ ଜ୍ଞାନ ହଜିଲ ମା । ୪ ।
ପଥରକୁ ଆସୁ ସେ ପଥ ମୋତେ ନ ଦିଶେ
ଘାଟରେ ବୁଡ଼ ଆଳୀ କହିଦେଲ ମା । ୫ ।
ବୁଡ଼ିଗଲି ଆଜଭେ କାଳନ୍ଦୀ ମାରେ ମାରେ
ଗୋପାଳକୃଷ୍ଣ ବାଟ କଢ଼ାଇଲ ମା । ୬ ।



## ସ୍ୱାଭିଷ୍ଟ ଲାଲସା

ରାଗ ମାଳବ ଗୌଡ଼ା—ମିଶ୍ର ଝପ

ଶୁଣାଯିବ କି ସେ ଶ୍ରୀମୁଖରୁ ବାଣୀ ଶ୍ରବଣେ ମୋହର । ୦ ।
ନବନୀତ ମୃଦୁ ପୀୟୂଷରୁ ସ୍ୱାଦୁ
ଗୋଷ୍ଠ ଚନ୍ଦ୍ରମା ମୋହନ ମନ୍ତ୍ରର । ୧ ।
ବନ ଲେଉଟାଣି ବଂଶୀସ୍ୱନ ଶୁଣି
ଅଗଣାରେ ଆଳୀଙ୍କି ଡାକିବାର । ୨ ।
ମୋହନ ଶ୍ରୀ ହସ୍ତ ଚିଟାଉ ଏକାନ୍ତ
ସ୍ଥଳେ ରଖି ହସି ପାଠ କରାର । ୩ ।
ସଖୀ ପକ୍ଷେ ଥାଇ ବଦନ ନୁଆଇଁ
ବ୍ରଜ ବଧୂଙ୍କ ଦେଲାର ଉତ୍ତର । ୪ ।
ପଦାବ୍ଜ ସେବାକୁ ଗୋପାଳକୃଷ୍ଣକୁ
ଆସ ବୋଲିବାର ସ୍ୱାମିନୀଙ୍କର । ୫ ।

—*—

## ରାଗ ମୋହନା—ରୂପକତାଳ

ମୋ ଜୀବର ଜୀବନ
କାହିଁକି ଆଜ ସଜ ସରସିଜ ମୁଖ କରିଛନ୍ତି ମ୍ଳାନ ମିତଣିରେ !
ଲେଉଟାଇ ଗୋଧନ
ଆସୁ ସଦନକୁ ସବୁଦିନ ପର ଶୁଭିନାହିଁ ବଂଶୀସ୍ୱନ । ୧ ।
ଆରାଧି ବ କର୍ତ୍ତନ
ଆସିଲ ବେଳେ ହସି ହସି ଯାଚି ଦେଇ ଅଇଲ ଚୁମ୍ବନ । ୨ ।
ପଞ୍ଚି ସଦ୍ୟ ପ୍ରସୂନ
କର୍ଣ୍ଣରେ ମୋର କରି ଅବତଂସ ଚାହିଁଲେନ ବଦନ । ୩ ।
ମୋଆନଟି ମୁଁ ମାନ
କରିନାହିଁ ଚନ୍ଦ୍ରାବଳୀ ସଙ୍ଗେ ବନ୍ଧୁଥିବ ପରାଟି ଗୁମାନ । ୪ ।

ଚେଡ଼ ବ୍ରଜପବନ
ଗେହ୍ଡଉଡ ମଧୁବନୁ ଯିବାଢଥା କଲେ ଙ୍କ ଅନୁସନ୍ଧାନ । ୫ ।
ଗୋପାଳ କୃଷ୍ଣ କଥନ
ପୌର୍ଣ୍ଣମାସୀ ଆସି ତା ଯାକ ସନ୍ତୋଷ କଲେ ଦେଇ ସମାଧାନ । ୬ ।

—✳—

## ରାଗ ନାଦନାମ କିମ୍ବା—ଏକତାଳ

( ଗଳଣିତ ଗଳ୍ପ କଥା—ବୃତ୍ତେ )

ମହାଭକ୍ତ ରୂପ ଘବରେ ମାନସ ।

ଯାହା ଫଗେ ଶୁଚ ରସ ଉହ୍ଳଳନ୍ତ ସଦା ବହ୍ନ ଅବସ୍ଥରେ ।
ସନକ ସନନ୍ଦନ ସନତ୍କୁମାର ସନତ୍ପି ଉହ୍ଲସ୍ୟରେ ।
ବ୍ରହ୍ମାନନ୍ଦ ମୁଖ କରଜ ମଜ୍ଜିଲେ ଯା ଲୀଳା ଉସକଥାରେ । ୧
ଯା ସୁଷମା ଗୁଣ ଗୁଣି ଗୀତ କରି ଗାଉ ନାରଦ ବୀଣାରେ
କଳେବର ପୁଷ୍ଟ ହୋଇ ଭଫଗତ ଛିନ୍ନ ଚେଉଛନ୍ତି ଶ୍ରଦ୍ଧାରେ । ୨
ବ୍ରଜ ଜନଙ୍କର କୋଟିଏ ଜନ୍ମର ପୁଣ୍ୟ ବଟପିର ଫଳ
ନିକୁଞ୍ଜ ସେଜରେ ଫଜେ କରିବାର ବେଢ଼ରେ ଆଳୀ ମଣ୍ଡଳ । ୩
ସ୍ୱାମିନୀ ଶରଣ ହେଲ ମୁଁ ବୋଲ ଯେ ବୋଲୁଛି ଥରେ ଜୁହାର
ବ୍ରଜେନ୍ଦ୍ର ଲକ୍ଷା ଲେଖିବା ପଦେ ସଦା ହୋଇ ରହୁଛି କିଂକର । ୪
ଗୋବିନ୍ଦ୍ର ନନ୍ଦନ ସେବା ସୌଭାଗ୍ୟ ତୋ ଲଭିବାକୁ ଯହ ଆଶା
ଗୋପାଳକୃଷ୍ଣ କହଇ ଶ୍ରୀରାଧିକା ପଦେ ରହି ଅହନିଶା । ୫

—✳—



## ରାମ ମୋହନା—ତ୍ରସ୍ର ଜାତି ଏକତାଳି

( ଶ୍ରୀ ଗୌରଚନ୍ଦ୍ର ପଦ ବନ୍ଦରେ ମାନସ—ବୃତ୍ତେ )

ସୁଧା ଗୋବିନ୍ଦ ଭଜରେ, ମାନସ । ପଦ ।

ତେଜ କୁଟ କପଟ ଲୋଟ ଯମୁନା ତଟ
ଶ୍ରୀରାମ ସ୍ଥଳୀ ରଜରେ, ମାନସ । ୧

ସ୍ୱେଶ୍ୱସ୍ୱକୁଣ୍ଡ ସ୍ନାନ ବନେବସନ୍ତ କର
ହର ଏଭବ ରୁଜରେ, ମାନସ । ୨

ଗଳ ପଡ଼ିଥିବାର ତଳେ ମୁକୁତା ହାର
ଗୋଟାଇ ଗୁଞ୍ଜ ସ୍ରଜରେ, ମାନସ । ୩

ଦୋଳା ଲୀଳା କାଳରେ ଧରି ଡୋର ସଖିରେ
ପଞ୍ଚାଇ ସୁଖେ ମଞ୍ଚରେ, ମାନସ । ୪

ରାସ ଅବସାନରେ କୁସୁମ ବ୍ୟଜନରେ
ରଞ୍ଜ ସଖୀ ସମାଜରେ, ମାନସ । ୫

ଗୋପାଳକୃଷ୍ଣ କଥା କରନାହିଁ ଅନ୍ୟଥା
ନିଭୃତ କୁଞ୍ଜ ସେଜରେ, ମାନସ । ୬

—*—

## ରାଗ ମୋହନା—ରୂପକ ତାଳ

( ଧରଣିର ଚମ୍ପାଙ୍ଗରେ—ବୃତ୍ତେ )

ସ୍ୱପ୍ନରେ ଦେଇ ବଂଧୁ ନୟାରେ
ରହ ଜଟେନ୍ଦ୍ରସୂ ଚିତ୍ତ ହଜାରେ । ପଦ

ଗର୍ଭାଳସୀ ହଂସୀ ଗମନା
ପୂର୍ଣ୍ଣତନୁ କାମ କାମନା
ପୂର୍ତ୍ତି ହେବ ବୋଲି ସୁମନା
ଜଗିଛି ପଥ ମୃଣାଳ ଭୁଜା ରେ । ୧

କରେ ଗଣ୍ଡକଶ ଆଚ୍ଛନ୍ନ
ଧନ ନୁଦେଁରେ ଝନ୍ନ ଝନ୍ନ,

ଚନ୍ଦ୍ରକ ମୁଖ ମୃଗ ଲଞ୍ଛନ
ମୋ ମନ କଷଇ ଦାଅ ଓଜାରେ । ୨
ହରିଣି ନୟନଙ୍କି ବରଜ
ଲୁଆଇଁ ବଦନ ସାରଜ ।
ଦନ୍ତଧର ଭଣ୍ଡା ବରଜ
ଅନା ଥରେ ହସି ବନାଲଙ୍କାରେ । ୩
ଭାଷ ଗିର ଆନ ଧରନା
ପର ବୋଲି ମୋତେ ଡରନା
କମ୍ପାନା ତୁ ଶର୍ମା ବରନା
ଲଭିଛୁ ତୋ ଭେଟ ହର ପୂଜାରେ । ୪
ଗୋପାଳକୃଷ୍ଣ ରେ ଦୂତିକ
କହିବା ଶୁଣୁଛି ଶ୍ରୁତିକ
ଚଳେତ ନରହୁ କତକ
ଅସୂୟା କାହ୍ନିକ ଦୟା ମଞ୍ଜାରେ । ୫

—*—

## ରାଗବଲାହାର—ତାଳଏକପୁଟ

ଜୟ ରାଧା କୃଷ୍ଣ ବୋଲ ଜୟ । ପଦ
ସାର୍ଥ କୃତ ଭକ୍ତିକ୍ଷୋଦ । ନକର ହେଲୁ ଉନ୍ମାଦ
ନ କହ ଆଉ ପ୍ରମାଦ । ଏଣିକ ହୋଇ ନିର୍ବେଦ । ୧
ନିଭୃତ ନିକୁଂଜ ସେଜେ । ବିଜେ କରିଛନ୍ତି ସେ ସେ ।
ପାଣରେ ଆଳୀ ସମାଜେ । ମିଳିବୁ ଶ୍ରୀମୁଖେ ପଦାମ୍ବୁଜେ । ୨
ଆହା ସେକ ଚମତ୍କାର । ପ୍ରହେଳୀ ପ୍ରଶ୍ନୋତ୍ତର
କୁହା କୁହି ହୋଇବାର । ହସି ହସି ଧୀର ଧୀର । ୩
ସ୍ୱାପା ବସାନେ କଶୋଷି । ପ୍ରିୟ ହୃଦେ ଅପସର
ଲଭି ହେବାର ମାଧୁର୍ଯ୍ୟ । ରୂପ ସୁନ୍ଦର ସୁନ୍ଦରୀ । ୪
ବେଣୀ ପାଖରେ ଭ୍ରମର । ବ୍ୟଜନ ଧରି ସଭିର
ଆଳୀ ପକାଉ ଥିବାର । ଭାବ ଭାବ ନିରନ୍ତର । ୫

ମଧୁ ପାନେ ମତ ହୋଇ । ବର୍ଣ୍ଣଲୁପ୍ତ ଗୀତ ଗାଇ
ଗଣ୍ଡ ପାଶେ ଗଣ୍ଡ ଦେଇ । ରହିବା ଶ୍ରୀ ମୁଦିଥାଇ । ୬
ଆସି ଆସି ମଥା ପୋଡ଼ି । ଢଙ୍କ ହେବାର ଝଟତ
ଲୁଚବାର ଲଭ୍ୟ ଖଣ୍ଡ । ସେ ସୁଷମା ଚନ୍ଦ୍ର ଚନ୍ଦ୍ର । ୭
ଗୋପାଳ କୃଷ୍ଣ ଭଣିତ । ଯାଅନ୍ତୁ ମନ ସନ୍ତତ
ହୁଅ ଶ୍ରୀ ଲଳିତାଶ୍ରିତ । ପୂର୍ଣ୍ଣଚନ୍ଦ୍ର ଅଭିମତ । ୮

---

## ରାଗ ବଲାହାର । ଅଦତାଳ

ଶ୍ୟାମ ଅପରାଧୀଙ୍କ ମୁଁ ହରିଗିଙ୍କ । ପଦ ।

ଚନ୍ଦ୍ରାବଳୀଙ୍କ ଅଶୋଲୁ ସେ ତାଙ୍କ
ସେ ସିନା ହୃଦର ବଲାସିଙ୍ଗ ମା । ୧ ।
ଗଲେ ଯିବ ଯେବେ ନଗ୍ଣ୍ଡବ ଖଟଣେ
ଚନ୍ଦ୍ରେଣ ଥିବ ଦନ ରଜନୀ । ୨ ।
ମୋର ଚକ୍ଷୁ ବଳ ଅଞ୍ଜନ୍ତ ଗୁଆଳୀ
ଯିବେ ତ କଲେ ମୁରଳୀଧ୍ୱନ । ୩ ।
ମଥା ମୋର ବ୍ୟଥା କହିନୁହେ କଥା
ତୋ କୁନ୍ଦ ମାଳା କୁ ନଅ ଧେନ । ୪ ।
କୁହଇ ଗୋପାଳ କୃଷ୍ଣ ସହାଚଳ
ପ୍ରୀତିର ପଳତ ମିଳିଲନ । ୫ ।

*-*-*

## ରାଗ ଝଂଜୋଟି । ରୂପକ ତାଳ

( ଭଏ ମାନସ ରାଧିକେଶ-ବୃତ୍ତେ )

ରାକେନ୍ଦୁମୁଖି ରାସେଶ୍ୱର ରାଧିକେମାଂ ପାହି ।
ଗୋକୁଳ କୁଳଜା ସାମନ୍ତମଣି ସ୍ୱଗଣେ ନନ୍ଦେହି । ୧ ।
ଦେବ କୃଷ୍ଣମୟି ହ୍ଲାଦନ ସାଧ୍ୱୀଗଣ ବର୍ଯ୍ୟେ
ଲକ୍ଷ୍ମୀ-ଲକ୍ଷ୍ମୀ-ଜୟିନ ମାର-ନନ୍ଦ ଦଭ ଗାମ୍ଭୀର୍ଯ୍ୟେ । ୨ ।

ପଶୁପୀ ପ୍ରେମ କଳ୍ପଞ୍ଜ ହେମ-ଗୌର ନବକିଶୋରୀ
କାଳିନ୍ଦୀ ତଟ କୁଞ୍ଜ-ଗୃହିଣୀ କାର୍ତ୍ତିକା କୁମାରୀ ।୩।
ମହାଭାବ ଚିନ୍ତାମଣି ଭାବିତ ଶ୍ରୀ ବିଗ୍ରହେ
କୃଷ୍ଣ ପ୍ରେମ ପୀୟୂଷପାର୍ଥି ସର୍ବସୁଗୁଣ ପରୁହେ ।୪।
ନିଜ ଚରଜନ ତାପ ଧ୍ୱଂସିନ ଈଷ୍ଟ୍ ହରଷିଜ ସୌରଭେ
କନକାଚଳ ନିଳୟ ସରସ କେତକୀ ଦଳ ସନ୍ନିଭେ ।୫।
ରାଜ ତୋଳ ବଂଶୀ ଚନ୍ଦ୍ରାନନ ମୃଦୁ ପ୍ରପଦେ
ଗୋକୁଳେନ୍ଦ୍ର-ନନ୍ଦନ-ପ୍ରାଣପ୍ରେୟସି ଶୁଭ ବରଦେ ।୬।
ଆଦାସ୍ୟ ଗୋପାଳକୃଷ୍ଣ କବଳ ମୃଣାଳ ଦର୍ଶନେ
ଯାଉଁ କଙ୍କଣ ମୀଣ୍ଟର କୁନ୍ତଳ ବାନ୍ଧି ନଳିନେ ।୭।

—*—

## ନବାନୁରାଗ

କେଶର କୁଞ୍ଜ ଶେଜରେ । ବ୍ରଜେନ୍ଦ୍ର ବୃନ୍ଦାଙ୍କୁ ପୁଚ୍ଛନ୍ତି ଧୀରେ ।
ସହଚରୀରେ ! ରାଧା ବୋଲି କେ ବ୍ରଜରେ । ୧ ।
ଶୁଣିଲି କେତେ ଯେ ନାମ । ସୁଧାପାନ ପରି ଲାଗୁଛି ଶ୍ରମ
ସହଚରୀରେ ! ଫିଟାଇ କହ ମରମ । ୨ ।
ଚଉଦିଗକୁ ଅନାଇ । ବୃନ୍ଦା ମନ୍ଦ ମନ୍ଦ ହସିଲା ହୋଇ
କହିଆନ୍ତି ସେ । ଅଙ୍ଗେ ପୁଲକ ପୂରାଇ । ୩ ।
ସେ ଶ୍ରୀ ବୃଷଭାନୁ ଜେମା । କିଶୋରୀ ଗୋପ ନକ୍ଷତ୍ର ଚନ୍ଦ୍ରମା
ରସରାଜହେ ! ରମା ବନ୍ଦ୍ୟ ଯା ସୁଷମା । ୪ ।
ଜୀବ ଥିବା ଯାକ ତୁମ୍ଭ । ବିଷୟ ବରଜ ବସିଲେ କହି
ରସରାଜହେ ! ଶୋଭା ଶେଷ ହେବ ନାହିଁ । ୫ ।
ଥାଉ ମାଧୁରୀର ଧୁରୀ । ତୁମ୍ଭେ ତା ପାଶେ ଥିଲେ ବଂଶୀଧାରୀ ।
ରସରାଜ ହେ । ଦଶିବ ସୁନାଷ୍ଟା ପରି ।୬।
ଅମ୍ବା ବଳାମ୍ବା ଗୃହରେ । ତୋଷି ଦେଉଥିବେ ବସି ଗୃହରେ
ସହଚରୀ ରେ ! ଅଶନ କଲା କାଳରେ ।୭।

ଶ୍ୟାମସୁନ୍ଦରଙ୍କୁ ମୋର । ଏକା ରାଧିକା ଥିଲୁ ଯନ୍ତ୍ରାନ୍ତର
ବୋଲୁ ସଜନୀ । ନାମ ଶୁଣିଲ ତାହାର । ୮ ।
କୃଷ୍ଣ କହନ୍ତି ବୟସ । ଭାଷ କେତେ ହୋଇଥିବ ବରଷ
ସହଚରୀ ରେ ! ବୋଲୁ ବୃନ୍ଦା ଦଶ ଦଶ । ୯ ।
ହେ ନୂତନ ରଣ ରଣ । ଯୌବନ ଲକ୍ଷ୍ମୀଙ୍କ ପାଦେ ଶରଣ ।
ରସ ରାଜ ହେ ! ହୋଇଯାଉଛନ୍ତି ଜାଣ । ୧୦ ।
ବୟସ ଏଗାର ବାର । ଭିତରେ ପଡ଼ି ହେଉଛନ୍ତି ଗୋଚର
ରସରାଜ ହେ ! ସେ ସାଧ୍ୱୀ ଶିରୋମଣିର । ୧୧ ।
ବ୍ରଜବାସିଙ୍କ ନୟନ । ସମ୍ପତ୍ତି ସେ ଶ୍ରୀ କିଶୋରୀ ରତନ
ରସରାଜ ହେ ! ଅହା ଦିଶୁଛନ୍ତି ବଦନ । ୧୨ ।
ଛଡ଼ାଇ ହୃଦରୁ ମସୀ । ଗୋଟିଏ ହୋଇଲେ କୋଟିଏ ଶଶୀ
ରସରାଜ ହେ ! ରୂପ ପଣ ମିଳ ଦିଶି । ୧୩ ।
ଦିନର ସୁନା ନଳିନ । ଯାମ୍ୟକୁ ଭାବିଲେ ଚନ୍ଦ୍ରକୁ ମନ
ରସରାଜ ହେ ! ପଳାଇ ଯାଉଛନ୍ତି ସେନ । ୧୪ ।
ପରମାନନ୍ଦ ସ୍ୱରୂପିଣୀ । ଶୋଭିଛନ୍ତି ଯା କାନ୍ତି ଜଗତ ଶ୍ରେଣୀ
ରସରାଜ ହେ ! ସେ ସଦ୍‌ଗୁଣରେ ଖଣି । ୧୫ ।
ଦେହଳୀରେ ଗଲେ ସ୍ଖଳି । ପଦାବ୍ଜ ଚିହ୍ନ ଚୁମ୍ବୁଛନ୍ତି ଅଳି
ରସରାଜ ହେ ! ଅଙ୍ଗାମୋଦ ନୋହେ କଳି । ୧୬ ।
ଶ୍ରୀ ନଟିକାଳକାବଳୀ । କଳା ମେଘ ତଳେ ରହିଲା ଭଳି
ରସରାଜ ହେ ! ଦଶେ ଅଚଳ ବଜୁଳି । ୧୭ ।

*-*-*

---

* ଭକ୍ତକବି ଗୋପାଳ କୃଷ୍ଣ ଭାଇଙ୍କର ଏହି ବିଖ୍ୟାତ କବିତାଟିକୁ ପୂର୍ଣ୍ଣାଙ୍ଗ କରି ପାରି ନାହାନ୍ତି ।

## ରାଗ ଧନ୍ୟାଶି—ମିଶ୍ର ଝୁପତାଳ

ମୋହନ ଶାନ୍ତ ଚନ୍ଦ୍ରା ଚଢ଼ିଲା ମା ।୦
ଅପାର ରଜନୀ ହେଲାରେ ସଜନୀ
ପ୍ରାଚୀ ବଧୂକୁ ବଧୂ ଚୁମ୍ବିଲା ମା । ୧
କି ଯୋଗରେ ଆଜ ସାଜଥିଲ ସଜ
କାନନ ମଞ୍ଜୀ ଦଶା ଘଟିଲା ମା । ୨
ତୋଳିଦେ ଗୋ ଚନ୍ଦ୍ର ପୂରିଲା ସକଳ
ନିକୁଂଜ ସ୍ୱର୍ଗ୍ୟ ଭୋଗ ଅର୍ପିଲି ମା । ୩
ଧର ଧୀରତକ ପ୍ରଭୁଣ ଜାଣିକ
ଧରତେ କଳପଳ ମିଳିଲା ମା । ୪
ଗୋପାଳ କୃଷ୍ଣ ସେ ସମୟରେ ସ୍ୱପ୍ନେ
ଲୁଚିଛନ୍ତି ସବୁ ଶୁଭିଲା ମା । ୫

—*—

## ରାଗ ଝିଂଜଟି—ମିଶ୍ର ଝୁପତାଳ

( ଝଗଡ଼ ମାନ ହେଲ ହେ ଶ୍ୟାମ ତୁମ୍ଭେ )

କାହିଁକି ଶ୍ୟାମ ମୂରତି ଗୋ
ସଦା ଦିଶୁଛି ମୋତେ ଦିନ ରାତି ଗୋ ।୦
ଘରୁ ଆସିଲ ପର ହୃଏମତ
ଲୁହିଁଲେ କେ ନ ଦଣେ ଏକ ସ୍ୱାନ୍ତ । ୧
ଆସି ଆଗେ ରହୁ ହେଟି କରଣ
ବୋଲୁ ମୋ ହୃଦେ ଲୁଚୁଛି ଝଟେଣ । ୨
ଆଖି ବୁଜିଲେ କୁଂଜବନେ ନିତ
ସ୍ୱପ୍ନେ ବୁଲାଉଛି ଏ କି ବିପତ୍ତି । ୩
ଘରୁ ଅଗଣାକୁ ଯିବାକୁ ଶାନ୍ତ
ଲାଗି ଲାଜ ମୋତେ କହ କି ଗତି । ୪

କୃଷ୍ଣ କୃଷ୍ଣ ବୋଇଲାର ଶ୍ରବଣ
କାନରେ ପଡ଼ିଲେ ଥରୁଟିଏ ଶୁଣ । ୫
ଗୋପାଳ କୃଷ୍ଣ ବୋଲଇ ଧରି ତ
ବଂଶକୁ ଏପରି ହେଉଛି ସ୍ମୃତି ।



## ପୂର୍ବ—ଅନୁରାଗ

( ରାଧାଙ୍କର ସଖୀପ୍ରତି ଉକ୍ତି )

ଜଳ ଆଣି ଯାଇ କାଲି କଳସ ସୁଗାଡୁ
ଫଳ ଖାଇଲି ଅନାଇରେ । ସଙ୍ଗାତ ।
କଦମ୍ବ ମୂଳକୁ ରେ । ସଙ୍ଗାତ ।୧
ନୀରଦଛବି ନୀଳମଣି ପ୍ରତିମା ସେ ଜଣେ
ବାରି ପାରିଲି ନାହିଁ ରେ । ସଙ୍ଗାତ
ନୟନରେ ନାଚୁଛି ରେ । ସଙ୍ଗାତ । ୨
ଘନ ଘନ ନୀଳୋତ୍ପଳ କସ୍ତୁରୀ ସୁବାସ
ବନ ବନ ଆସୁଥିଲା ରେ । ସଙ୍ଗାତ
ହୋଇଥିଲି ଅବଶ ରେ । ସଙ୍ଗାତ । ୩
ପଳେ ପଳେ ଭେକ ବୃନ୍ଦ ମଧ୍ୟେ ସୁଖକେଳି
ଡାକି ଡାକି ନାଚୁଥିଲେ ରେ । ସଙ୍ଗାତ
କଣ୍ଠ ସେ କାହିଁକି ରେ । ସଙ୍ଗାତ । ୪
ଛପି ଛପି ନିକୁଞ୍ଜ ପୁଞ୍ଜ ତଳ ତଳରେ
ଆସି ଆସି ପାଇଗଲେ ରେ । ସଙ୍ଗାତ
ଆଗେ କି ବେଗରେ ରେ । ସଙ୍ଗାତ । ୫
ଝୁମୁ ଝୁମୁ ଧ୍ୱନି ଶୁଣି ଏଣେ ତେଣେ ମୁହିଁ
ଅନାଇ ଅନାଇ ରହିଲେ । ସଙ୍ଗାତ
ବୋଇଲେ କେ ନାହିଁରେ । ସଙ୍ଗାତ ।୬

ଧଉ ଝରଣକ ଭଳି ଚମକ ଚହଳି
ଧମ ଝମ ହେଲି ସ୍ତୁତରେ । ସଂଗାତ
ମଥା ପୋତ ଦେଲରେ ସଂଗାତ । ୭
ପ୍ରଚଳାସ୍ତ୍ର ପ୍ରଚଳାକ ଭମଙ୍ଗସ୍ତ ଚୂଳ
ଡ଼ଳ ଦର୍ଶ ଖେଳୁଥିଲି ରେ । ସଂଗାତ
ଗଣ୍ଡରେ [illegible]ଳ ରେ । ସଂଗାତ । ୮
ଥର ଥର ଥରଗଲି ବିବେକ ହଜିଲି
ଜର ଜର ହୋଇ ଗଲେରେ । ସଂଗାତ
ଝାଳ ବୁଡ଼ାଇଲରେ । ସଂଗାତ । ୯
ପ୍ରେମ ସ୍ପର୍ଶକ ପାକରେ ପୁଲକ ପୂରିଲି ।
ଭରଭର ଚକିତେ ହେଲରେ । ସଂଗାତ
ପଦକ ତଳନ୍ତି ରେ । ସଂଗାତ । ୧୦
କଉକ ରଦନା ଭଳି ଗ୍ରାସାନ୍ତୁ ସେ ପୁଣ
କନ୍ତୁ କନ୍ତୁ କପଟିରେ ମୁଁ । ସଂଗାତ
ବାଣୀଦେଲ ବଟିରେ । ସଂଗାତ । ୧୧
ଶୃଙ୍ଗାର ରସକ ସ୍ଵର ହେ଼ ;ବ ମୋ ମୂର୍ଚ୍ଛା
ସ୍ପୃହିଁ ସ୍ପୃହିଁ ଡ଼ାକି ଦେଲରେ । ସଂଗାତ
ଜଟିକା ଜରସ୍ତରେ । ସଂଗାତ । ୧୨
ଆସୁ ଆସୁ ପୁରକୁ ପଥରେ ପସ୍ତରିଲ
ଗୋପାଳ କୃଷ୍ଣ କଦଳ ରେ । ସଂଗାତ
ବ୍ରଜ ବଧୂ ବୋଲରେ । ସଂଗାତ । ୧୩

—*—



## ରାଗ ଭୈରବୀ । ରୂପକ ତାଳ

( ହଇରାଣ କାହିଁକ ଏତେ—ବୃନ୍ଦେ )

ଘନ ଶ୍ୟାମ ପ୍ରେମ ଭାବନା ବନଜାକ୍ଷି ଜାଣୁଛୁ କି ନା
ମାନ କଲୁ ପର    ମନ ଭେଦକାର
ଆନ ଜାଣିବ କେହ୍ନ ତୋ ନାରେ । ୦
ତାକୁ ବନମାଳୀ    ଲୁକ୍କୁଯାଇ ଆଳି
ଆଳୀ ପଞ୍ଜରେ ଭ୍ରୁ ଲୋଳ ଲୋଚନା,
ମୁନି ପର ଭୁନ    ହୋଇ ଚନ୍ଦ୍ରାନନ
ଶାଢ଼ୀ ବାଡ଼ି ନଖେ ଘର୍ଷୁ ଭୂମନାରେ । ୧
ଦଣ୍ଡେ ନ ଦେଖିଲେ    ଗଣ୍ଡେ କର ଦେଇ
କେତେ ଲୁହ ପୋଛୁ ହୋଇ ଦମନାରେ,
ଆସିଲେ ସମ୍ମୁଖୁ    ନ ଚାହିଁ ମୁହଁକୁ
ସଖି ମୂଳେ କରୁଛ ସମ୍ଭାବନାରେ । ୨
ନୀରଦ ନିବନ୍ଧ    ନିରେଖି ଯା ଦେହ
ଭୁଲ ରୁଚ ଭାବ ଦନ୍ତ ଚେତନା ରେ,
ନିକଟ ହେଲେ ସେ    ନିକୁଂଜ ପ୍ରବେଶେ
ଅର ଆଉଛୁ କୁଂକୁମ ବରନା ରେ । ୩
ଚନ୍ଦନ ଗୋଳାଇ    ପ୍ରିୟ ଆଗେ ଯାଇ
ରକ୍ତ ଜଳ ହୋଇ କୁଂଦ ରଦନାରେ;
ଲାଜେ ଦର ହାସୀ    ଛଳ୍ପ ବାପ ବଂଶି
ବୋଲୁ ଭୋଳ ଭୁଜ ଘନ ଜଘନାରେ । ୪
ନଷ୍ଟ କଲେ ହରି    ଚାହିଁ କଲୁ ପର
ଏଣେ ଅଚେତ୍ନ ଧରଣୀ ମଣ୍ଡନାରେ,
ଗୋପାଳ କୃଷ୍ଣ ସେ    ଶ୍ରୀମତୀଙ୍କୁ ଭେଟେ
ତେଣେ ପୂରୁଷ ପ୍ରାଣେଶ କାମନାରେ । ୫

—*—

## ରାଗ ଖମାଚ—ଆଦ୍ଧ ତାଳ

( ନଭାଙ୍କରେ ଶୁଭାଙ୍ଗି ଖରଣି ତୁଅ ସାହା—ବୃନ୍ଦେ )

ବଞ୍ଚାଇ ସଜନି ମୋତେ ବଚନରେ କିଣୁ । ୦ ।
ନବ ନୀରଦକୁ ଦେଖି[illegible]          ଆଖିରେ ପଲକ ରଖି
ଏପରିକି ବ ସେ[illegible]ଅଛୁ ବୋଲି ସାହା ଭଣୁ । ୧ ।
ଥରକୁ ଥର କାନନ          ବାଟକୁ ଅନାଉ ଧନ
ଅଶ୍ରୁ ନାହିଁ ଅପ[illegible]କୁ କାଳ ନ ହେଉଣୁ । ୨ ।
ଲୁଚିକରି ସଙ୍କେତରେ          ବଂଶୀରବ ଡାପାଣରେ
ଲେଉଟି ଯିବା[illegible]ନାକ ପିକ ନଡାକୁଣୁ । ୩ ।
କରି କି ଏତେ ସାହାସ          ନୂଆ କିଶୋର ବୟସ
ଆଜକୁ କାହାର ନାହିଁ ଭୟରେ ପ୍ରାଣଙ୍କଣୁ । ୪ ।
ଏ ବ୍ରଜେ ଦୋଷ ଦେବାକୁ          ଅଛି କେ ଆଉ କାହାକୁ
ଗୋପାଳକୃଷ୍ଣ ଭଣେ ଲୁନଚୋ କେ ନଶୁଣୁ । ୫ ।

*-*-*

## ସ୍ୱାଭୀଷ୍ଟ ଲାଳସା

ରାଗ ପରଜ—ମିଶ୍ର ରୂପ ତାଳ

( ସର୍ଡ଼ି ଯିବନ ଲେଉଡ଼ି ଲେଉଡ଼ି ମୋତେ-ବୃନ୍ଦେ )

ଦେଖାଇବ କି ସତେ ଦଇବ ରାଧାଗୋବିନ୍ଦ ମାଧୁରୀ । ୦ ।
ବ୍ରଜେନ୍ଦ୍ର ପୁରରେ          ରନ୍ଧନ କାଳରେ
ରସବତୀରେ ଶ୍ରୀ ରାସେଶ୍ୱରୀ
ସୁବେଶ ହୋଇ ରମଣ          ଆହା ସେ ଗୁରୁ ଲକ୍ଷଣ
ତଳା ଉଳ ହୋଇବାର ଶୁଶ୍ରୂଷା ରେ ଶୁଶ୍ରୂଷା । ୧ ।
କୁସୁମ ଅବଚୟନ          କାଳରେ ଆସି ମୋହନ
ଭିକ୍ଷିଲେ ଶ୍ରୀକିଶୋରୀ ଚୁମ୍ବୁରେ
ଗଣ୍ଡେ ଦେଶରେ ବସନ          ସଲଜ୍ଜେ କରି ଅଞ୍ଚଳ
ବଲ୍ଲୀ ଆଡ଼କୁ ଯିବାର କାହାଣ ରେ କାହାଣ । ୨ ।

ପୁଷ୍ପେ ତୋଳ ବନମାଳୀ ଯାଉଛନ୍ତି କର ଅଞ୍ଜଳୀ
ନଅନାଇ ଭୁନ ହୋଇଉନ୍ତି
ସାଡ଼ୀ ବାଡ ନଖେ ଧସ୍ତୁ ଶ୍ୟାମ ଶ୍ରୀଅଙ୍କେ ଆସୁ
ଛୁଅନା ବୋଲିବାରୁ ସେ ଓଦନ୍ତି ରେ ଓଦର । ୩
ଉଦ୍ଧତ ନାନ ବକାର ଦୁର୍ବାଙ୍କୁର ଶ୍ରୀକଳେବର
ଭୂଷିତ ହୋଇ ପ୍ରଣମ୍ୟ କୋଣ
ଜାଣୁନ ଲଳିତା ସଙ୍ଗ ଛନ୍ଦୁ ଦେବେଟି କଙ୍ଗ
ବୋଲିବାର ନଗୁଇ ସେ ଲଞ୍ଜୁବଲ୍ଲୀ ରେ ଭୃବଲ୍ଲୀ । ୪
ମଧୁବ୍ରତ ବେଢ଼ି ପାଶେ ମୋହନ ରଙ୍ଗ ପାହୁଶେ
ବାସ ଶେଷେ ନବାରୁ ଗୋରୁ
ଯାଉଛୁ ବୋଲି ବାହାର ସି ହସି ଶ୍ରୀ କଶୋର
ରକ୍ତ ପଦ ଚେଳ ଅଂକେ ସମ୍ବର ରେ ସମ୍ବର । ୫
କର ଅରଣ୍ୟ ଭ୍ରମଣ ଜଗତ ବଇଲକ୍ଷଣ
ସୁମନସ ପ୍ରଜର ସୂଚନା
କ ଉପମା ରମାଉମା କ ମଦନ କ ଚନ୍ଦ୍ରମା
ନଥିବ ଯେ ପରଂବ୍ୟୋମ ସେପାଶରେ ସେପାର ।୬
ନାଗ କେଶର କୁଂଜର ରଙ୍ଗ ବୋଳାଉ ବେହାର
ସଙ୍ଗ ସଦ କର ଆରୋହଣ
ବୃନ୍ଦା ଧୀରେ ପଦଆଉ ଆହା ଦୁଳା ଦୁଳ ଦେଉ
ଉଛଳନ୍ତା ଆନନ୍ଦାବଧି ମୋହରରେ ମୋହର ।୭

---*---

## ରାଗ ଆନଂଦ ଭୈରବୀ—ଆଦତାଳ

( ନନ୍ଦ ନନ୍ଦନ ର ବାଣୀ—କୃଷ୍ଣେ )

ସୁଂଦର ତୋତେ ଏ ଶାନ୍ତ କରେ ନବ ରସବନ୍ତ
ସଂପ୍ରତି ଶଯ୍ୟା କଲୁ ଧରନ୍ତ । ୧
ତେଜ ଅଶନ ଶୟନ ସୁବର୍ଣ୍ଣ ତୋର ବରନ
ଜୀବନ ବଂଧୁ କଲୁ ମଳନ । ୨

ବାଳୁତ [illegible] ବେ ତର ଜାଣିଛୁ ଜାଣିଛୁ ନାଥ
ଯଶୋଧ ଦେଲୁକରେ ଯଶୋର । ୩
ବ୍ରଜ ବଧୂ ଖେଳୁ [illegible] ମୁକ୍ତ ଜନେ ଅନୁରକ୍ତ
[illegible]କ୍ତ ବୋଲୁ ହେଲୁ ଆସକ୍ତ । ୪
ଗୋପାଳ କୃଷ୍ଣ ଭଣେ ଲଳତା ଅଙ୍କେ ପକାଇ
ବେ[illegible]ଇ କରିବାର ଛନ୍ଦାଇ । ୫

—*—

## ଅନୁଭୂତ

### ରାଗ ଆନନ୍ଦ ଭୈରବୀ । ଏକତାଳ

ଅଇ କେଶର କୁଂଜରୁ ଅଇଲୁକି
ଜୀବନ ବଧୂଙ୍କୁ ମୋ ଦେଖିଲୁକି ? ପଦ
ହୋଇ ତେତେ ବନସ୍ତୁଲୁ ଆସୁଛୁ ମୁଖ ପାଣଲୁ
ଶ୍ରୀ ଯଶୋଦ ଚନ୍ଦ୍ରଙ୍କର କୁଶଳ କି । ୧
କଣ୍ଠୋଖ୍ଂସ ପୁଷ୍ପେ ବସ କହିଛନ୍ତି କି ସନ୍ଦେଶ
ଗୁପ୍ତରେ ତୋତେ ପଠିଆଇଲେ କି ? ୨
ତୁ ଯାଜନା ଦେବୁଠାରୁ କଂଜ ଭଳେ ତୋ ପାଣଲୁ
ଅନୁଭବ ତୁ ପାରୁଛୁ ନାହିଁକି ? ୩
ମଧୁ ବ୍ରତକୁ ତରୁର ଆଣି ନୟନରୁ ବାଣ
ବୋଲନ୍ତି ମୁଁ ସତେ ମନେ ପଡ଼ୁଛି କି ? ୪
ଅଳୀ ଶ୍ରଣେ ବାଣୀର ହୋଇଲୁକି ଆସ ଅସ
ପଚାରୁଛ ଯେ କାଟ କଥା କଥା କହିବ କି ? ୫
ମଧୁକର ଉଡ଼ିଲେ ଗୋପାଳକୃଷ୍ଣ ଭଣିଲେ
ପ୍ରିୟ ଅଇଲେ ଚଳ ପୁଷ୍ପ ବାଟୀକି ? ୬

—*—

## ରାଗ ଭୈରବୀ—ରୂପକ ତାଳ

ଅନୁ ସରିତ ! ପ୍ରଭୋ ! କାଳଯାକ ଗଲା ପ୍ରଭୁଣ ।
କଣ ବିତରଣ କଲେ କେତେ ଜଣା ହୁଅନ୍ତା କାହିଁଗୋ ସରିତ ? ପଦ
ଅଶରଣ ଜନ ବନ୍ଧୁ ପଣ ଯଶ ସଂସାରେ ହୋଇଛି ଉଦିତ
ପଥର ହୋଇ ପଥରେ ପଡ଼ିଥିଲା ଅହଲ୍ୟାକୁ କଲେ ତାରିତ । ୧
ପଞ୍ଚାଳୀକି ଦୁଃଶାସନ ଧଂସୁଥିଲା ବଂସ୍ତ୍ରଇଲ ବାସ ଦେଇତ
ଧ୍ୱଂସୁଇଲ ନାହିଁ ମୋଗ୍ଗର କଦନ ପୋଗ୍ଗର ନେତ୍ରୁ ବାରିତ । ୨
କାହିଁଥିଲା ଚଣ୍ଡ କାହିଁ ଥିଲା ନଣ୍ଡ ପଲକ ହୋଇନ କୋହୁତ
ଛୁଡ଼ ଗଲା ମଥା ରହିଗଲା କଥା ଡାକିଲା ଯେବେ କଷିତ । ୩
କାଳ କିଂକର ଭୟରେ ଅଜାମିଳ ପୂତ୍ରଙ୍କୁ ସ୍ୱରରେ ଡାକିତ
ପରମ ପଦ ପାଇଲା ଆପଣଂକ ନାମ ମହିମା ଏପରିତ । ୪
ନିରୁପାଧି କୃପା କର ବୋଲି ଶଧି ଭବାବରେ ଥାଉ କଥିତ ।
ମୁଁ କଲା ଦୋଷକ ନାଶିଛନ୍ତ ବଣା ଶଷ ବଢ଼ାଇ ତା ଦୁରିତ । ୫
ଗୋପାଳକୃଷ୍ଣକହେ ଜଗନ୍ନାଙ୍କଳ ଯାହା କରିବ ଭୂମ୍ଭ ଶତ୍ର
ଆପଣା ଦୟାକୁ ପଣକୁ କଳ ମୋ ଦୁଷ୍କୃତ ନୁହଇ ଘାରିତ । ୬

—*—

## ରାଗ କୀରବାଣୀ—ତାପ୍ତରଣ ଏକତାଳ

( କଣୁଣିଲି ଆଜ ନୂଆ କଥ—ବୁଝେ )

କି କରିବ ପଛେ ଗୋଡ଼ାଇଲେ ଯେ
କାନ ଦେଉ ନାହିଁ ସେ ପଚାରିଲେ ଯେ
କି ବୋଲି ଦେବଛି ସେ ଲବଣ୍ୟ ନିଧି
ପ୍ରବୋଧି ମୁଁ ପୁଣି କହିଲେ ଯେ । ପଦ
ଅପରାଧ ନାହିଁ ବୋଲି କାକୁ
ଦେଖି ନାହିଁ ସେ କି ଆପଣକୁ
ଉଜ୍ଜଳ ହେଲା ଉଲୁରୁ ତ ଆସିଲ
କଧୋଇଲପନ ତା ଘୁମୁକୁ । ୧

[illegible] ନା ଅରେ ସେ ଗୋଟିଏ ଜ
ସ୍ତୁତି ଦ୍ୱର କବାଟକୁ ଠେଲି
ନିତ ବୁ[illegible]ବୁଲୁ ଗୀତ ଅଶ୍ରୁ ନାହିଁ
ପତ୍ନୀ ବୁଢବଟା ଅଳପ ଜ । ୨
ଯା ଘର ଚେ[illegible]ଏ ଘର ମେସ୍ତ୍ରୀ
[illegible]ଚିବେ ନାହିଁ ସେ ହେଲେ ଗୋଷ୍ଠୀ
ଲୁହ ଲବ୍ଧନାହିଁ [illegible]ଖିରୁ ଆଉର
ଯ[illegible]। ହେଉଛି ସେ ଶମ୍ଭୁତୁଷ୍ଟୀ । ୩
ଭାଷନ୍ତି ବନସ୍ପେ[illegible]ଜ ଶଧୂ
ଦେ[illegible]ସିନା ମୋର ଜୀବନ ବନ୍ଧୁ
ଭାସରେ ତା ବୁ[illegible] ପଳାଇ ଯିବାର
କେଉଁଠେ ନ ଥିଲେ କ ଗୋପବନ୍ଧୁ । ୪
ମନ୍ଦିର ନ ବନ୍ଧୁ ପୂର୍ବ ପରି
ଦୋଇବଟି ଏବେ ପଦ ଧରି
ଗୋପାଳ କୃଷ୍ଣ କହଇ ଆସିଥାଅ
ମୁଁ ଦେଲି ବେଳେ ନେଶାନ୍ତ ଠାରୁ । ୫

—*—

## ରାଗ ମାୟୁ ମାଳବ ଗୌଡ଼ା—ମିଶ୍ରଜ୍ଞପତାଳ

( ଗଳ୍ପିତ ଗଳ—ବୃତ୍ତେ )

ରାଧା ପର ରାଧା ସିନାରେ ସଗିନୀ !
ସ୍ରି ଙ୍କ ମାତରଙ୍କ ଅଙ୍କମ୍ଭ ସେତେକ
ସର୍ବେ ପିତଳ ସେ ସୁନା । ଘୋଷା ।
ଦଳଭାଞ୍ଜନକୁ ହସୁଛି ଯା କାନ୍ତି
ସେ ଶ୍ୟାମ ପାଶରେ ଥିଲେ
ହରିତାଳ ବୋଳ ହେଲା ପରବଶେ
କାନ୍ତରେକେ କାହାଭୁଲେ । ୧

## ରାଗ ବେଗଡ଼ା—ତ୍ରିପୁଟା ତାଳ

( ତାଳେତ ତାଳକୁ ନାହିଁ—ବୃତ୍ତେ )

ନାଗାରୂଢ଼ ବ୍ରଜଶଶି । କରୁ ବାସକେ ଆକର୍ଷି
ମନ୍ଦ ମନ୍ଦ ହସି ହସି । ଲଗେ ମଲ୍ଲିକବ ବସ୍ତୁଷୀ । ୧ ।
କୁଂଚିତ କରି ଭ୍ରୂଲତା । ପୁଣ ପୁଣ ହୋଇ ବନତା
ସରାଗରେ ମାଗିବାର । ହୃଦେ କୁନ୍ତଳ ଶନ୍ୟାସି । ୨ ।
ଶ୍ରୀ ପ୍ରତାପରୁଦ୍ର ଦେବ । ଭବସ୍ରାନ୍ତରେ ଏଭାବ
ପ୍ରେମ-ସୁଧାବ୍‌ଧି ମଧ୍ୟରେ । ମଜ୍ଜିଲେ ଦିବସ ନିଶି । ୩ ।

—*—

ଶ୍ଳୋକଃ—ଅପିଜନୁଷି ପରସ୍ମିନ୍ନାପ୍ୟହଂ ପୁଣ୍ୟାଭବେସ୍ୟଂ
ତଟଭୁବି ଯମୁନାୟା ସ୍ତାଦୃଶୋ ବଂଶନାଳଃ
ଅନୁଭବତି ଯଏଷ ଶ୍ରୀମଦାଭୀର ସୂନୋ
ରଧରମଣି-ସମୀପନ୍ୟାସ ଧନ୍ୟାମବସ୍ଥାଂ ।

## ରାଗ କାମୋଦୀ—ତାଳ ରୂପକ

କେଉଁ ବ୍ରଜ କୁଳାଙ୍ଗନା ମନେ
ମନେ ଭାଳେ ବସି ରହି ନଟବଣନେ । ପଦ ।
ବଂଶୀର ପୂର୍ବ ଜନ୍ମରେ । କି ପୁଣ୍ୟ ଶ୍ରୀକୃଷ୍ଣାଧରେ
ବସି ସୁଧାପାନ କରେ । ଯମୁନା ତୀରବନରେ । ୧ ।
ଧନ୍ୟ ବେଣୁ ନାଳର ସୁଦଶା
ଆହା ମୁଁ ହୁଅନ୍ତି ପୂର୍ଣ୍ଣ ହୋଆନ୍ତା ଆଶା
ମଣିସେ ଗୁଆଳଙ୍କର । ହରିପ୍ରେମ ଚମତ୍କାର
ଭଣିଲେ ପ୍ରତାପରୁଦ୍ର । ଗଜପତି ନରେଶ୍ୱର । ୨ ।

———

ଶ୍ଳୋକଃ—ଅସ୍ମିନ୍ ପରିଚିନୁ ଚେତଃ ପ୍ରାତରମ୍ଭୋଜ ନେତ୍ରଂ
କବର କଳିତ ଚଞ୍ଚତ୍ପିଞ୍ଛଦା ମାଭିରାମଂ
ବଲଭିଦୁପଲନୀଲଂ ବଲ୍ଲବୀ ଭାଗଧେୟଂ
ନିଖିଳ ନିଗମ ବଲ୍ଲୀ ମୂଳକନ୍ଦଂ ମୁକୁନ୍ଦଂ ।

## ରାଗ ଧନାଶ୍ରୀ—ଆଦତାଳ

( ବୃନ୍ଦାରେ ନିକୁଞ୍ଜ ଶେଯକୁ—ବୃତ୍ତେ )

ଶନ୍ତରେ ସ୍ୱାନ୍ତ ନିରନ୍ତର
ଜଗଦାନନ୍ଦ ମୁକୁନ୍ଦ ସୁନ୍ଦର ଶରୀର । ପଦ ।

ଏହିଟି ସମସ୍ତ ଛନ୍ଦ          ବ୍ରହ୍ମାଣ୍ଡର ମୂଳକନ୍ଦ
ମହେନ୍ଦ୍ର ମଣି ନିନ୍ଦି ମୂର୍ତ୍ତି ରୁଚୋଦ୍ଭବ ଯାର । ୧ ।

ବାପର ମୁଖ ନଳନ          ପ୍ରସନ୍ନ ଜଣି ନୟନ
ସ୍ପନ୍ଦନ ନନ୍ଦ ଶିଖଣ୍ଡ ମଣ୍ଡନ କବର । ୨

ବଲ୍ଲଭୀ ନିକୁରୁମ୍ବର          ଭାଗ୍ୟ ସୁକୃତ ପୁଞ୍ଜର
ଶ୍ରୀ ପ୍ରତାପ ରୁଦ୍ରଙ୍କର ପ୍ରାଣର ଈଶ୍ୱର । ୩

—*—

ଶ୍ଳୋକ—ଅସ୍ୟ ମୁରଲି ମୁକୁନ୍ଦ ସ୍ମେର ବକ୍ତ୍ରା ରବିନ୍ଦ
ଶ୍ୱସନ ମଧୁର ରନ୍ଧ୍ରେ ତ୍ୱାଂ ପ୍ରଣମ୍ୟାଦ ଯାଚେ
ଅଧର ମଣି ସମୀପଂ ପ୍ରାପ୍ତବତ୍ୟାଂ ଭବତ୍ୟାଂ
କଥୟ ରହସି କର୍ଣ୍ଣେ ମଦ୍ଦଶାଂ ନନ୍ଦସୂନୋଃ ।

## ରାଗ ନାଦ ନାମକ୍ରୀୟା—ତାଳଝମ୍ପା

(ଧୀର ସମୀରେ ବସି ଡାକୁଛି ତୋ ନାରେ—ବୃତ୍ତେ)

କର ଜୁହାର ମାଗୁଛି ମୁଁ ବଂଶୀ ତୋତେ
ହରି କର୍ଣ୍ଣେ କହ ମୋ ଦଶା ଇରତେ । ପଦ ।

କୃଷ୍ଣ ମୁଖାର ବିନ୍ଦ          ସମୀର ମକରନ୍ଦ
ରସିକା ତୁ ଅନୁଗ୍ରହ କର ମୋତେ । ୧

ଅଧରାରୁଣ ମଣି          ସଦନର ଗୃହିଣୀ
ପଦାବ୍ଜର ଦୁଃଖ ଜଣା ଯେତେ । ୨

ତ୍ରୈଲୋକ୍ୟ ନିରୁପମ          ବ୍ରଜ ବନିତା ପ୍ରେମ
ଚିନ୍ତିଲେ ଶ୍ରୀ ପ୍ରତାପରୁଦ୍ର ସନ୍ତତେ । ୩

—*—

ଶ୍ଳୋକଃ—ଅଧର ଶମ୍ଭ ଖଣ୍ଡିତ ଖଦ୍ରୁମଂ
ମଧୁର ବେଣୁ ନିନାଦ ବିନୋଦନଂ
କମଲ କୋମଲ କମ୍ରମୁଖା ମ୍ବୁଜଂ
କମପି ଗୋପ କୁମାର ମୁପାଶ୍ରୟେ ।

## ରାଗ କଲ୍ୟାଣୀ—ମିଶ୍ର ଝୂପତାଳ

( ଭଜ କରଜ ରାଜ ରେ—ବୃତ୍ତେ )

ସେକୃଷ୍ଣ କେ ସେହି ସେ । ଗୋପକୁମାର
ମୂର୍ତ୍ତିଙ୍କି ଶୀଘ୍ର ବଦସେ । ପଦ ।
ଶମ୍ଭ ଖଦ୍ରୁମ ଗୁର । ଥାଉ ଯା ଅଧର
ଶ୍ରୁତି ଦ୍ରୁମରେ ରାଗ କୁସୁମ ଫଳ ଫଳେ । ୧
ମଧୁର ବଂଶୀସ୍ୱର । ନବରସିକ
କର କିଶୋର ଶେଖର ମୃଦୁଳ ସରୋଜର
ଶଶାଙ୍କରୁ ସୁନ୍ଦର ।
ବଦନ ଶ୍ରୀ ପ୍ରତାପରୁଦ୍ର ଚନ୍ଦ୍ରେ ମାନସେ । ୨

—✳—

ଶ୍ଳୋକଃ—ସ୍ୱାକାପି ସର୍ବଜଗତା ମଭ୍ରମ ସୀମା
କାମାସ୍ତୁନୋ ଭବତୁ ଗୋପ କିଶୋର ମୂର୍ତ୍ତିଃ
ଯା ଶେଖରେ ଶ୍ରୁତିଗିରାଂ ହୃଦି ଯୋଗଭାଜାଂ
ପାଦମ୍ବୁଜେ ଚ-ସୁଲଭା ବ୍ରଜ ସୁନ୍ଦରୀଣାଂ ।

## ରାଗ ମୁଖାରୀ—ମିଶ୍ର ଝୂପତାଳ

(ଜଣା ଗଲାନି, ରୂଳ ରୁଦ୍ରାଣି—ବୃତ୍ତେ)

ବ୍ରଜ କିଶୋର । କେସେହି ହେଉ । ପଦ ।
ସର୍ବ ଲୋକର ସେବାରେ ସାର
ଯା ମୂର୍ତ୍ତି ବେଦାନ୍ତ ଶିରେ ଆଗୋଚର । ୧
ବ୍ରହ୍ମ ନୈଷ୍ଠିକ ଯୋଗିମାନଙ୍କ
ହୃଦରେ ଦୁର୍ଲ୍ଲଭ ସ୍ଫୁର୍ତ୍ତି ଲବଯାର । ୨

ଗୋପ ପ୍ରମଦା ପଦାବ୍ରଜ ସଦା
ସୁଲଭ ସେ ଶିଖି ଶିଖଣ୍ଡ ଶେଖର । ୩
କରନ୍ତୁ ସ୍ଫୂର୍ତ୍ତି ଅଭୀଷ୍ଟ ପୂର୍ତ୍ତି
ସେ ଅଚ୍ଛିଦ୍ର ବ୍ରହ୍ମ ବରାହ ଆମ୍ଭର । ୪
ପ୍ରତାପରୁଦ୍ର ଦେବ ନରେନ୍ଦ୍ର
ସେବିଲେ ସେ ଗୋପୀ ଗୋବିନ୍ଦ । ୫

ଶ୍ଳୋକଃ—ବଦନେ ନବନୀତ ଗନ୍ଧବାହଂ
ବଚନେ ତସ୍କର ଚାତୁରୀ ଧୁରୀଣା
ନୟନେ କୁହନା ଶ୍ରୁମାଶ୍ରୟେଥା
ଷ୍ଟରଣେ କୋମଳ ତାଣ୍ଡବଂ କୁମାରଂ ।

## ରାଗ ମୋହନା—ରୂପକ ତାଳ

( ମାନ ମୁଁ କରଥିଲି—ବୃତ୍ତେ )

ମାନସ ଭଜ ଗୋପାଳଙ୍କୁ । ନୃତ୍ୟ କୁଶଳ । କମଳ କୋମଳ
ଶ୍ରୀଚରଣ ଯୁଗଳକୁ । ମାନସ । ୧

ଆସ୍ୟ ନବନୀତ । ମାନସ । ବାସ ସୁପନ । କପଟ ରୋଦନ ।
କରରେ ନେଇ ପିଞ୍ଚିତ । ୨

ଚାତୁରୀ ଚୌରର । ମାନସ । ବାଣୀ ଜାଣ ଭଣିଲେ ପ୍ରତାପ ରୁଦ୍ର
ଦେବ ନୃପବର । ୩

—*—

ଶ୍ଳୋକ—ଅମୁନାଖିଳ ଗୋପ ଗୋପନାର୍ଥଂ
ଯମୁନା ରୋଧସି ନନ୍ଦ ନନ୍ଦ ନେନ
ଜମୁନା ବନ ସମ୍ଭବଃ ପପେ ଜମୁନା—
ସୌ ଶରଣାର୍ଥିନାଂ ଶରଣ୍ୟଃ ।

## ରାଗ ଭୈରବୀ—ଆଦତାଳ

( କୁଂଜ ଗଂଜନ ମୁଖୀ ଖଂଜନ ନେତ୍ରାନ୍ତରେ—ବୃତ୍ତେ )

ଏନଂଦ ସୂନୁ ସ୍ୱାଙ୍କ ନ କରିବେକ । ବିଷାଦ କାହିଁକ ହେ ?
ଛୁଆଇଁ ଚରଣ । ମୋକ୍ଷ କରି ଦେଲେ
ବୃକ୍ଷ ଯୁଗଳକୁ ମାନସେ ନାହିଁ କ ? ପଦ
ଯେ ଯମୁନା ତୀରେ ପଶୁପ ସୁତଙ୍କୁ । ଦାବାଗ୍ନି ଭୟରୁ ହେ
ବୁଜନ୍ତି ନୟନ ବୋଲି କଲେ ପାନ
ବନ ପରି ଆହା ! କହିକି ଦୂରନ୍ତୁ । ୧
ଶରଣାର୍ଥି ଭକ୍ତ । ଶରଣ୍ୟ ଏ ଖ୍ୟାତ । ଅଜାଣ୍ଡ କୋଟିରେ ହେ
ମଣି ଶ୍ରୀପ୍ରତାପ-ରୁଦ୍ର ଦେବଭୂପ ।
ଭଣିଲେ ସେ ମୂର୍ତ୍ତି ଭାବ ହୃଦୟରେ । ୨

—*—

ଶ୍ଳୋକଃ—ଜଗଦା ଦରଣୀୟ ଜାର ଭାବଂ
ଜଲ ଜା ପତ୍ୟ ବକ୍ଷେ ବପୁର ଗମ୍ୟଂ
ତନୁତାଂ ତନୁତାଂ ଶିବେ ତରୁଣଂ
ସୁରନାଥୋପଳ ସୁନ୍ଦରଂ ମହୋନଃ ।

## ରାଗଶ୍ରୀ—ରୂପକତାଳ

କୁଶ କରନ୍ତୁ ସେ କୃଷ୍ଣ ଶୁଭଶୁଭକୁ ଆମ୍ଭର ହେ । ପଦ ।
ଭୁବନ ଗୁରୁଙ୍କର ଆଦର । ଶ୍ରୀ ବ୍ରଜର ଜାରଭାବସାର
ବ୍ରହ୍ମାର ବ୍ରାହ୍ମୀ ଉତ୍ତର । ମୀମାଂସାରେ ସେ ଗୋଚର ହେ । ୧
ଶକ୍ରମଣି ମଦ ହରକାନ୍ତି । ମୂରଭିକ ନରବଧି ଚିନ୍ତ
ଭାବିଲେ ବୀର ପ୍ରତାପ-ରୁଦ୍ର ଦେବ ନୃପବର ହେ ।୨

ଶ୍ଳୋକଃ—ସଜଳ ଜଳଦନୀଳଂ ବଲ୍ଲବୀ କେଳି ଲୋଲଂ
ଶ୍ରିତସୁରତରୁମୂଳଂ ବିଦ୍ୟୁ ଦୁଲ୍ଲା ସିଚେଳଂ
କତସୁର ମୁନିଜାଳଂ ସନ୍ତୁନୋବମ୍ଭଲୀଳଂ
ସୁର ରିପୁ କୁଳକାଳଂ ନୌମି ଗୋପାଳ ବାଳଂ ।

## ରାଗ ପାନ୍ତ୍ରବରାଡ଼ି—ତାଳ ରୂପକ

( ପତ୍ତ୍ର ଲତାଲୁ ସନ୍ଦେଶ—ବୃତ୍ତେ )

ଜୟ ହାର ଶ୍ରୀ ଗୋପାଳ ବାଳଙ୍କୁ । ସ୍ଥିର ଚଳିତ ବୃନ୍ଦ
ମଦ ବଢ଼ନ୍ତ ପୀତବେଳଙ୍କୁ । ପଦ ।
ସଳିଳ ସଦ୍ଭର ଜଳଦମାଳ । ପଶୁପୀନବହ କେଳଲୋଳ
ସ୍ଥିତ ସୁମନସ ବଂଶପିମୂଳ । କୌଣପ କୁଳ କାଳଙ୍କୁ ।୧
ନମ୍ର ସୁର ମୁନୀନ୍ଦ୍ର ଜାଳଙ୍କୁ । ସାଧୁ ଜନକର ହୃଦୟ
ଆଦରଣ ସାକାର ଲୀଳଙ୍କୁ ।
ବ୍ରଜପୁର ଯୁବରାଜ ଶ୍ରୀଳ । ଅଖଣ୍ଡନ ନବ ଶିଖଣ୍ଡ ଚୂଳ
ପ୍ରତାପରୁଦ୍ର ହୃଦୟ କମଳ । ଅଳଧୃତ ବଂଶନାଳଙ୍କୁ ।୨



## ଶ୍ରୀ ରାଧାକୃଷ୍ଣ ପ୍ରାତଃ ସ୍ମରଣ ମୃତ

### ରାଗ—ନଳିନୀ ଗୌଡ଼ା

( ଗାନ କଳସା ବାଣୀ )

ନିଶି ଚତୁର୍ଥ ଯାମରେ ଶ୍ରୀ ନବଦ୍ୱୀପରେ
ଚେତ ଶଚୀସୁତ ବସି ପଲଙ୍କ ଉପରେ ।୧
ବୃନ୍ଦାବନରେ ଶ୍ରୀରାଧା କୃଷ୍ଣ ଉତ୍ଥାପନ
ଲୀଳାଶ୍ରବୁ ପ୍ରେମାବ୍ଧିରେ ମଗ୍ନହେଲା ମନ ।୨
ଅଥାନନ୍ତରେ ଶ୍ରୀ ବ୍ରଜେ ରତ୍ନସୁତା ଘରେ
ବୃନ୍ଦା ମିଳଲେ ନଭୃତ କୁଞ୍ଜ ଅଗଣାରେ ।୩
ବୃନ୍ଦା ଆଗମନ ହେଉଛୁ ଦ୍ୱିଜରାଜ ଧୀରେ
ବସିଲେ ମଧୁର ଧ୍ୱନି ଲତା ବଂଶପିରେ ।୪
ଦ୍ରାକ୍ଷାଲତାକୁ ଅଇଲେ ସାରିକା ନିକର
ମାରଜ ପର ମଣ୍ଡିଲେ ନିକୁଞ୍ଜ ଶିଖର ।୫

ରସାଳ ଶାଖାରେ ପିକ କରକରେ ଶୁକ
ପିଲୁରେ କପୋତ ଯମୁନାରେ ଚକ୍ରବାକ ।୬
ଅବନରେ କଲ୍ଲ ତାମ୍ରଚୂଡ଼ ଆମ୍ରେଡ଼ିତ
ହଂସଜାତରେ ରାଜହଂସ ବଂଶକଲେ ରୁତ ।୭

ଅନିଳ ବହିଲା ପଦ୍ମ ପରିମଳ ଘେନ
ଅଳି ଆଳି ମିଳିକଲେ କେଳିକୁଞ୍ଜେଜେଧ୍ୱନି ।୮
କୁଞ୍ଜ ପୁରତର ଭୃଙ୍ଗ ତୂଳରୁ କଳାପି
ଭ୍ରମନ୍ତେ ଅଇଲେ କେକା ବାଣୀକ ପ୍ରଳାପି ।୯

ବ୍ରଜବଧୂଙ୍କର ସୁରଙ୍ଗ ନାମ କୁରଙ୍ଗ
ପ୍ରିୟସୀ ସଙ୍ଗେ ହେଲା କୁଞ୍ଜ ଅଳିନ୍ଦରଙ୍ଗ ।୧୦
ଲଳିତା ଚମ୍ପକଲତା ଚିତ୍ରା ଇନ୍ଦୁଲେଖା
ତୁଙ୍ଗବିଦ୍ୟା ରଙ୍ଗଦେବୀ ସୁଦେବୀ ବିଶାଖା ।୧୧

ମଞ୍ଜରୀ ପ୍ରାନ୍ତ ରୂପ ରତି ଲବଙ୍ଗରସ
ଗୁଣବିଳାସ ହୋଇଲେ କୁଞ୍ଜ ଆସ ପାଶ ।୧୨
ଶ୍ୟାମଳା ବିମଳା ମଧୁମତୀ ଭଦ୍ରସାରୀ
ପାଳିଚନ୍ଦ୍ରମୁଖୀ ଆଦିଯେତେ ଯୁଥେଶ୍ୱରୀ ।୧୩

ସର୍ବେ ମିଳି ନିକୁଞ୍ଜ ପଞ୍ଜର ଜଳ ପାଶେ
ଲୀନ ହୋଇ ରହି ବିଲୋକନ୍ତି ଅନିମିଷେ । ୧୪ ।
ବହୁଳ ବିହଗ ରାବ ଗହଳରୁ କୁଞ୍ଜେ
ଗହଳେ ଚେତିଲେ ରାଧାକୃଷ୍ଣ ଫୁଲ ସେଜେ । ୧୫ ।

ନାଚିଲ କେଳି ସାକ୍ଷୀ ପଞ୍ଜରୀ ଶୁକ ସାରୀ
ସର୍ବେ ଡାକନ୍ତି ସ୍ୱ ସ୍ୱ ପ୍ରଭୁଙ୍କ ନାମଧର । ୧୬ ।
ଶୁକ ଭଣେ ଜୟ ଗୋକୁଳ-ମଙ୍ଗଳ କନ୍ଦ
ଜୟଶ୍ରୀ ବ୍ରଜ ଯୁବତୀ ଭ୍ରୂଭଙ୍ଗୀ-ଅରବିନ୍ଦ । ୧୭ ।

ଜୟ ପ୍ରଣତପଦ-ବିବର୍ଦ୍ଧିତ-ନନ୍ଦାନନ୍ଦ
ଜୟ ଜୟ ଗୋବିନ୍ଦ ଅଚ୍ୟୁତ ଶତାନନ୍ଦ । ୧୮ ।
ତେଜ ନିଦ୍ରା ଶ୍ରୀ ପୌର୍ଣ୍ଣମାସୀଙ୍କି ସଙ୍ଗେ କରି
ଶୟନ ମନ୍ଦିରକୁ ନିଯାଅ ଗୋଷ୍ଠେଶ୍ୱରୀ । ୧୯ ।

ଚଳ କୋଳରୁ ବିରଜି କୁଳଜା ରାଧାଙ୍କୁ
ଦେଖ ପ୍ରାଚୀ ଦିଗ ବହିଲାଣି ଅରୁଣକୁ । ୨୦ ।
ଧାତ୍ରୀ ଧୀରେ ଡାକେ ଜୟ ଜୟ ଶ୍ରୀ ରାଧିକେ
ଜୟ ବୃଷଭାନୁ ସୁତେ ଜୟ ଗାନ୍ଧର୍ବିକେ । ୨୧ ।

ଜୟ ଜୟ ଶ୍ରୀବୃନ୍ଦାଟବୀ-ପଟ୍ଟାଭିଷେକେ
ଜୟ ରାସେଶ୍ୱରୀ ଜୟ ହରି ପ୍ରାଣାଧିକେ । ୨୨ ।
ଉଠ ଉଠ ନକର ଶ୍ରୀବୃଷଭାନୁ କେମା
ବିଲୋକ ଚରମାଚଳେ ସମ୍ପୂର୍ଣ୍ଣ ଚନ୍ଦ୍ରମା । ୨୩ ।

ବିରଜି ବିରଜି ସୁବଲ୍ଲଭଙ୍କୁ ଏଥର
ସଜାଡ଼ଅ ନିଜ ଶଯ୍ୟା ସଦ୍ମକୁ ସତ୍ୱର । ୨୪ ।
ଅଭିମନ୍ୟୁ ଧରି ଆସିବଣି କ୍ଷୀର ଭାର
ଜଟିଳା ଡାକିବେଟି ଆତେବାର ଗର୍ଭାଗାର । ୨୫ ।

ନିରଳସେ ଭକ୍ତେ କରି ନିସରୁ ରଜନୀ
ନିଳୟୁର ମଙ୍ଗଳ କୃତ୍ୟ କର ସ୍ୱାମିନି । ୨୬ ।
ଧାତ୍ରୀ ଶିର ମନ୍ଦିର ହୋଇଲା ନିପତନ
ଶ୍ରୀ ରାଧା ହୃଦ କ୍ଷୀରାବ୍ଧି ମଧ୍ୟରେ ବନ୍ଧନ । ୨୭ ।

ସୁମନସ ଶେଜୁ ତୋଳି ଶ୍ରୀରାଧାଙ୍କୁ ଧିରେ
ପହୁଡ଼ାଇଲେ ଶ୍ରୀ ବ୍ରଜ ବଧୂ ହୃଦୟରେ । ୨୮
ମାତମୂଳେ ଥିଲୁ କଣ୍ଟକୀ ନାମେ ମର୍କଟୀ
ଡାକିଲୁ ଜଟୀଳା ଧଣିରି ଆଇଲେଟି ସଷ୍ଟି । ୨୯

କାହ୍ନା ଅଙ୍ଗେ କାହ୍ନାବାସ ନୋହିଲା ଗୋଚର
ସୋଦେବତ୍‌ରେ ନିକୁଞ୍ଜରୁ ହୋଇଲେ ବାହାର । ୩୦ ।
ଆସୁରାଧା ଆଳୀମାନେ ଲଳିତା ଘାଣକୁ
ହସି କରପ୍ରସାରି ସେ ନେଲେ ହୃଦୟକୁ । ୩୧ ।

ଲଲାମକ ପୁଷ୍ପ ସ୍ରଜ ସୀମନ୍ତ ମଧ୍ୟରେ
ଦିଶେ ମଦନ-ଜୟ ଶ୍ରୀପତାକା ପରିରେ । ୩୨ ।
ଇଳାବୃତ-ଧରଣୀରେ ଇନ୍ଦ୍ରଗୋପ ପରି
ଗଣ୍ଡର ତାମ୍ବୁଳ ବୋଳ ଦିଶୁଛି ମାଧୁରୀ । ୩୩ ।

ମଧୁସୂଦନ ସ୍ୱୀଡ଼ାନ୍ତ ବନ୍ଧୁଳିର ଛବି
ବହୁଛି ଅଧର ରୁଚି କଲେ ଆଳୀ ଗ୍ରବ । ୩୪ ।
ସିଥିଲ ସିନ୍ଦୂର ବିନ୍ଦୁ ଦିଶୁଛି ଏମନ୍ତ
ଅନୁରାଗ-ଲକ୍ଷ୍ମୀ ହେଲା ପରାଏ ଉଦିତ । ୩୫ ।

କନକ ଖଙ୍ଗରୁ ଭରିତାଳ ଜଳଧାର
ସ୍ରବିଲା ପରି ଖସି ଲୋଟୁଛି ପୀତାମ୍ବର । ୩୬ ।
ତେଣେ ବୃନ୍ଦୁଁ କିଶୋର ଚନ୍ଦ୍ରମା ଲଲାଟକୁ
ବ୍ୟକ୍ତ ହୋଇ ସିନ୍ଦୂର ମୋହୁଛି ମନକୁ । ୩୭ ।

କଳାଭୂପୁରଣ ଖସି ଯାଉଛି ଅଙ୍ଗରୁ
କାଳିନ୍ଦୀ ପରାଏ କଳିନ୍ଦ ମହୀଧରରୁ । ୩୮ ।
ପରସ୍ପରସୁଷମା ସକଳ ସଖୀ ହେଜ
ହେଲେ ହସା ହସି ସୁଖ ସୁଧାବ୍ଧିରେ ମଜ୍ଜି । ୩୯ ।

ଲଳିତାଙ୍କ କୋଳେ ରହି କାନ୍ଦିଦା କୁମାରୀ
ଡ଼ାକ ଡ଼ୋଳା ନାଗର ମଧୁକା ଧୂର୍ତ୍ତ ହରି । ୪୦ ।
କରେ ଥାଉ ବଂଶୀ ମୋ ମୁରଲୀ କାହିଁ ବୋଲି
ଧଇଲେ ଅନଙ୍ଗ ମଂଜରୀଙ୍କ ଭୁଜବଲ୍ଲୀ । ୪୧

ରାଧା ସହ ହସିଲେ ବଦନେ ଦେଇ ବାସ
ଡାକେ କଣ୍‌ଖଟୀ ତରୁଣି ହେଲାଣି ପ୍ରବେଶ । ୪୨ ।
ହେଜ କୃଷ୍ଣ ଚେତ ଅନଙ୍ଗ ମଞ୍ଜୁଷା ପାଣି
ଲଜେ ନଶୋଷା ମଣିଙ୍କି ମାଗିଲେ ମେଲାଣି । ୪୩ ।

ଅପାଙ୍ଗରେ ଅଙ୍ଗୀକାର କରୁ ଗଲେ ଚଳ
ଢାଳୀ ଚଳପରୁ ଛିନ୍ନ ହାର ମୋତି ଝୋଳ ।୪୪
କାଞ୍ଚି କାଞ୍ଚୁଲି ନୂପୁର ପତଦ୍‌ଗ୍ରହ ହଂସ
ଧରି ସ୍ୱାମମା ଗ୍ରହଣେ ଗଲେ ପରିଘୁଷା । ୪୫

ସେଜ୍ୟାଶଯ୍ୟା ନକେତନେ ପହୁଡ଼ିଲେ ଯାଇ
ସେ ଶ୍ୟାମଙ୍କ ପଦ ପଣନ୍ତରେ ପୋଛିଦେଇ ।୪୬
ପାହୁଡ଼ାଇ ଯତନେ ପ୍ରିୟ ପୀତ ବସନ
ଗୋପାଳକୃଷ୍ଣ କରଇ ପଦସମ୍ବାହନ । ୪୭

—*—

## ଶ୍ରୀକୃଷ୍ଣଙ୍କ କୈଶୋରାବସ୍ଥା

### ରାଗ ଝଂକୋଟି—ମିଶ୍ରରୂପକତାଳ

ମୋହନ ନୟନାଞ୍ଚଳ ନାଚାଲନ । ପଦ

ତନୁ ତମାଲ ବନରେ ତରୁଣ କେଶରୀ ଧୀରେ
ରହିବାର ହେଜ ଶିଶୁଦ୍ଧି ରତ ପୁଟିଲାନ । ୧
ନୀଳମଣି ଦରପଣ କଣିରତ୍ନ ସୂଚକ୍‌କଣ
ମକର କୁଣ୍ଡଳ ପ୍ରଭ ତମ୍ବିକୁ ଯଚାଲନ । ୨
ମୃଦୁ ମନ୍ଦହାସ-ଇନ୍ଦୁ ମିଶା ଭାଷାସୁଧା ବିନ୍ଦୁ
ଲପନ ଶରଙ୍କ ଶୀତ ମୟୂଖ ପିଞ୍ଜଲନ । ୩
ପଞ୍ଚୁତ ନାଗରୀଙ୍କର କୋଟିଏ କୋଟି ଜନ୍ମର
ସୁକୃତ ବିଟପି ଫଳ ଏଥର ପାଚିଲନ । ୪
ମଦନ ଲୁଟ ମନରେ ଯୁବତୀ ସୃଷ୍ଟି ଉପରେ
ଭୃକୁ ଭୃକୁ ଶରାସନ ଧରି ଆମନ୍ତ୍ରିଲ ନ । ୫

ଗୋପାଳକୃଷ୍ଣ ଭାଷନ୍ତ        ସାଧ୍ୱୀ ହୃଦୟ ହରଣ
ମାରଣ ଅଞ୍ଜନ ବାଣ ଭରନ୍ତି ରଚନ । ୭

—✻—

## ରାଗ ଖରହରପ୍ରିୟା—ମିଶ୍ରରୂପତାଳ

ଆସି ପାଇଛୁ ସିନା କରମକୁ
ରାଧା ରୁଷିବାର ଥାଇ ଶ୍ୟାମକୁ ଗୋ । ପଦ
ବ୍ରଜ ଯାକ ସବୁଭିତର        ସେ ବୃଷଭାନୁ ଜେମାର
ଏଥିରୁ ନଜାଣେ ତାର ଭ୍ରମକୁ । ୧
କେ ହେଲେ ବଲ୍ଲୀକଣ୍ଟକ        ସଜନ ଦୁହେଁ ଦୁହିଁକ
ଭ୍ରମରେ କରିବାର ଚରମକୁ । ୨
ଅପରାଧ କେତେଥର        କ୍ଷମା କରି ନାହିଁ ତାର
ଯାଉ ବୋଲି ପରିକରି ଭ୍ରମକୁ । ୩
ଆଳୀକି ଦେଖିଲେ ଯାର        ଓଢ଼ିବାର ପଣତାର
ହୁଏ ସେ ତେଜ ଲାଜ ସରମକୁ । ୪
ଜାଣି ସଜନି ଇଙ୍ଗିତ        ଗୋପାଳକୃଷ୍ଣ ଭଣିତ
କଲା ଦୋଷ ଭେଦନ୍ତି ମରମକୁ । ୫

—✻—

## ରାଗ ମାଣ୍ଡ ମାଳବ ଗୌଡ଼ା—ତାଳ ମିଶ୍ରରୂପ

( ନାହିଁ ମୋର ପୀରତି ସମକାର—ବୃତ୍ତେ )

ପୂରତରେ ଥିବାଯାଏ        ପୁରୁଷଙ୍କ ଚିତ୍ତରେ
ଜାଣ ଦରପଣ ପରକାର । ୧
ନରହିବ ବୋଲୁ ବୋଲୁ        ନୋହିବାରୁ ଛନ୍ଦରେ
ଆନ ଦେଇଥିଲେ ବାରି ବାର । ୨
ଦୁଃଖ ମଣୁ ନାହିଁ କାଳେ        ହେଲା ଦରଶନ ଭେ
ନଥିବାରୁ ସିନା ବୋଲିବାର । ୩

ଅଚ୍ଛକ ନାହିଁ ଖାବରେ ବୋଲି ହେଲେ ଥରେ ରେ
ପିବା ହମ୍ଭୁଁ ନ ପେଶିଲେ ସ୍ବର । ୪
ଗୋପାଳକୃଷ୍ଣ ପ୍ରବୋଧି ଦେବାର ଅବଧିରେ
ଲେଖିଲା ପତ୍ର ପାଣିରେ ଗାର । ୫



## ଶ୍ରୀରାଧା ଉକ୍ତି

## ରାଗ ଆନନ୍ଦ ଭୈରବୀ—ଆଦତାଳ

( ଅଳ କେଶର କୁଂଜରୁ ଅଇଲୁକ—ବୃତ୍ତେ )

ବଂଶୀ ବାଜୁଛି କାହାର କାନନରେ
ନବଘନ ନୀରଦ ନଶା ଗର୍ଜ୍ଜନରେ ।
ପୀୟୂଷ ପୂରିଛି କି-ଚା ଆନନରେ । ପଦ

କାଳନ୍ଦୀ ତଟରୁ ସନ୍ଧି ଆସୁଛି ଏ ନାଦ ବନ୍ଧି
ଏ ବରଜ ନଗରକୁ ସମାନରେ । ୧
ମନ ମଥର ମୋହନ ମନ୍ତ୍ରର ମିତଣୀ ଘେନ
କରିବ ସୁବଶ ସୃଷ୍ଟି ଭଜନରେ । ୨
ସନକ ସନନ୍ଦନାଦି ଯୋଗିଜନ ମନ ଭେଦି
ଛଡ଼ାଇ ଦେବନ ବ୍ରହ୍ମଧିଆନ ରେ । ୩
ଯେ ହେଉ ସେ ବଂଶୀ ବଜା ନଷ୍ଟେ ଛଡାଇବ ଲଜ୍ଜା
ସାରିଦେବ ପତିବ୍ରତା ଗୁମାନରେ । ୪
ଶ୍ରୁତିରେ ସୁଧା ବରଷା ହୃଦୟରେ କଣିକସା
ବହୁଛି ତନୁ ସ୍ବର ହୁତାଶନ ରେ । ୫
ଗୋପାଳକୃଷ୍ଣ କହଇ ସ୍ବାମିନ ଭ୍ରମର ପାଇଁ
ବଜାଉଛନ୍ତି ବ୍ରଜେନ୍ଦ୍ର ନନ୍ଦନ ରେ । ୬



## ଶ୍ରୀ ରାଧାଗୋବିନ୍ଦ କୀର୍ତ୍ତନ

ବୃନ୍ଦାରଣ୍ୟ ସାର୍ବଭୌମ ଦମ୍ପତି । ରାଧାଗୋବିନ୍ଦ ।

ସର୍ବ ବ୍ରଜବାସୀ ନେତ୍ର ସମ୍ପତ୍ତି । ରା । ୧ ।
ମହାଭାବୋଜ୍ଜ୍ୱଳ ରସ ଶ୍ରୀ ମୂର୍ତ୍ତି । ରା ।
ରାକାବନ୍ଧୁ ବିଜୟୀ ବଦନଦ୍ୟୁତି । ରା । ୨ ।
ସର୍ବାଶ୍ରୟ ସର୍ବଗ ସନାତନ । ରା ।
କିଶୋର ବୟସ ନିତ୍ୟ ନୂତନ । ରା । ୩ ।
ଗୋକୁଳେଶ୍ୱରୀ ବାତ୍ସଲ୍ୟ ସଦନ । ରା ।
ନିଜ ପରିଜନ ଜୀବ ଜୀବନ । ରା । ୪ ।
ଗୋଷ୍ଠକୁଳଜା ନିକର ବେଷ୍ଟିତ । ରା ।
ନାନାରତ୍ନାଲଙ୍କାର ବିଭୂଷିତ । ରା । ୫ ।
ରାସ ମଣ୍ଡଳ ମଧ୍ୟେ ବିରାଜିତ । ରା ।
ଚାରୁ ସରସୀ ରୁହ ବଂଶୀହସ୍ତ । ରା । ୬ ।
ଆହା ଫୁଲଶେଜ ଉଜେ କଲର । ରା ।
ପରସ୍ପରଙ୍କ ରଙ୍ଗରେ ମଜ୍ଜିବାର । ରା । ୭ ।
ଗଣ୍ଡେ ଗଣ୍ଡ ଦେଇ ଜଳ୍ପିସି ବାର । ରା ।
ଆଳି ଦେଖିବେ ବୋଲି ଶଂକାବାହି । ରା । ୮ ।
ହରିପୁର ସୁଧୀ ପରି ବଚନ । ରା ।
ସଜକଞ୍ଜ ସୁରଭି ନିଶ୍ୱାସନ । ରା । ୯ ।
ମନ୍ଦମୃଦୁ ମଧୁ ଗନ୍ଧ ହସନ । ରା ।
କଳାକାର ଶତ ଶୀତାପଘନ । ରା । ୧୦ ।
ଏକ ଫୁଲମାଳା ବେନିଗଳାରେ । ରା ।
ଗୀତ ମିଶାଇ ବଂଶୀ ନିସ୍ୱନରେ । ରା । ୧୧ ।
ସହୁଚୁମ୍ବ ରଚନା ପରସ୍ପରେ । ରା ।
କର ନିବେଶି ଚାରୁ ଚିବୁକରେ । ରା । ୧୨ ।
ପଶାଖେଳ ବେଳ ବସାସୁଷମା । ରା ।
ମନ ମୋହର ଚୁମ୍ବକ ପ୍ରତିମା । ରା । ୧୩ ।

ଆହା ପୁଲକ ବାର ଗଣ୍ଡ ସୀମା । ରାଧାଗୋବିନ୍ଦ ।
ଲଜ୍ଜା ହର୍ଷ ମିଶ୍ରିତ ମଧୁରିମା । ” । ୧୪ ।
ମଧ୍ୟାହ୍ନରେ ସୂର୍ଯ୍ୟାବତସ୍ଥଳରେ । ”
କେବେ ନ ଦେଖିଲ ପର ବଦନରେ ” । ୧୫ ।
ପ୍ରେମ ପୁଲୁଷ ହୁକ୍କସ୍ୱ ସଙ୍ଗରେ । ”
କରିବାର ସଂଲାପ ପରସ୍ପରରେ । ” । ୧୬ ।
ବିଳସିବାର ବ୍ରଜେନ୍ଦ୍ର ପୁରରେ । ”
ବରବ୍ରତା ବଧୂ ପୁଣ୍ୟ ପର୍ବରେ । ” । ୧୭ ।
ଗୋଷ୍ଠେଶ୍ୱରୀଙ୍କ ଆନନ୍ଦାମୃତ ନିଧି । ”
କରୁଥିବାର କେତେପରି ବୃଦ୍ଧି । ” । ୧୮ ।
ଜନ ଗୋଷ୍ଠୀରେ ହେଲ ଅନା ଅନ । ”
କି ତୁଳନା ହେବ ତୁଚ୍ଛ ଦାମିନୀ । ” । ୧୯ ।
ଗୋବର୍ଦ୍ଧନ କନ୍ଦରର ବିହାର । ”
ବନ ପିଲୁଳାକୁ ଭିଲୋକ ବାର । ” । ୨୦ ।
ରତ୍ନ ରସବଣରେ ପ୍ରକୋଷ୍ଠରେ । ”
ବ୍ରଜେଶ୍ୱରୀଙ୍କ ଆନନ୍ଦ ସିନ୍ଧୁରେ । ” । ୨୧ ।
ମଜ୍ଜାଇ ଦେବାରେ ଦରଶନରେ । ”
ରହିଥିବାର ନିଜ ହରଷରେ । ” । ୨୨ ।
ପ୍ରିୟ ଲକ୍ଷଣକୁ ବୁଝାଇ ବାର । ”
ଆଳୀ ଗଳ ବୃନ୍ଦ ବରଜବୀର । ” । ୨୩ ।
ଦୁହେଁ ମଜ୍ଜାଇ ଉରକୁ ଉରରେ । ”
ଗୁଡ଼ ବୋଲିବାର ଅତି ଲଜରେ । ” । ୨୪ ।
କୋଟି ବ୍ରହ୍ମାଣ୍ଡେ ନଥିବ ସୁନ୍ଦର । ” ।
ତନୁ ଅଳଙ୍କାରର ଅଳଙ୍କାର । ” । ୨୫ ।
ଲୋକତ୍ତର ଗୁଣମଣି ମନ୍ଦିର । ” ।
ଆହା ନୀଳ ପୀତ ଚେଳ ଲାଗିର । ” ।୨୬ ।
ସଦା ବିଳାସ ନିକୁଞ୍ଜ ଆରଣ୍ୟ । ”
ଅବଚଳିତ ଯେ ନବ ତାରୁଣ୍ୟ । । ୨୭ ।

ଶରଣାର୍ଥୀର ପରମ ଶରଣ୍ୟ । ରାଧାଗୋବିନ୍ଦ ।
ସ୍ୱୀୟ ପ୍ରଣୟୁ ପୀୟୂଷ ବଦାନ୍ୟ । " । ୨୮ ।
ଏକ ଆଦରଣକୁ ବୃନ୍ଦେଁ ଦ୍ୱାର । "
ହରଷରେ ହସା ହସି ହେବାର । " । ୨୯ ।
ପଟାଞ୍ଚଳରେ ଝାଳ ପୋଛିବାର । "
ଉର ଉପରେ ଆଉଜାଇବାର । " । ୩୦ ।
ଚନ୍ଦ୍ର ଚନ୍ଦନ ଚର୍ଚ୍ଚିତ ପ୍ରଷ୍ଠକ । " ।
କଣ୍ଠୋ ଭୂଂସିତ ସପନ ଚମ୍ପକ । " । ୩୧ ।
ହୃଦ ହାରରେ ଅଶୋକ ସ୍ତବକ । "
ହା ସିନ୍ଦୂର ଗୋରଚନା ତିଳକ । " । ୩୨ ।
ବୃନ୍ତୁ ଅଳକା ବଳ ଶ୍ରୀ ଅଳକ । "
ସୁଷ୍ଠ ଝିଙ୍ଗ କେକପୁଚ୍ଛ ମସ୍ତକ । " । ୩୩ ।
ଆହା ନାସାଭୂଷା ନବ ମୌକ୍ତିକ । "
ଚରମରେ ପ୍ରଲମ୍ବ କୁନ୍ଦସ୍ରକ । " । ୩୪ ।
ଛିଡ଼ିଲାକ ମୋତିହାର ହୃଦରୁ । "
ଗୁନ୍ଥିବାର ଗୋଟିଆଇ ଶେଯରୁ । " । ୩୫ ।
ଖସି ପଡ଼ିଲାର ସ୍ରଜ କେଶରୁ । "
ଠାରି ଦାସୀଙ୍କି ଦେବାର କରରୁ " । ୩୬ ।
ଚନ୍ଦ୍ର କିରଣେ କୁଞ୍ଜ ପ୍ରାଙ୍ଗଣରେ । "
ମନ୍ଦ ଗନ୍ଧ ଶୀତ ସମୀରଣରେ । " । ୩୭ ।
ବଜେ କରି ପ୍ରିୟସଖୀ ଗଣରେ । "
ଆହା ସୁହେଲୀ ପ୍ରଶ୍ନ କୁତୁକରେ । " । ୩୮ ।
ଆସୁ ଆସୁ କାନନ୍ତୁ ଅନ୍ତାକରେ । "
ଭଲ୍ଲି ଭେଟ ହେବାର ସରଣୀରେ । " । ୩୯ ।
ନିଧି ପ୍ରାପ୍ତି ପରିଏ ନର୍ତ୍ତନରେ । "
ମୁଦ ହେବାର ଆହା ପରସ୍ପରେ । " । ୪୦ ।
ଗାଢ଼ ନବ କାଦମ୍ବିନୀ ନିଶାରେ । "
ପରଷ୍କୃତ ହୃଭୁର ସଙ୍କେତରେ । " । ୪୧ ।

ମିଳବାର ସଦନ ବାଟିକାରେ । ରାଧାଗୋବିନ୍ଦ ।
ଗୁହ୍ନିଁ ଚଉଦ୍ଵାରକୁ ସଭୟରେ । " । ୪୨ ।
ଆକର୍ଷିଲେ କେ ଓଟାରି ଦେବାର । "
ଲାଗି ବାସକୁ ହୋଇ ଡର ଡର । " । ୪୩ ।
ନାକ ଟେରେ ଶୁଭିଲେ ଆଳୀ ଗିର । "
ଲତା ଗୃହକୁ ପଳାଇ ଯିବାର । " । ୪୪ ।
ପାଶ ଗଲେ କୁଙ୍କୁମେ ବୋଳି ସହି "
ବଦନକୁ ଗୁହ୍ନିଁ କେ କେ ନଗୁହ୍ନିଁ । " । ୪୫ ।
ହସି ଦେବାର କଥା କୁହାକୁହି । "
ଦ୍ଵିଷ୍ଟାସୁ ବୋଲାଦାର କେହି ନାହିଁ । " । ୪୬ ।
ଜୃମ୍ଭା ଆସିଲେ ଅଙ୍ଗୁଳି ଶବ୍ଦ । "
କରି ହସି ହୋଇବାର ଆନନ୍ଦ । " । ୪୭ ।
ପୁଣି ଲେଖାଇ ଦାଉ ଗୁହ୍ନିଁବାକୁ । "
କଣ୍ଠ କଣ୍ଠରେ ଟେକ ପଦ୍ମଲକୁ । " । ୪୮ ।
ଆହା କୁଞ୍ଜ ପ୍ରାଙ୍ଗଣେ ମଧ୍ୟାହ୍ନରେ । "
ପଦ ନଖରେ ଲଲାଟ ପଟରେ । " । ୪୯ ।
ସ୍ଵ ସ୍ଵ ପ୍ରତିବିମ୍ବକୁ କୁତୁକରେ । "
ବିଲୋକିବାର ଆଳୀ ସମକ୍ଷରେ । " । ୫୦ ।
ଆହା ମଧୁପାନେ ହୋଇ ପ୍ରମତ୍ତ । "
ହାସ ଯୁତ ଲୁପ୍ତବର୍ଣ୍ଣ ଭାଷିତ । " । ୫୧ ।
ହା ଖଞ୍ଜନ ନୟନ କଷାୟିତ । " ।
କ୍ଷଣେ ଚକିତ କ୍ଷଣେ ଆଘୂର୍ଣ୍ଣିତ । " । ୫୨ ।
ପ୍ରାତଃ ନସ୍ଵମ ଶ୍ରୀ ମୁଖ ଲୋକନ । "
ପଦ୍ମ ଫିଟାଇ କରୁ ଦରଶନ । " । ୫୩ ।
ପ୍ରେମ ସୁଧାବ୍ଧିରେ ହୋଇ ମଗନ । "
ଦେଇ ଚୁମ୍ବନ ହେବାର ପ୍ରଚ୍ଛନ୍ନ । " । ୫୪ ।
ପରଂପଦରେ ଗୀତ ଯାର କୀର୍ତ୍ତି "
ଭାବୁଛନ୍ତି ଶ୍ରୀ ଲୀଳାଦ ସତ୍ତା । " । ୫୫

## ରାଧାକୃଷ୍ଣଙ୍କ ନିଗୂଢ଼ ପ୍ରେମଲୀଳା



ସ୍ୱ ସ୍ୱ ପ୍ରଭୁ ସ୍ୱାମୀଙ୍କୁ କୁତୁକରେ
ସ୍ୱଲେଙ୍କବାର ଆଳୀ ସମକ୍ଷରେ । ୫୨ ।
ଆହା ମଧୁପାନେ ହୋଇ ପ୍ରମତ୍ତ
ହାସ ସୂତ୍ର ଲୁପ୍ତ ବର୍ଣ୍ଣି ସ୍ଖଳିତ । ୫୨ ।
( ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ୧୩୪ ପୃଷ୍ଠା )

ଯୋଗୀ ସଦା ଚିନ୍ତୁଛନ୍ତି ଯା ମୂର୍ତ୍ତି ରାଧାଗୋବିନ୍ଦ ।
ଅସମ ଉନ୍ନତ ସୁଷମା ପ୍ରୀତି । " । ୫୬ ।
ଦୁହେଁ ନିକୁଞ୍ଜ ପ୍ରଦୀପ ପାଶରେ । "
ରସ କାବ୍ୟ ପଢ଼ି ପଢ଼ି ପୋଥିରେ " । ୫୭ ।
ଗଣ୍ଡ ସ୍ଥଳକୁ ମିଶାଇ ଗଣ୍ଡରେ । "
ମଜ୍ଜିବାର ଆହା ଭାବ ଭାବରେ । " । ୫୮ ।
ରାସ ନର୍ତ୍ତନର ଅନୁରଞ୍ଜନ । "
ଆହା ତ୍ରୈଲୋକ୍ୟ ଲକ୍ଷ୍ମୀର ସଦନ " । ୫୯ ।
ରୂପ ଚରାଚର ପ୍ରାଣୀ ମୋହନ । "
ଦ୍ୟୁତି ତଡ଼ିତ ଲତା ନବଘନ । " । ୬୦ ।
କେବେ ସେ ରୁଷିଲେ ଆହା କାହାକୁ । "
ଚୁହିଁ ଥିବାର ଲଳିତା ଆଡ଼କୁ । " । ୬୧ ।
ତାଙ୍କ ଭରଷାରେ ରୋଷ ତୋଷକୁ । "
ତେଜ ମିଶି ଯୋନବାର କ୍ଷଣକୁ । " । ୬୨ ।
ଦୁହେଁସାକ ଦେହ ପ୍ରାଣ ପରସ୍ପେ । "
ଦୁର ହେବାର ନାହିଁ ଯେ ଘଡ଼ିଏ । " । ୬୩ ।
ଅନୁବ୍ରତ ସ୍ନେହରେ ଜରଜର । "
ସବୁବେଳେ ଅଧୀନ ଆଳୀଙ୍କର । " । ୬୪ ।
କୁଞ୍ଜବନେ ଲୁଚିଲୁଚି ଖେଳରେ । "
କ୍ଷଣେ ଦେଖା ନ ଦେଲେ ବିକଳରେ " । ୬୫ ।
ପୂରିଯାଇ ନେତ୍ର ଅଶ୍ରୁ ଜଳରେ । "
ଆହା ପୋଛି ପୋଛି ଚେଳାଞ୍ଚଳରେ " । ୬୬ ।
ହଜି ହେଲା ମୋ କଣ୍ଠ ଆଳୀଙ୍କି । "
ବୋଲିବାର ଏଥର ଧନ୍ୟ ଡାକ " । ୬୭ ।
ଚିନ୍ତୁ ଗୋପାଳ କୃଷ୍ଣ ସେ ଚରଣ । "
ପ୍ରାଣ ସମର୍ପି ପଶିଲୁ ଶରଣ । " । ୬୮ ।

—*—

## ରାଗ ବେହାଗ—ଏକତାଳ

ମୋହନ ମାଧୁରୀ ଦେଖିଥିଲ ନାରୀ
ନଦ ଯିବ କି ଆଉଣରେ । ପଦ ।

ଦୃଷ୍ଟି ପାତ ଠାରେ ଅନୁ କରତରେ
ଛନ୍ଦ ହସିବ ତାହାର ରେ
ପ୍ରାଣକୁ ଆଣିଲ ପର ଲାଗୁ ଥିବ
ହସି ହସି ବଂଶୀଧାରୀ ରେ । ୧ ।

କି ସନ୍ତକ ନାହିଁ କେଉଁ ଦେବତାଙ୍କୁ
ତା ପ୍ରୀତି ପାଇଁ ତୁ ହାର ରେ
ସବୁ କରତ କରବ କୋଲୁଥିଲ
ପାଇଲେ କୁଞ୍ଜ ବିହାରୀ ରେ । ୨ ।

କୃଷ୍ଣ ବୋଲି କେଣେ କାହିଁକି କେ ତେଣେ
ଡାକଲେ ପୁରୁ ବାହାର ରେ
ଚଉଦିଗକୁ ଗୁହିଁ ମୋର ମୋହରେ
ହୋଇ ନ ଯିବକି ଘାରରେ । ୩ ।

କଳାଦଳା ଗୁରେ ନିକୁଞ୍ଜ କୁଟୀରେ
ନପ୍ରାନ୍ତ କାଳ ବସ୍ତ୍ର ରେ
ମିଳନ୍ତା ପାଇଁକି କେତେଥର ହେଲେ
ଆଣି ନଯିବକି କାଉରେ । ୪ ।

ସୁଗୁଣ ସୁନ୍ଦର ପଣପାକ ଗୁଣି
ଏକାଇ ତାକୁ ହୃଆର ରେ
ବୋଲେ ଗୋପାଳକୃଷ୍ଣ ଭାବ ଥିଲେକ
ଯିବ ମନରୁ ପାସୋରି ରେ । ୫ ।



# ସ୍ୱାନୁଭୂତ

## ରାଗ ଆନନ୍ଦ ଭୈରବୀ—ଆଦ୍ୱତାଳ

( ଅଳି ! କେଶର କୁଞ୍ଜକୁ ଅଇଲୁକି—ବୃତ୍ତେ )

କଲ୍ପେ ଜିଇଥିଲେ କିସ କରିବରେ
ସଂକଳ୍ପ ଯଦି ଥରେ ନ ପୂରିବରେ । ୦ ।
ବୃନ୍ଦାବନ ଅପ୍ରାକୃତ । ମଦନ ବଚନାମୃତ
ଯା ଶ୍ରୁତି ପଥରେ ନ ସଂଚରିବ ରେ । ୧ ।
ନୀଳୋତ୍ପଳ ମୃଗମଦ । ଶ୍ୟାମଳ ତନୁ ଆମୋଦ
ବାୟୁ ଯା ନାସାରେ ନ ପ୍ରସରିବ ରେ । ୨ ।
ଶଶୀ ଶୋଭା କୃଶ କରି । ବଂଶୀ ବସା ମୁଖ ଶିରି
ଯା ଈକ୍ଷଣେ କ୍ଷଣେ ନ ବିହରିବ ରେ । ୩ ।
ସୁଧାଗର୍ବ ଖର୍ବୀକୃତ । ହରି ତାମ୍ବୁଳ ଚର୍ବିତ
ଲବ ନ ଲଭି ଯେ ଦିନ ହରିବ ରେ । ୪ ।
ପର୍ବ୍ବ ବିଧୁ ଶୀତଳ । ମୋହନ ଶ୍ରୀ ବକ୍ଷସ୍ଥଳ
ସ୍ୱପ୍ନେ ହେଲେ ସ୍ପର୍ଶି ନପାରିବ ରେ । ୫ ।
ଗୋପାଳକୃଷ୍ଣ କହଇ । ସେ ପାଦପଦ୍ମ ନ ପାଇ
କାହିଁ ପାଇଁ ପ୍ରାଣ ଆଉ ଧରିବରେ । ୬ ।



## ରାଗ ହରି କାମ୍ବୋଦି—ତାଳ ମିଶ୍ରରୂପ

ମାଧୁର୍ଯ୍ୟ ରେ, ମାଧୁର୍ଯ୍ୟ ରେ, ଆହା ମାଧୁର୍ଯ୍ୟ
ନିକୁଞ୍ଜକୁ ବ୍ରଜେ କରିବାର ରସେଶ୍ୱର୍ଯ୍ୟ । ପଦ ।
ପ୍ରଫୁଲ୍ଲିତ ବୃକ୍ଷବଲ୍ଲୀ ଭ୍ରମର ଗୁଞ୍ଜନ
କାଳିନ୍ଦୀ କୁମୁଦ ବନ ଶୀତଳ ପବନ । ୧ ।
ତ୍ରୈଲୋକ୍ୟ ଲକ୍ଷ୍ମୀ ବସନ୍ତ କାନ୍ତ ରୂପ ଧାଇ
ପଦ ବିନ୍ୟାସ କଲାର ଧୀର ଧୀର ହୋଇ । ୨ ।

ତମାଳକୁ ଛୁଇଁ ଶ୍ୟାମ ଭ୍ରମେ ତରମକୁ
ଦୁଷ୍ଟବାର ଗାଢ଼େ ଧରି ଲଳିତା ଭୁଜକୁ । ୩ ।
ଉଦ୍‌ବେଗ ଝୁପଲ୍ଲୀ ଭ୍ରମ ପ୍ରଣୟ ଦରଷ
ସ୍ୱେଦ କମ୍ପ ପୁଲକରେ ଶ୍ରୀଅଙ୍ଗ ଅବଶ । ୪ ।
ପ୍ରାଙ୍ଗଣେ ଜୀବନ ବନ୍ଧୁ ଶ୍ରୀ ମୂର୍ତ୍ତିଙ୍କ ଛୁଇଁ
ଚରଣ ନ ଚଳେ ଲାଜେ ବଳାଇଲେ ସଖୀ । ୫ ।
ଖସି ଯାଇ ମାଳ ଉପୁରାଣ ମସ୍ତକରୁ
ଅଧୋମୁଖେ ରହିଲର କନକ ରମ୍ଭୋରୁ । ୬ ।
ଗୋପାଳକୃଷ୍ଣ ଭଣେ ନାଗର ଚକ୍ରବର୍ତ୍ତୀ
ଉଷା ଦେବାର ସଖୀଙ୍କ ସନ୍ନିଧେ ଶ୍ରୀମୂର୍ତ୍ତି । ୭ ।

—*—

## ରାଗ ନାଦନାମକ୍ରିୟା—ଆଦିତାଳ

( କେତେ କାଳକୁ ମୁଖ ଦେଖିଲି ଆଜ—ବୃତ୍ତେ )

ଏ ଘନ ଦିନ ଏକା କେବେ କେ କରି
ପାମର ଦଇବ କଲା ଆହା ଏତେ ସରି, ସଖି । ପଦ ।
ଶୁଣି ଭେକ କେକୀ ନାଦ ପରମାଦସୁ ପ୍ରମାଦ
କି ହେଉଥିବ ସେ ହୃଦ କର ସହଚଙ୍କ, ସଖୀ । ୧ ।
ଝଂଟକେ ଅନା ବିଦ୍ୟୁତ ମତ୍ତେ ଅଳି କରେ ରୁତ
କହେ ମାଳତୀ ମରୁତ ଡାକୁଛି ଝିଙ୍କାରି, ସଖି । ୨ ।
ଯିବାକୁ ମାଗୁ ନେଲଣି ମୋତେ ମୋର ଗୁଣମଣି
ନିଷେଧିଲ ପୁଣ ପୁଣି ଶିରେ କର ଧରି, ସଖି । ୩ ।
ରଖି ନୟନର ନୀର ଲେଉଟି ବିଲୋକିବାର
ଫାଟି ଯାଉ ନାହିଁ ଉର ସେ ରୂପ ସୁମରି, ସଖି । ୪ ।
ଗୋପାଳକୃଷ୍ଣଙ୍କୁ ମୋର ପ୍ରବାସ କଷ୍ଟ ଶଙ୍କର
ଏହିବାରକ ଉଦ୍ଧର କହୁଛି ଜୁହାରି, ସଖି । ୫ ।

—*—

## ରାଗକାଫି—ଆଠତାଳୀ

( ଇନ୍ଦୁରେ ପଶିଣ ବନ୍ଧୁ ଟେକ ମଥା—ବୃତ୍ତେ )

ମୁଁ କି ମୂଢ ବୁଦ୍ଧି କଲିରେ ରୂପ ନିଧି । ପଦ ।
ଆଳୀ ବଦନରୁ ଶୁଣି ମୋ ନିଷ୍ଠୁର ଗିର
ଜ୍ୱଳ ଜ୍ୱଳ ତେଜି ଦୀର୍ଘ ନିଶ୍ୱାସ ସମୀର
ସ୍ୱାନ୍ତେ ଶାନ୍ତିକ ଭକ୍ତି ଅନୁରାଗ,ଅଙ୍କୁର
ଭର୍ଜି ଦେବ କି ହୁଣ୍ଡିଲେ ରେ । ୧ ।
ପ୍ରେମ ଦ୍ରୁମରେ ଫଳିଥିବା ଫଳ ବିଧାତା
କାହିଁ ଜନ ମାଇଲା ପରୀକ୍ଷା ପିଶୁନତା
ମୂଳରୁ ମୁଁ ଛିନ୍ନାଇଲି ରେ । ୨ ।
ତ୍ରୈଲୋକ୍ୟ ଲକ୍ଷ୍ମୀ ବପନ୍ତି ନବନୀତ ଦେହୀ
ଚଣ୍ଡାଳ ମଦନ ଶର କଦନ ନ ସହି
ପ୍ରାଣ ବିସର୍ଜିବି ପରି ଆଳୀଙ୍କି ନ କହି ।
ବିନା ଦୋଷେ ଦଣ୍ଡ ଦେଲିରେ । ୩ ।
ରାଧା ବୋଲି ପରିତୋଷ ହେଉଥାଉ ମନ
ବେଳେ ଦେଲେ ସ୍ୱଚ୍ଛ କରି ସେ ଶ୍ରୀ ଚନ୍ଦ୍ରାନନ
ଆହା ଦେଖି ନପାରିଲି ରେ । ୪ ।
ବୋଲୁ ଶୁଣୁଥିଲା ଗୋପାଳ କୃଷ୍ଣ ଭଣିଲା
ଆପଣାର ଅଙ୍ଗ ଉତ୍ତୀର୍ଣ୍ଣ ରଙ୍ଗଣ ମାଳା
ଶ୍ରୀ କଶୋଶମଣି କଣ୍ଠେ ଶୋଭା ପାଉଥିଲା ।
ଏକ୍ଷଣି ଦେଖି ଆଇଲି ରେ । ୫ ।



## ରାଗ ଧନାଶ୍ରୀ—ଆଦିତାଳ

( କି ଆରେ ମନ ଧନ ଗେଲ ହରିବୋଲନା—ବୃତ୍ତେ )

କାହିଁକି ମନ ନ ଧ୍ୟେଉ ତୁ କେତେ କହିଲେ
ଶ୍ରୀ ରାଧାକୃଷ୍ଣ ପଦାବ୍ଜେ ରହିଥା ବୋଇଲେ । ପଦ ।

ପରମ୍ପରାରେ ଲୋକରେ ନାହିଁ ତ ସେ ସଦ୍‌ଗୁଣରେ
ଗଣନା ହୋଇବୁ ତାଙ୍କ କିଙ୍କରୀଙ୍କ କୁଳେ । ୧ ।

ଅଧୀମାଧୀଶ ମାଧୁରୀ ସ୍ୱଚ୍ଛନ୍ଦରେ ଅବଧାର
ଯେମନ୍ତ ସୁଖ ଲଭିବୁ ହେଜିବୁ ସେ କାଳେ । ୨ ।

ତୋ ସ୍ୱାମିନ ସ୍ୱାମିଙ୍କର ଶ୍ରୀ ବୃନ୍ଦାରଣ୍ୟ ବିହାର
ଦେଖି ଭାସିବୁ ପୀୟୂଷ ବାରିଧି କଲ୍ଲୋଳେ । ୩ ।

ରାସେଶ୍ୱରୀ ରାସେଶ୍ୱର ହୃଦରେ ଆଭଜବାର
ରାସାବସାନେ ସେବିବୁ ବସୁରୀ ଫୁଲେ । ୪ ।

ଦିବ୍ୟନେତ୍ର ପ୍ରେମାଞ୍ଜନ ରଞ୍ଜି କରି ଆଲୋକନ
ରତ୍ନରତ୍ନ ଚିନ୍ତାମଣି ସିଂହାସନ ତଳେ । ୫ ।

କୁଣ୍ଠିତ ବିଷୟ ଭୋଗ ଆଶାରେ ହୁଅନା ଯୋଗ୍ୟ
ଗୋପାଳକୃଷ୍ଣ ବୋଲଇ ମଜ୍ଜ ଅଭିକଳେ । ୬ ।

*-*-*

# ପ୍ରାର୍ଥନା

## ରାଗ ମୁଖାରୀ—ମିଶ୍ରରୂପ

( କଣେଶାର ମଣି ଗୀତ—ବୃତ୍ତରେ )

ଶଚୀ ନନ୍ଦନ । ପାହି ପ୍ରଭୋ ଦୟାନିଧେ । ପଦ ।

ମୂର୍ତ୍ତି ସନାତନ । ଆନନ୍ଦ ବର୍ଦ୍ଧନ
ନିଗମବନଗୂଢ଼ । ଜନ ପ୍ରଚ୍ଛନ । ୧ ।

ହେମାବ୍ଜ ନନ୍ଦନ । କୋମଳାସ୍ପନ୍ଦନ
ପରାର୍ଦ୍ଧ ମଦନ କର୍ଦ୍ଧିତ ଶୋଭନ । ୨ ।

ସ୍ୱୀୟପ୍ରେମଧନ । ବଦାନ୍ୟ ଚୈତନ୍ୟ-
ଚନ୍ଦ୍ର ମୁନୀନ୍ଦ୍ର ଧ୍ୟେୟ ଦୁଃଖ ଧ୍ୱଂସନ । ୩ ।

ସ୍ୱରୂପଗଣବନ । ରୂପ ହୃଦ୍‌କେତନ
ସନାତନ ମାନସ ନଳିନନନ୍ଦନ । ୪ ।
ପ୍ରସୂ ସଙ୍କୀର୍ତ୍ତନ । ପଣ୍ଡିତ ନର୍ତ୍ତନ
ଗୋପାଳକୃଷ୍ଣ ହୃତ୍ତମ ବିକର୍ତ୍ତନ । ୫ ।

—*—

## ରାଗ ସାବେରୀ—ଏକତାଳି

( ଗଳଶିର ଗଳ କଥାରେ ସଂଗାତ—ବୃନ୍ଦେ )

ପରସ୍ପର କେଣେ ମନରେ ମିଳଣି !

ହୃଦରେ ଆବେଶ ହୋଇଛନ୍ତି କି ରେ ଶ୍ରୀ ବୃନ୍ଦାରଣ୍ୟ ମଦନ ।ପଦ।
ଲଳିତାଙ୍କି ମୁହିଁ ଲଳିତା ଡ଼ାକୁଛି ଏଣେ ଦେଉନାହୁଁ କାନ
କି ମଜ୍ଜିଛି ଚିତ୍ତ ଆରେ ପ୍ରାଣମିତ ଡ଼ାକୁତ ନାହୁଁ ନୟନ । ୧ ।
ଆସୁ ଆସୁ ମୁଁ ପାଖେଟି ଆସିଆଗେ ହୋଇ ଯାଉ ସେ ପ୍ରସନ୍ନ
ସ୍ମେରିସୀ ବିଦ୍ୟୁଲତା ପରିରମ୍ଭ ପଦେ କହୁତ ନାହିଁ ବଚନ । ୨ ।
ଛାଡ଼ ମୋ ଅଞ୍ଚଳ କାହାକୁ ବୋଲୁଛି କେଶ୍ୱ ନାହାନ୍ତି ଡଜନ ।
ହାତରେ ସରସିଜ ଧରି ମାଗୁଛି ବିଅବୋଲି ମୋ ନନ୍ଦନ । ୩ ।
ପଥ ଛାଡ଼ ବୋଲି କହୁଛୁ କାହାକୁ ବନ ନୁହେଁ ଏସଦନ
କହ ଦେବଟି ସଖୀଙ୍କି ବୋଲୁ ଏଣେ ଆଖିରୁ ବହୁଛି ଜଳ । ୪ ।
ଚେତି ଚମ୍ପି ଶ୍ରୀ କିଶୋରମଣି ଲାଜେ ଲୁଆଁଇ ଦେଲେ ଲପନ
ଝଟକ ଗୋପାଳକୃଷ୍ଣ ନିତ ଏପରି ହେଲେ ଭେଦିଯିବ ଜନ । ୫ ।

—*—

## ରାଗ ଖମାଚ—ଆଦିତାଳି

( ନ ଖଙ୍ଗରେ ଶୁଖଙ୍କି ଘରତିହୁଅ ସ୍ୱାହା—ବୃନ୍ଦେ )

ଭଜମନ ହରିପ୍ରାଣ ପ୍ରେୟସୀ ଶ୍ରୀମତିଙ୍କି
ଶୁଣାଯିବ ସେହି ଗୋଷ୍ଠଚନ୍ଦ୍ରମା ଚନନ୍ତିକି । ପଦ ।
ନୋହୁନକର ଶୋଚନା ସେ ଯେନୁ ନାହାନ୍ତି ସିନା
ଜଣାଇଲେ ହୋଇ ପଦ ପଙ୍କେ ପ୍ରଣତିକି । ୧ ।

ସେ ଚନ୍ଦ୍ରାବଳୀଙ୍କ କୁଳେ ଥିଲାବେଳେ ତୁ ଦେଖିଲେ
ତୋ ପଛେ ପଛେବୁଲୁ ସରବ ବନ ଗହନ । ୨ ।
ଭୁଷି ଥିଲେ ଶ୍ରୀ କଶୋଶ ତୋ ଆଡକୁ ଅନୁସରେ
ଲେଖ ଲେଖିଧର ଦେଖୁଥିବେ ତୋ ପଦ୍ଧତକ । ୩ ।
ଗ୍ରାମୁରେ ଅଛୁ ସେବାରେ ବୋଲକଣାଇବୁ କାରେ
ପାସୋରନା ବୋଲ ଦେବେ ତୋ ପଣନ୍ତେ ଗ୍ରନ୍ଥିକ ।୪।
ବାଟିକା ଦ୍ୱାର କବାଟୀ କଳଣି ଦେଇ ନଥାଟି
ବୋଲ ଆନ ଦେବେ ସୁଖ ଲଗାଇ ତୋ ଶ୍ରୁତିକ । ୫ ।
ଗୋପାଳ କୃଷ୍ଣ କହଇ ରାଧାଙ୍କୁ ଅଙ୍କେ ବସାଇ
ଡ଼ାକବେ ନଦ୍ୟାବହାନେ ନାମଧର କହକ । ୬ ।

—*—

## ରାଗ ନାଦନାମକ୍ରିୟା—ମିଶ୍ରରୂପତାଳ

( ନାହିଁ ମୋର ପୀରତ ସମକାର—ବୃତ୍ତେ )

ଧୀର ସମୀରେ ବସି ଡ଼ାକୁଛି ତୋ ନାଁ ରେ । ପଦ ।
ପ୍ରାଣେଶ୍ୱର ରାଧିକେ ଶ୍ରୀମନ୍ତ ଗାନ୍ଧର୍ବିକେ
ବୋଲୁ ହଜ ଯାଉଛି ତୋ ଚେତନାରେ । ୧ ।
ବନେ ପ୍ରନ୍ତ ବଲ୍ଲୀକି ଧେନୁ ପଶୁ ପକ୍ଷିକି
ତୋ ଅଭିଧାନରେ କର କଳ୍ପନାରେ । ୨ ।
ତୋଳ କୁସୁମ ବାଳା ତୋ ବେଶ ପାଇଁ ମାଳା
ଗୁନ୍ଥି ସେ ରଖିଛି ଚନ୍ଦ୍ର ବଦନାରେ । ୩ ।
ଧ୍ୟାନ କରୁ ତୋ ରୂପ ବଢେ ଲୁହ ଅମାପ
ଦ୍ୱିଗୁଣେ ବୃଦ୍ଧି ଦେଲାନ ଯମୁନାରେ । ୪ ।
ତା ଦୋଷ ବୁଝାମଣା କର ଗ୍ରାମୁକୁ ଅଣା
ଦଣ୍ଡ ଦିଅ ପଛକେ ତୁ ରଚନା ରେ । ୫ ।
ଗୋପାଳ କୃଷ୍ଣ ବୋଲେ ସେହିସଙ୍କେ ଚଳଲେ
ପଥେ ସଖୀକହେ ଶୁଣ ସୁମନାରେ । ୬ ।

———

## ରାଗ ମୁଖାରୀ—ମିଶ୍ରରୂପ ତାଳ

( କୋପାଇଲା ଯେ ସେ କ ପାଇଲା—ବୃତ୍ତେ )

କାହୁଁ ଏ ନୂଆ ରୁଷା ଶିଖିଲ ରେ
ସଖି ଏମନ୍ତ କେବେ ନଥିଲରେ । ପଦ ।

ଘନ ଶିଥିଳ କେଶ କରିଦେବ ସୁବେଶ
ବୋଲନ୍ତେ କ କପଟ ରଚିଲ ରେ;
ଏଲାଗି ଦୁଃଖ କେତେ ପାଇବ ସୁଖ ମୋତେ
ହୋଇଛି ପିନା ଥାଉ ବୋଇଲ ରେ । ୧ ।

ହେଉ ସଫଳ ଶ୍ରମ ବୋଲ ଜାତି କୁସୁମ
ମାଳା ଯୋଗାନ୍ତେ ବନ୍ଧେ ରୁନ୍ଧିଲ ରେ;
ଶ୍ରୀକର ଶିରେ ଦେଇ ହୋଇ ମୋତେ ଈନସ୍ଥି
ମଥା ମୋ କଥାଉଛି କହିଲ ରେ । ୨ ।

ମୁଖରୁ ଶ୍ରମ ବାରି ପୋଛି ଦେବ ବସ୍ତ୍ରର
ଧରୁ ମୁଁ ଉତ୍ତରୀୟ ହେଉଲ ରେ;
ଦେଖ ଶ୍ରମ ଶ୍ରୀକର ଦର୍ଶେ କେତେ ସୁନ୍ଦର
ବୋଲି ବନ୍ଧୁ ମୁକୁର ଧଇଲ ରେ । ୩ ।

ଯାବକ ହେଲେ ଦେବ ବୋଲି ମାନସେ ଭାବ
ଗୋଡ଼ୁ ଅଳକ୍ତ ରସ ଜାଣିଲ ରେ;
ଏ ହେଲା କ ସୁନ୍ଦର ବୋଲି ମୋତେ ତା ଶିର
ଶପଥ ପକାଇ ନଦେଖିଲ ରେ । ୪ ।

ଗୋପାଳକୃଷ୍ଣ ଭଣି ବଦ୍‌ଗଧ ଶିରୋମଣି
ଚାତୁରୀ ଏକେମନ୍ତ ଆସିଲା ରେ;
କୃଷ୍ଣ କହନ୍ତ ପଛେ ମୋତେ ବଳେକ ବୃଛେ
ଦନ୍ତେ ରସନା ଦଂଶି ହସିଲରେ । ୫ ।

———

## ରାଗ ଯଦୁକୁଳ କାମୋଦ—ଆଦତାଳ

ଶ୍ୟାମକୁ ଜୁହାର ତା'ର ପ୍ରେମକୁ ଜୁହାର ମା ।
ସେ କରୁ ଗୋ ମୀରଣ୍ଡ ଯା ଦେହ ଲୁହାର ମା ।ପଦ।

ଶୁଣିଚ୍ଛୁ ପ୍ରସଙ୍ଗରେ ଚନ୍ଦ୍ରାବଳୀର ସଙ୍ଗରେ
ନାଗର ବାଜ ଛୁ ବ୍ରଜ ଯାକରେ ଯାହାର ମା ।୧

ମଥୁରାକୁ ଉଦ୍ଧବକ ପଥେ ଗଲା ସୁଆଳକ
ଶେଷେ ଶୁଆଉଛୁ ସେ ଗୋବର୍ଦ୍ଧନ ଗୁହାର ମା ।୨

ପଡ଼ିଲେ କା ଆଗରେ ବୁଡ଼ିବ ଦୁଃଖ ସାଗରେ
ପ୍ରାଣ ଧରିବୁଁବ ମୁଁ ମୁଖକୁ କାହାର ମା ।୩

କାଳନ୍ଦୀ କୂଳରେ ରହିଁଲ ନୀପ ମୂଳରେ
ପଳାଇ ଆସିଲି ଠାରି ଜାଗୁଥିଲେ ଦ୍ଵାର ମା ।୪

ଗୋପାଳକୃଷ୍ଣ ଭଣେ ସ୍ଵାମିନ ତୁମ୍ଭ ପାଇଁ ସେ
ବ୍ରଜବଧୂ ହୋଇଛନ୍ତି ସୁରଭି ମାହାର ମା ।୫

—*—

## ରାଗ ବସନ୍ତ—ମିଶ୍ର ରୂପତାଳ

ଦେଖିଟି ଗୋ ଶ୍ୟାମଚନ୍ଦ୍ରକୁ ଅନା କଦମ୍ବ ମୂଳକୁ ।ପଦ।
ଲଳିତ ତ୍ରିଭଙ୍ଗ ଭଙ୍ଗୀ ନଟବର ବେଶ

ରଚିତ କଣ୍ଠେ ପ୍ରିୟ କନକମଞ୍ଜୀର ନବରତ୍ନ କୁଣ୍ଡଳକୁ ।୧
ଲମ୍ବିତ ଦ୍ରୁତର ମାଳତୀ ମାଳା ହୃଦୟରେ

କ ରୁଚିର ନବଶିଖି ଶିଖଣ୍ଡ ଦରଅଞ୍ଚଳ ଚୂଳକୁ ।୨
କୁଟିଳ ଅଳକା ତଳେ ଚନ୍ଦନର ବିନ୍ଦୁ

ରୁଚିର ଭୃକୁ ବଲ୍ଲୀ ଚାରୁ ନାସାରେ ନୂଆ ମୁକୁତା ଫଳକୁ ।୩
ଦଳିତ ନବ ଅଞ୍ଜନ ପୁଞ୍ଜ ତନୁଦ୍ୟୁତି

ଜଗିଛନ୍ତି ପଥ ଥରେ ଦେଖାଅ ମୁଖଚନ୍ଦ୍ର ମଣ୍ଡଳକୁ ।୪
ମୁରଲୀ ମଧୁର ନାଦେ ସୁରଭି କୁଳକୁ

ଡାକି ଡାକି ଡାକୁଛନ୍ତି ଗୋ ଆଡ଼େ କେତେ ନୟନାଞ୍ଚଳକୁ ।୫
ରହୁଁ ସଖୀ ଆପଣରେ ରହ ଶ୍ରୀ ରାଧିକା

ଗୋପାଳକୃଷ୍ଣ ବୋଲଇ ଝଡ଼ିଲା କରୁ ମୁରଲୀ ତଳକୁ ।୬

—*—

## ରାଗ ପରଜ—ମିଶ୍ର ଗ୍ଡପତାଳ

ମୋ କୃଷ୍ଣଚନ୍ଦ୍ରମା ପରି ଆନଟି କେ ଅଛୁ ସରମା । ପଦ ।

ରତ୍ନ ଚିନ୍ତାମଣି ମୋର ତ୍ରିଭୁବନ ଅଲଙ୍କାର
ଦୁଃଖିର ସଙ୍ଗାଳ ଦରିଦ୍ରର ଧନ ମୋ ଶ୍ରୀ ହରି ।୧

ଝାଳରେ ଓଦିନ୍ତ ଅଳକ ଲିଭି ଯାଇଛୁ ତିଳକ
ସ୍ତନ୍ୟ ଦେଇ ମୁଖବାସେ ପୋଛୁ ଭାଷେ ବ୍ରଜେଶ୍ୱରୀ ।୨

ଖେଳୁଥିଲୁ କାହାଘରେ ଧୂଳି ପୂରିଛୁ ଦେହରେ
ଦେଖାନ୍ତି ମାଇଁକ ମୋର ବାବୁ ତୋ ବଦନ ଶିରୀ ।୩

ଦେଖ କାହିଁ ନାହିଁ କଣ୍ଠୁ ଉଦର ବଳ ହେଉଛୁ
ମୁଡ ପଣେ ମୁଁ ରହିଲି ଡେଣେ ଗୃହକୃତ୍ୟ କରି ।୪

ଭୂମ୍ବର ଆଶୀଷ ପାଇ ଆଜ ଚିରଂଜୀବ ହୋଇ
ବୋଲି ମୁଖେ ମୁଖ ଦେଇ ଚୁମ୍ବନ୍ତି କାଖରେ ଧରି ।୫

କାହିଁ ରହିଥିଲୁ ଯାଇ ମୋତେ ମନେ ନ ପକାଇ
ବୋଲଇ ଗୋପାଳ କୃଷ୍ଣ ଖେଳରେ ହେଲେ ପାସୋରି ।୬

—*—

## ରାଗ ଝିଂଝୋଟୀ—ମିଶ୍ର ଗ୍ଡପତାଳ

( ଦୁଃଖିଧନ ଦୁଃଖମସ୍ତ୍ର ନକର ସରସ ମନ—ବୃତ୍ତେ )

ଶ୍ୟାମ ଅପବାଦ ମୋତେ ଲଗି ଥାଉରେ ପ୍ରାଣସହି ।
ନିତ୍ତ ସେହି ଚନ୍ଦ୍ରରେ ମୋ ଦିନ ଯାଉରେ । ପଦ ।

ଗୃହିଁଦେଲେ ଥରେ ସେ ଶ୍ରୀମୁଖ କୋଡ଼ିଏ କୋଟି ଜନ୍ମର ଦୁଃଖ
ଲିଭିଯାଇଛୁ ରେ ପଶ୍ୱାଣ ମିତଣୀ ଯେତେତେ ବୋଲିବ ବୋଲୁଥାଉ ।୧

ବଚନ୍ତ୍ର କାଗ୍ରଧି ମୃଦୁବାଣୀ ଶ୍ରୁତି ପଥରେ ଯେ ଥିବଶୁଣି
ପୀପୂଷାଶନ ଜନଙ୍କୁ ଧନ୍ୟବୋଲି ବୋଲିବ କି ତା ଦୁଖରେ ଆଉ ।୨

ବାଉଭଉିକ ହୋଇଲି ପରି ବୋଲୁଥିଲେ ହେଲେ ବ୍ରଜନାରୀ
ଶୁଣି କଶୁଣିଲି ପରି ମୁଁ ଯାଉଛୁ ଆଡ଼ ଜିହାଡ଼ରେ ଟିକିଦାଉ ।୩

ଗୋପାଳକୃଷ୍ଣ ବୋଲଇ ଧୀରେ ବାଣ୍ଟଲୀ କୁଟିଳ ରୂପଲୀରେ
ବରଜ-ନଟବର ଯାକ ଫୁଟେ ହେଲି ସଦ ବେଳେ ହେଉ ଗଉ ଗଉ ।୪

—*—

## ରାଗ କାମୋଦୀ—ଆଦିତାଳ

ଅକାରଣେ ଦୁଃଖୀରେ ଆନନ୍ଦ ସୁଖୀ । ପଦ

ନନ୍ଦ ନନ୍ଦନ ମନ୍ଦ        ନ ଜାଣୁ ତୁ ତା ଛନ୍ଦ
ଫାନ୍ଦରେ ପକାଇ ତୋ ମହତିକୁ
ନେବ ବୋଲନ୍ତେ ଶ୍ୟାମ        ଉଦର ହେଲୁ ତମ
ଛଳି ଶ୍ୟାମ ପ୍ରେମରେ ଗୋପରକୁ ।୧
ମନ୍ତ୍ରର ସ୍ଥାନ ଯାର        ସେ ଭଜିବ ସେ କାର
ଇତର କଲେ ତାର ନାହିଁ ଗତି;
ବୋଲି କହନ୍ତେ ତୋତେ        ନ ଦେନଲୁ କଂଶତେ
ପ୍ରତେ ହେଲା କି ଏବେ ଏ ସଙ୍ଗତି ।୨
ଗୁରୁଜନ ତର୍ଜନା        ଜଗତର ଭର୍ତ୍ସନା
ଯାହାଲାଗି ଶୋଚନା ନ ଦେନଲୁ ;
ସେ କି ଜାଣିଲା ତାହା        ଆହା କିସ୍ୱନ୍ତ ଦେହା
ମୁଁ ଆଜ କଷ୍ଟ ଦେହ ସୁହାଇଲୁ ।୩
ଏହିଲାଗି ବନନ୍ତ        ପ୍ରିୟ ହେଲେ ଆରତ
ଧରି ନପାନ୍ତି ଧୃତ ଦସ୍ତାବନ୍ତ;
ନୋହିଲେ ଇଙ୍ଗିତରେ        ଶିଖି ପିଛ କୂଳରେ
ଲେଟିବାର ଦେଖନ୍ତେ ସଖୀତତି ।୪
ଲଳିତା ହିତବାଣୀ        ବୃଷଭାନୁଜା ମଣି
ଲଭୁ ଧୈର୍ଯ୍ୟ ପେଷଣି ମାନସରେ;
ଜାଣି ହୋଇଲ ତୁଷ୍ଟ        କହଇ ଗୋପାଳକୃଷ୍ଣ
କୃଷ୍ଣ ଅଇଲେ ସେହି ଅବସରେ ।୫

## ରାଗ ମୋହନା—ମିଶ୍ର ରୂପତାଳ

ଦୁଃଖିଧନ ! ଚନ୍ଦ୍ରାନନରେ
ତୋତେ ପଠିଆଇ ଦେବ କେଉଁ ବନରେ ।ପଦ।
ତୋ ଜନମରୁ ଆଜଯାଏ ମୁହିଁ;
ଦେହ ପାସୋରି ନିଦ ଜାଣି ନାହିଁ;
କ୍ଷଣେ ଇକ୍ଷଣରୁ ଆଜ ହେଲେ ଦଶ
ଦିଶ ଦିଶୁଛୁ ତ ମୋତେ ଶୂନ୍ୟରେ ।୧
ଅତି ବିଷମ ଗୋ ସ୍ମରଣ ବୃତ୍ତି
ସେ ତ ଦୁଃସହ ଦୁଃଖର ବସତି;
ଧେନୁ ରଖିବାର ଭୁକ ଜାଣିବାରୁ
ଖାଇ ଜାଣିନାହୁଁ କରେ ଅନ୍ନରେ ।୨
ତୋ'ତେ କେ ଶିଖାଇଲା ଏ ବୁଦ୍ଧି
କେତେ କହିଲେ ନ ଦେଲୁ ପ୍ରବୋଧି;
କାଖରୁ କ୍ଷଣେ ନ ଓହ୍ଲାଉ ତଳକୁ
ପଣନ୍ତ ନସ୍ତୁଡ଼ି ନିଶିଦିନରେ
ନବ ନୀଳିମ ନୀରଦ ସୁନ୍ଦର
ନୟନର ନିଭୁଳା ତୁ ମୋହର;
କର ମାଳକଣ୍ଠ ଲାଗି ଲୁଳିଯିବ
ଶିରୀଷ କୋମଳ ଅପଘନରେ ।୪
ଶେଯେ ଶୁଆଇଲେ କୋଳରୁ ତୋଳି
ମା ମା ବୋଲି ଡାକୁ କଣ୍ଠ ଘୋଟାଳି;
ଯନ୍ତାଇ ଗଲା ପରି ହୋଇ ଆତୁର
କାଳି କରୁଥିଲୁ ସ୍ତନ୍ୟ ପାନରେ ।୫
ଆରେ ବରଜଜନ ପୁଣ୍ୟ ପୁଞ୍ଜ;
ପୁରେ ରହିଥାଅ ତୁ ନଅରଜ;
ପୋଷା ନ ଗଲେ ଭିକ୍ଷା ପଟଳେ ମାଗିବ
କାନ୍ତି ଇନ୍ଦ୍ର ସମ୍ପତ୍ତି ତୋ ଦରଶନରେ ।୬

ଆଣି ନୟନରୁ ପାଣି ରୋହିଣୀ
ବୋଲନ୍ତି ଶୁଣିବାକୁ ଯଦୁମଣି;
ଜନନୀ ଦୁଃଖ ଧରଣୀ ଧରୁନାହିଁ
କି ଏଡ଼େ ନିଷ୍ଠୁର କଲୁ ମନରେ ।୭
କହି ପୁତ୍ର କହିଲା ଶ୍ରୀ ଯଶୋଦା
ସ୍ତନ୍ୟ ଅଶ୍ରୁ ସ୍ୱେଦରେ ହେଲେ ଓଦା
ନିର୍ମଳ ଗୋପାଳ କୃଷ୍ଣ କହେ ପୌର୍ଣ୍ଣ
ମାସୀ କରିବେ ତ ସମାଧାନ ରେ । ୮

—*—

## ରାଗ ଶଂକରାଭରଣ—ରୂପକ ତାଳ

( ପୋଡ଼ୁ ପର ଅନୁରାଗ । ତହୁଁ ଭଲ ତନୁ ତ୍ୟାଗ—ବୃତ୍ତରେ )

ବ୍ରଜ ବନକୁ ମନ ଯା ଚାଲରେ । ଜୟ ରାଧେକୃଷ୍ଣ ବୋଲରେ । ପଦ
ଚାଲନା ଏଥିରେ କିଛି ନାହିଁ ସୁଖ । ମୂରୁଖ ସବୁଟି ଦୁଃଖରେ ।
ନିଭୃତ କୁଂଜରେ ବିଜେ କରିଛନ୍ତି ରହି ଦେଖ ଚନ୍ଦ୍ର ମୁଖରେ । ୧
ଚିନ୍ମୟ ଶଦ୍‌ଘନ ରସମୟ କୃଷ୍ଣ । ଆନନ୍ଦ ରୂପିଣୀ ରାଧା ।
ସଖୀ ମଞ୍ଜରୀଙ୍କ ସଙ୍ଗତେ ରହିବୁ ନାଶିବେ ସକଳ ବାଧାରେ । ୨
ନିଶାନ୍ତରୁ ରାପାବସାନ ପର୍ଯ୍ୟନ୍ତେ । ସେବାରେ ଥିବୁ ସଙ୍ଗତରେ
ନିଷ୍କାମ ହୋଇଣ ସାଧୁଜନେ ପୁଣ ରହିଣ ଭଲ ଭୁ ଅନ୍ତରେ । ୩
ଶ୍ରୀଗୁରୁ ଦତ୍ତ ବୀଜମନ୍ତ୍ର ଆଧାର କରିଣ । ହୃଦରେ ରଖରେ
ଗୋପାଳକୃଷ୍ଣ ଭାଷଇ ସେ ଯୁଗଳ ରସକୁ ଭାବ ତୁ ସୁଖରେ । ୪

—*—

## ରାଗ ମୋହନା—ତସ୍ରଗତ ଏକତାଳ

( ରାଧା ଗୋବିନ୍ଦ ଭଜରେ ମାନସ ! ବୃତ୍ତେ )

କେ ପଥ କଣା କଲାରେ ବ୍ରଜ ବଧୂକୁ । ପଦ

ସବୁ କେଉଁରମଣୀ ମୋ ପ୍ରୀତି ଚିନ୍ତାମଣି
ପାଇ ରଖି ଦେଲାଲରେ । ୧
କେତେ ସରସେ ସଜ ସାଜଥିଲ ମୁଁ ଆଜ
ମୋ ଆଶା ଛିନ୍ନାଇଲାରେ । ୨

ମୋତେ ସ୍ୱର ବନ୍ଧିରେ　　　　ଜଣାଇ ସେ ଅଙ୍କରେ

　　ଧରୁ ନଶି କଂଚଲ ରେ । ୩

କଟି ଥିଲ କୋଠାରେ　　　　କି କଲୁ ସେ ମୋନାଠେ

　　ମାନସ ଭଙ୍ଗାଇଲୁରେ । ୪

ଗୋପାଳକୃଷ୍ଣ ଭାବେ　　　　ଦେହି ବଚନ କଲେ ଯେ

　　ବୋଲ ଭ୍ରୁ ଭୁଲିଲାରେ । ୫

—*—

## ରାଗ:ଝଙ୍କୋଟି—ମିଶ୍ରରୂପତାଳ

( ମୁରଲୀ ତୋରେ ଶରଣ ଗଲ—ବୃତ୍ତେ )

ଯାହାର ଯେ ପ୍ରାଣଧନ ଗୋ
ତାହା ପରେ ସିନା ତାର ଗୁମାନ ଗୋ । ପଦ
ଭୂଷାଭୂଷିରେ ମିଶା ମିଶି ମନ
ସୁନା ପୁଟ ପରି ବଢ଼ଇ ତାନ ଗୋ । ୧
କଥାକୁ ପ୍ରଶ୍ନ ଉତ୍ତର ବଚନ
ନ ଦେଲେ ଅନ୍ଧାରତ ତ୍ରିଭୁବନ ଗୋ । ୨
ବିନ୍ଧି ବଶ କେବେ ହୋଇଲେ ଭିନ୍ନ
କୋଟିଏ ଯୁଗର ଗୋଟିଏ ଦିନ ଗୋ । ୩
ନୁହଇ ମୁଁ ସେତେଭଳି ଭାଜନ
ଚନ୍ଦ୍ରାବଳୀକି ସେ ଅନୁରଞ୍ଜନ ଗୋ । ୪
ଭଲ ସଜନୀ କଲେ ଅନୁମାନ
ଦୁହେଁ ଦୁହିଁଙ୍କର ମନ ଜୀବନ ଗୋ । ୫
ଗୋପାଳକୃଷ୍ଣ କହଇ ମୋହନ
ଦେହି ଆସିଲେନ ଉଠ: ବଦନ ଗୋ ୬

—*—

## ରାଗ ମୋହନା—ମିଶ୍ରଚୌପଡାଳ

କରରୁ ପୀୟୂଷ ଆଳୀ ଢ଼ାଳି ଦେଲ ରେ ପ୍ରାଣମିତଣି । ପଦ
ଧିକ ଦେଉ ମୋର — ନକଲି ବିଚାର
ଗୁମାନ ବୋଲି ମୁଁ ବିଷ ପାନ କଲି ରେ । ୧
ରଖି ନେଲେ ମାର — ମୋ ଶ୍ୟାମ ସୁନ୍ଦର
ବାସ ପ୍ରସାରି କନ୍ଥ ଯା ଭୁଜ ଦେଲରେ । ୨
ଦେଇ ନିଜ ଆନ — ନାହିଁ ମୋର ଆନ
କୋଇଲେ ଖେଳିଲେ କଂଜତେ ନଗୃହିଁ ରେ । ୩
ପଦ ଦେଲେ ଯେତେ — ଡଉଯାତ୍ରା ଯେତେ
ଆକୁଳ ହୋଇଲେ ମୁଁ ତାଙ୍କ ସହିଲରେ । ୪
କାଳିନ୍ଦ୍ରୀ କୂଳରେ — ଖଡ଼ୁଏ ଚଳରେ
ଗୋପାଳ କୃଷ୍ଣ ଦେଖିଲା ଶୁଣିଥିଲରେ । ୫

—*—

## ରାଗ ନାଦନାମ କ୍ରିୟା—ମିଶ୍ରଚୌପଡାଳ

ଏକ ପରମାଦ ଆସି ପଡ଼ିଲା ମା ?
ଦଣ୍ଡେ ତ ଶ୍ୟାମ ସଙ୍ଗ ନ ଛାଡ଼ିଲା ମା । ପଦ
ଯେଣୁ ବରହ ଉତ୍ତଂସ — ଯେଣୁ ନଟବର ବେଶ
ଯେଣେ ଗଲେ ଆଗେରହି ଅଡ଼ିଲା ମା । ୧
ଚଳ ଯେତେ ପଣ କଲ — କଲେ ଶିଖଣ୍ଡ ମଣ୍ଡଳ
ନଛଳ କର ଶିରରେ ଯୋଡ଼ିଲା ମା । ୨
ବୋଧେ ମୁଁ ଅଧର ବଂଶି — ବେଣୀ ଶେଷରେ ପ୍ରେୟସି
ମାରୁ ମାରୁ ହୃଦେ ବସି ଜଡ଼ିଲା ମା । ୩
କେଉଁ ପଥେ କେ ନଜାଣୁ — ଯାଇ ସେ ମୁଁ ନ ପାଉଣୁ
ନିତ ମୋର ସେଜରେ ଚଢ଼ିଲା ମା । ୪
ଗୋପାଳକୃଷ୍ଣ ଭଣେ — ବୃଷଭାନୁ ଜେମା ଶୁଣ
ସେ ପ୍ରେମ ସିନ୍ଧୁରେ ଚିତ୍ତ ବୁଡ଼ିଲା ମା । ୫

—*—

## ରାଗ ଆନନ୍ଦ ଭୈରବୀ—ଏକତାଳ

(କେତେ ହଟିଅରେ ସେ ନବନାଗର—ବୃତ୍ତେ)

ମୋତେ ଲଗାନାରେ ବ୍ରଜବଧୂ ଲଟ
ଭୃଣ୍ଡୁ ଭୁଛ ଜଟିଳା କହିବ କପଟ । ପଦ
ଥରେ ଦେଲେ ସ୍ୱଛ କର ବଳେକ ନାହିଁ ମୁଁ ଡର
କଳାକ ଗୋଷ୍ଠ ସେ ନବ ଶିଖଣ୍ଡ ମୁକୁଟ । ୧
ଅତି ମନ୍ଦ ମୋ ନଣନ୍ଦ ଜଣିଲ୍ ଝଣି ଅଳନ୍ଦ
ସଙ୍କୋଧ ହୋଇ ବଦନ କରୁଛି ବକଟ । ୨
ନାଲି ଗୋଷ୍ଠ ପ୍ରାଙ୍ଗଣରେ ବୃଦ୍ଧ ଆଶ୍ରାର ସଙ୍ଗରେ
ଚନ୍ଦ୍ରାବଳୀର ଚରିତ କହିଥିଲା ଦାଟ । ୩
ଗୃଲୁ ଗାଦ କର୍ଣ୍ଣି ଜର୍ଣ୍ଣି ପଡ଼ୁଛି ନାନା ଅରିଷ୍ଟି
ଭୁଣ୍ଡକୁ ଲୋକ ତରକ କାନ୍ଦୁଛନ୍ତି କାଟ । ୪
କୃଷ୍ଣ ଲାଗି ମାଳା ଦେଇ ଗୋପାଳ କୃଷ୍ଣ କହଇ
ଆନ ଦେଇଛନ୍ତି ଭଳ ନଥାଅ କବାଟ । ୫

—*—

## ରାଗ ଖମାଚ—ଆଦତାଳ

( କହୁଙ୍ଗରେ ଶୁଦ୍ଧଙ୍ଗ ଖରତ ହୁଅ ସାଦା—ବୃତ୍ତେ )

ଭଜମନ ରାଧେକୃଷ୍ଣ ରାଧେ କୃଷ୍ଣ ବୋଲରେ ।
ବ୍ରଜକୁ ଚଲା ହା ଏ ଜଞ୍ଜାଳରୁ ହୁଗୁଳରେ । ପଦ
କାହାର ତୁ ତୋହର ଏକ ହୁଅନା ବାଉଳ ରେ
ମିଳବଟି ପ୍ରେମଧନ ପ୍ରାଣକୁ ହଖାଳ ରେ । ୧
ଡାଳ ଡାଳ ଶ୍ରୀବୈଷ୍ଣବ ପଦାବ୍ଜ ମଣ୍ଡଳରେ
କୁଲ ମାଗ ମାଧୁକରୀ ପ୍ରସାଦ ଅଂଜଳୀରେ । ୨
ଗୋବର୍ଦ୍ଧନ ପରିକ୍ରମା କର ମାନ ଛାଳରେ
ଲୋଟି ହୁଅ କୋଟିବାର ରାସସ୍ଥଳୀ ଧୂଳରେ । ୩
ଶ୍ରୀନାମ ସୁଧାରେ ଘନ ସାର ଶ୍ରଦ୍ଧା ଗୋଳରେ
ପାନ କର ନାଚମଥା ପରେ କର ତୋଳ ରେ । ୪

ଶ୍ରୀକୁଣ୍ଡ ନୀରରେ ବୁଡ଼ି ଙ୍ଗର କୁଂଜ କଳୀରେ
ରହ ଯା ମଧ୍ୟାହ୍ନ ଲୀଳାସାଙ୍ଗ ଖଳ ଖଳ ରେ । ୫
ପ୍ରେମ ଚିନ୍ତାମଣି ଏହ୍ନ ଅଭେଧ୍ୟା ବୁଝିଲି ରେ
ଗୋପାଳକୃଷ୍ଣଙ୍କୁ ଭୁଲନା ଆଉ ତୁ ଭୁଲରେ । ୬

—*—

## ରାଗ ମୋହନା—ମିଶ୍ର ରୂପତାଳ

( ଆଗୋ ଜନନୀ ମାଟି ମୁଁ ଖାଇନାହିଁ—ବୃତ୍ତେ )

କହିବାକୁ ପିନା ଶ୍ୟାମ ପ୍ରୀତି କରୁଛୁ
ନୋହିଲେ କି ଦାରୁଣ ପ୍ରାଣ ରହିଛୁ । ପଦ

ଗୁଣ ଯାକ ସୁମରି ବସିଛୁ ମୁଁ ଆଉରି
ଯାଠାରୁ ଯାହାକୁ ବଂଧୁ ସରିଛୁ । ୧

ଏହି ମୁଖେ ମୋହନ ମୋ ଜୀବର ଜୀବନ
ବୋଲୁଥିଲି ତଳେ ମୂର୍ଛିତ ଜଇଁଛୁ । ୨

ସୌଭାଗ୍ୟ ବର୍ଣ୍ଣାପଣ ବଶାଇ ବାଲୁ ଜାଣ
ଈକ୍ଷଣରୁ ଲୁହ ଦୁହାଇ ଦେଉଛୁ । ୩

ଜାଣିଲି ଅପସ୍ମାର ଏ ହୃଦସ୍ଥ ମୋହର
ଫାଟି ନ ଯାଉ ବୋଲି ବହି ଗଢ଼ିଛୁ । ୪

ଏ କାଳୁ ବାଣି ଶୁଣି ଗୋପାଳ କୃଷ୍ଣ ଭଣି
ସେ କେଉଣେ ଜିବ ମୁହିଁ ଯାଇ ଆଣୁଛୁ । ୫

—*—

## ରାଗ ମାଳବ ଗୌଡ଼ା—ମିଶ୍ରରୂପତାଳ

( ବରଜ ଶିବ ସର ପିବଟି କଶୋଣ୍ଠରେ—ବୃତ୍ତେ )

କଶୋର ମଣି ! ପଡ଼ିଲ ସେ-ଠୋ ନେନେ ପରଣି ରେ । ପଦ

ନବାଞ୍ଜନ ଯର ଭା ତନୁ ମାଧୁରୀ
କୁଂଜେଚଣି ଦେବତା ସେ ପୁଣିରେ । ୧

ନଟବର ବେଶ ବରହ ଉତ୍ତଂସ
ଲଳିତ ନିଭଙ୍ଗ ଭଙ୍ଗୀ ଠାଣିରେ । ୨

ନାସାରେ ବସିଣ ନାଗପର ବେଣୀ
ବଂଶୀ ମୁଖରେ ବଜ ଗୁହାଣି ରେ । ୩
ଦେଖିଲେ ଯୁବତୀ ଚାହୁଁଲେ ଗୋଡ଼ାନ୍ତୁ
ହେଉଛନ୍ତି କୁଂଜର ଗୃହାଣୀ ରେ ।୪
ଲଭିଲୁ ଏଦଣ୍ଡ ବୃଥା ରସାଳସା
କାଲି ଏକା ଆଣିଯାଇ ପାଣିରେ । ୫
କଂପ ସ୍ୱର ଭଙ୍ଗ ରୋମାଞ୍ଚ ଉଦ୍‌ବେଗ
ମୋହ ହେଉଛୁ କ୍ଷଣକୁକ୍ଷଣି ରେ । ୬
ଏଥିକି ଉପାୟ ଶ୍ରୀନନ୍ଦ ତନୟ
ଜାଣନ୍ତି ଗୋପାଳ କୃଷ୍ଣ ଭଣି ରେ ।

—*—

## ରାଗ ମୋହନା—ମିଶ୍ର ରୂପତାଳ

( ଜଣାଥିଲା କି ମୋତେ ଏ ରାତ୍ରରେ—ବୃନ୍ଦେ )

ଦେଖେ ସୁନ୍ଦର ସ୍ୱପନ ରାତ୍ରରେ
ଦେଖିଲି ରୋହିଣୀ ଅଛି ମାତ୍ରରେ
ମୋ କୃଷ୍ଣଚନ୍ଦ୍ରମା ବୃଷଭାନୁ ଜେମା
ଦୁହିଁଙ୍କି ଦମ୍ପତି ଗାତ୍ରରେ । ପଦ ।
ନୂଆ ବସନ ନୂତନ ଭୂଷଣ
ଭୂଷିତ ହୋଇ ଆସି ମୋ ଚରଣ
ତଳେ ଓଳଗିଲ ନବବଧୂ ପର
ତୋଳି ମୁଁ ଧଇଲି ଗାତ୍ରରେ । ୧ ।
ମୋ ମୋହନର ହୃଦୟରେ ଥିଲା
ମଲ୍ଲୀମାଳା ମାଗିଲି କାଢି ଦେଲା
ହସି ତୋତେ ରାଧା କେଶେ ପିନ୍ଧାଇଲି
ବୋଲି ହେଉଛି ପ୍ରଶାନ୍ତରେ । ୨ ।
ଛୁଣ୍ଡ ହେଲା ସ୍ୱାପ୍ନେ ସବୁ ମଙ୍ଗଳ
ଦିଶୁଥିଲା ଏ ଗୃହ କି ଗହଳ

ବଳସିଲା ପରି ପ୍ରତେ ହେଉଥିଲା
ପରମ ଲକ୍ଷ୍ମୀ ମୂରତିରେ । ୩ ।
ଆଣୁ ମୋ ଶ୍ୟାମ ସୁନ୍ଦର ସଦ୍ମକୁ
ଲଜେ ସେ ଧୁଞ୍ଚି ଯିବାର ପଛକୁ
ଗୃହୁଁ କୋଟିଧନ ଲଭିଲା ପରାୟେ
ହେଉଥିଲା ମୋତେ ସ୍ୱଚ୍ଛତରେ । ୪ ।
ପୀଠେ ନବସୁ ଭୋଜ୍ୟ ବାଢ଼ି ଦେଲା
ରହି ରନ୍ଧନ ଗୃହେ ସୁଦ୍ଧ ଥିଲା
ଗୋଷ୍ଠେନ୍ଦ୍ର ଅଶନାନ୍ତେ ଶୁଣି ମୁଁ ବୋଲୁ
ବସିଲା ତା କୂଳ କଟରେ । ୫ ।
ଶୁଣି ଗୋପାଳ କୃଷ୍ଣ ସେ ସଲାପ
ଚଳ ସ୍ୱସ୍ୱାମିନୀ ଆଳି କଳାପ
ବସିଥିଲେ ଶ୍ରୀ ଲଳତାଙ୍କୁ କହିଲା
ଆନନ୍ଦାନ୍ତେ ଏ ସଂଗତ ରେ । ୬

—*—

## ରାଗ ଖଣ୍ଡୋଟି—ମିଶ୍ର ରୂପତାଳ

( ମୁରଲୀ ତୋରେ ଶରଣ ଶରେଣ ଗଲି—ବୃତ୍ତେ )

ଶ୍ୟାମର ଚୋର କଥା ନାହିଁକି ରେ
ତୁ ନ କହିଲେ ମୁଁ ଜାଣୁ ନାହିଁ କିରେ । ପଦ ।
ତାଙ୍କ ସ୍ୱନକ୍ଷତ ପୂଜିବା ଧନ
ସବୁ କଣ୍ଠଛି ମୁହିଁ ଅନୁମାନରେ । ୧ ।
ନଜାଣିଲାପରି ଯେତେବେ ଆଢ଼ିକୁ
ଅନ୍ଧୁ ଧୁଞ୍ଚି ଯିବାର ତୁ ପଛକୁରେ ।୨
ଅର୍ଘ୍ୟ ଥାଳୀରୁ ବଚକଳ ମାଳା
ତୁ ଦେଲାବେଳେ ଢଳା ଢଳ ଡୋଳାରେ ।୪
ସେ ପ୍ରକୋଷ୍ଠରେ ତୁ ଉପବକ୍ଷରେ
ହସା ହସି ହୋଇ ଅନାଅନିରେ ।୩
ଚନ୍ଦ୍ରମୁଖୀ ସଖୀ କହୁ ହସିଲା
ହୋଇଲେ ଗୋପାଳ କୃଷ୍ଣ ଲଜ୍ଜିତ ରେ ।୫

—*—

## ରାଗ—ବରାଡ଼ୀ ଆଷାଢ଼ ଶୁକ୍ଳ ତାଳ-ଝୁଲା

ଭଜ ଭୁ ରେ ମନ ।
ନନ୍ଦ କୁଳ ଚନ୍ଦ୍ର ବ୍ରଜ ମୋହନ । ଘୋଷା ।
ଶ୍ରୀ ବୃନ୍ଦାରଣ୍ୟ ନବୀନ ମଦନ । ଗୋକୁଳଜନ ହୃଦଚନ୍ଦ୍ର ଚନ୍ଦନ ।
ରାଧିକା ଲପନ ବିଧୁ ଚକୋର । ଭକ୍ତ ଚାତକ ନବ ଜଳଧର । ୧ ।
ବ୍ରଜେଶ୍ୱରୀ ନେହାନନ୍ଦ ପସନ୍ନ । ସର୍ବ ବ୍ରଜବାସୀ ଦୁଃଖ ପାସୋରି ।
ନିତ୍ୟ ନୂତନ ମୂରତି ସୁନ୍ଦର । ନବ କିଶୋର ନବ ନଟବର ।୨।
କଦମ୍ବ ପାଦପ ତଳ ଲମ୍ପଟ । ଗୋପୀ ବଦନାମ୍ବୁଜ ମଧୁଲିଟ ।
ଲଳିତ ତ୍ରିଭଙ୍ଗ ମୋହନ ଠାଣି । ସୁରମ୍ୟାଙ୍ଗ ଚନ୍ଦ୍ରାଧ ବଂଶୀପାଣି ॥
କୋଟିମନମଥ ମନ ମଥନ । ଲାବଣ୍ୟ ବିଗ୍ରହ ମୋଦ ବର୍ଦ୍ଧନ ।
ଗୁଣ ରତ୍ନାକର ଲୀଳା ବିହାରୀ । ଶ୍ରୀ ଗିରିରାଜ ଗୋବର୍ଦ୍ଧନ ଧାରୀ ।୪
ନିଭୃତ ନିକୁଞ୍ଜ ନିଳୟ ବାସୀ । ଅପ୍ରାକୃତ ପ୍ରେମ କେଳି ବିଳାସୀ ।
ସାର ରସାମୃତେ ସଦା ମଗନ । ବ୍ରଜ ବଧ ସାର୍ବଭୌମ ରନ୍ଧନ ॥
ଯାମଳାର୍ଜ୍ଜୁନ ଶାପ ବିମୋକ୍ଷଣ । ଧର ଧାରଣେ ଗୋ ବ୍ରଜରକ୍ଷଣ ।
ସଦାନନ୍ଦ ଶ୍ରୀ ସର୍ବ ସୁଲକ୍ଷଣ । ଫୁଟ ଶତପତ୍ର ଜଳ ଈକ୍ଷଣ । ୬ ।
କଳନ୍ଦ ତନୟା ତୀର ନିବାସୀ । ଗୋଧନ ଚାରଣ କାନନବାସୀ ।
ମହାନାଗରେନ୍ଦ୍ର ସର୍ବ୍ୱଦାତାରୀ । ଗୋପାଳ କୃଷ୍ଣର ଶତ୍ରୁ ସଂହାରୀ ।୭

—*—

## ଜଣାଣ

### ରାଗ ପୁନ୍ନାଗ—ତାଳଝମ୍ପା

( ଭଜ ମନରେ, ଘନ କଳା କହ୍ନାଇ—ବୃତ୍ତେ )
ଦୀନ ବନ୍ଧୁ ହେ ! ହରି ଜଗନ୍ନିବାସ
କାହିଁ ପାଇଁ ପ୍ରଭୋ ନିବାଣ କରୁଛ
କହିଲ କ ଭବେ ମୁଁ ତୁମ୍ଭ ଦାସ । ଘୋଷା ।
ନିଶ୍ଚିନ୍ତରେ ବସି ନାମ ଭଜିବାକୁ
ପାଉନାହିଁ ଲବେ ମୁଁ ଅବକାଶ,
ଦୁଃଖ ନିବାରଣ କାରଣ ତାରଣ
ସହାୟ ନୋହିଲେ ଗଲିଟି ନାଶ । ୧ ।

ଶ୍ରୀ ପତି ଶ୍ରୀରଙ୍ଗ ଆହେ ଶ୍ୟାମଳାଙ୍ଗ
ନ ଶୁଣିବ ଯେବେ ମୋ ଦୈନ୍ୟଭାଷ,
ତୁମ୍ଭ ବ୍ୟତିରେକେ ଅଛି ବା ଆଉ କେ
ଜଣାଇବି ଦୁଃଖ ମୁଁ କାହା ପାଶ । ୨ ।
ମାଗୁନାହିଁ ଧନ ଜନ ବଡ଼ପଣ
ମାଗୁଛି କେବଳ ଶ୍ରୀ ବ୍ରଜେ ବାସ,
ସାଧୁ ସଙ୍ଗେ ଥାଇ ତବ ଗୁଣ ଗାଇ
ଅବିରତ ହେଉଥିବ ଉଲ୍ଲାସ । ୩ ।
ହେ ରାଧାରମଣ ଶରଣ ରକ୍ଷଣ
ଅକାରଣ ନୋହୁ ମୋ ଅଭିଳାଷ,
ଗଲାବେଳେ ଜୀବ ଭୁଣ୍ଡି ଉଚ୍ଚରିବ
ହା ରାଧା ଗୋବିନ୍ଦ କୁଞ୍ଜ ବିଳାସ । ୪ ।
ଷଡ଼ ରିପୁଙ୍କର ଦାଉ ଭୟଙ୍କର
ଯେ ଯା ମାର୍ଗେ ଟାଣି ଦେଖାନ୍ତି ତ୍ରାସ,
ଏକରୁ ଆରେକ ଦର୍ପୀ ଅତିରେକ
ଜଗି ବସିଛି କରିବାକୁ ଗ୍ରାସ । ୫ ।

---

* ମୋର କୋରାପୁଟ ଜିଲ୍ଲା ଭ୍ରମଣ କାଳରେ ପାରଳାଖେମଣ୍ଡି ଦେଇ ଗୁଣୁପୁର ଯିବାକୁ ହୋଇଥିଲା । ପାରଳାଖେମୁଣ୍ଡି ଦେବମଠ'ର ସୁଯୋଗ୍ୟ ମହନ୍ତ ଶ୍ରୀଯୁକ୍ତ ସୀତାରାମ ଦାଶ ଗୋସ୍ୱାମୀ ମହାଶୟ ଗୋପାଳକୃଷ୍ଣ ପାଠାଗାର ଆଡ଼େ ବୁଲାଇ ନେଇଥିଲେ । ଭକ୍ତକବି ଗୋପାଳକୃଷ୍ଣଙ୍କ ସମ୍ପର୍କରେ ସେ ଅନେକ କଥା କହିଲା-ପରେ ତାଙ୍କଦ୍ୱାରା ( ୬ ଗୋପାଳକୃଷ୍ଣ ପଟ୍ଟନାୟକ ) ମୋର ଅପାର ଭକ୍ତି ଆସିଲା । ଗୁଣୁପୁରରେ ଲକ୍ଷ୍ମୀନାରାୟଣ ମନ୍ଦିରରେ ରହିଥିବା ବେଳେ ବଂଶଧାରା କୂଳ ବହରମପୁର ବଜାରର ଗୋଟିଏ ଅନ୍ଧ ମୁହଁରୁ ଏହି କାବ୍ୟଟି ଶୁଣି ସାଦରେ ଲେଖି ଆଣିଥିଲି ।

'ସଂକଳକ'

ଏ ସର୍ବ ବିପଦୁଁ ରଖ ଭକ୍ତବନ୍ଧୁ
ଅନ୍ତର୍ଯ୍ୟାମୀ ନାଥ ହେ ପୀତବାସ,
କଂସଜ ଡ଼ରରେ ଆସି ମୋ ଆଗରେ
ଅନ୍ତଃକାଳେ ଗଲେ ନ ଦେବେ ପାଶ । ୭ ।
ଶ୍ରୀ ଗୁରୁ ପ୍ରଦତ୍ତ ଦେହ ପାଇ ନିତ୍ୟ
ଧାମେ ଚଳିଯିବ ସେବା ସକାଶ,
ଗୋପାଳ କୃଷ୍ଣର ଗିର
ବ୍ୟର୍ଥ ନୋହୁ ହର ଅନ୍ତର ତ୍ରାସ । ୮ ।

*

## ରାଗ ଆଶାବରୀ—ତାଳ,ଆଠତାଳୀ

( ପ୍ରିୟସଖୀ ଶ୍ୟାମବନ୍ଧୁ ପରି କେହୁ ହିଁଶୁନାହିଁ—ବୃନ୍ଦେ )
ଚନ୍ଦ୍ରାନନେ ! ଧନାମୁଁ ହିଁ ସିନା ତୋ ପୀରତି ଧନେ ଗୋ । ପଦ ।
ତୋର ତନୁ ଅନୁରାଗେ ଜୀବଧନ
ଅଳୁଦ୍ଧନ ସିନ୍ଦେ ସୁପୀତ ବସନ
କେଳି ପାପମୂଳ ମୋ ଆଶ୍ରୟ ସ୍ଥାନ,
ଏକା ତୋ ରୂପ ଦର୍ଶନେ ଗୋ । ୧ ।
ତୋ ନାମକୁ ଗାଇବାକୁ ପ୍ରାଣେଶ୍ୱରୀ ।
କରେ ବେଣୁଧାଇ ମୋହନ ବାଂଶରୀ
ଯଥାକାଳେ ତୋ ସରଣୀ ଅନୁସରି,
ଭ୍ରମୁଥାଇ ବୃନ୍ଦାବନେ ଗୋ । ୨ ।
ତୋ ଉଲଟି ଗଣ୍ଠି ସୁମନସ ହୀରା,
ଖଞ୍ଜିଲି ଚନ୍ଦ୍ରକ ଚନ୍ଦ୍ରାରେ ମୁଁ ପରା
ତୋର ପଦଚିହ୍ନ ଧୂଳିରାଶି ତୋଳି,
ବୋଳିହୁଏ ଅଙ୍ଗ ଘନେ ଗୋ
ଶ୍ରୀ ବ୍ରଜେନ୍ଦ୍ର ସ୍ନେହେ-ସ୍ୱାମିନଙ୍କ ପାଶେ,
ବୋଲୁ ଏତେ ମଧୁବନ ଅବକାଶେ,
ଯୁଗଳ ପଦାବ୍ଜ ସେବାଧ୍ୟାନେ ରତେ
ଗୋପାଳ କୃଷ୍ଣ ପ୍ରସନ୍ନେ ଗୋ । ୪ ।

*

# ମନଶିକ୍ଷା-ଯୁଗଳ ଭଜନ

( ରାଗ—ଧନଶ୍ରୀ ତାଳ—ଏକତାଳୀ )

ଭଜମନ ! ରାଧା ଶ୍ୟାମେ,
ବାସ ଅଭିଳାଷ କର ନିତ୍ୟ ବ୍ରଜ-ଧାମେ ।ପଦ।
ଦିନୁ ଦିନୁ ପରମାୟୁ ଯାଉଅଛି ଚଳି
ଭାବଦେଖ ରାଧାକୃଷ୍ଣ ବିନୁ ନାହିଁ ଗତି ।୧
ଧନଜନ ପୁତ୍ର ପତ୍ନୀ କେ ଅବା କାହାର ?
ଅସାର ସଂସାର ଏକା ହରିନାମ ସାର ।୨
କୁସଙ୍ଗ ବରଜ ସଦା ସାଧୁ ସଙ୍ଗ ବାଞ୍ଛି
ଜାତି, କୁଳ ଅଭିମାନ ତୃଣ ତୁଲ୍ୟ ବୁଝି ।୩
କୃଷ୍ଣଗୁଣ ଲୀଳା ଗାନେ ହୁଅ ତୁ ପ୍ରମତ୍ତ
ଯୁଗଳ ପଦାବ୍ଜ ଧନେ ହୋଇବୁ କୃତାର୍ଥ ।୪
ଭାଷଇ ଗୋପାଳ କୃଷ୍ଣ କି କରିବି କେଣି
ସେବା ଅଧିକାର ପାଇଁ ହୃଦରେ ଲାଳସୀ ।୫

—*—

( ରାଗ—ମଙ୍ଗଳ ଗୁଜରୀ ତାଳ—ଏକତାଳୀ )

ଉତ୍ତମା ଭକ୍ତି କି ମନ; କର ତୁ ଆଶ୍ରୟ
ପରିହରି ଜ୍ଞାନ କର୍ମ ଲଜ୍ଜା ଘୃଣା ଭୟ ।ପଦ।
ଯାବତ ବାସନା ତୋର ସମୂଳେ ବରଜ
ଅନୁକୂଳ ଭାବେ ସଦା ରାଧେକୃଷ୍ଣ ଭଜ ।୧
ସର୍ବୋପାଧି ଶୂନ୍ୟ ହୋଇ ରହନ୍ତୁ ତତ୍ପର
ହୃଷୀକେ ହୃଷୀକେଶଙ୍କ ସେବାକୁ ଆଦର ।୨
ସାଲୋକ୍ୟାଦି ପଞ୍ଚବିଧ ମୁକ୍ତି ନ ବାଞ୍ଛି
ଚାରି ପୁରୁଷାର୍ଥ ମଣି ତୁଚ୍ଛପରି ତୁଚ୍ଛ ।୩
ଦ୍ୱିବିଧ ସୁଖରେ ତୋ ଦିଅ ଜଳାଞ୍ଜଳି
ଅନୁରାଗେ ଘେନ କୃଷ୍ଣ ସଦ୍‌ଗୁଣ ଆବଳୀ ।୪

ନିଷ୍କାମେ ସାଧନ ଭାବ ପ୍ରେମଯେ ଅମୂଲ୍ୟ
କୋଟି କୋଟି ବ୍ରହ୍ମାନନ୍ଦ ନୁହେଁ ଯାର ତୁଲ୍ୟ ।୫
ଗୋପୀ ଅନୁଗତେ ରାଗ ମାର୍ଗ ଅନୁସର
ଲୁବ୍‌ଧ ହୋ ଗୋପାଳ କୃଷ୍ଣ କହଇ ବର୍ବର । ୬ ।



## ଶ୍ରୀ ବୃଷଭାନୁଜା ପ୍ରେମ ନାମାବଳୀ

ଶ୍ରୀକୃଷ୍ଣ ଚୈତନ୍ୟ ଚନ୍ଦ୍ରାୟ ନମଃ

ଇତ୍ଥଂ ସର୍ବର୍ଥଦା ରାଧା; ପ୍ରେମ ନାମାବଳୀ ଶୁଭା
ଯସ୍ୟାଃ କୀର୍ତ୍ତନ ମାତ୍ରେଣ, ଶ୍ରୀ ରାଧିକା ପ୍ରସୀଦତି

ପାହି ଶ୍ରୀ ରାଧିକେ, ପାହି ଗାନ୍ଧର୍ବିକେ,
କୃଷ୍ଣ ପ୍ରାଣାଧିକେ, ଦୀନ ପାଳାଂଶୁକେ । ଧ୍ରୁବ ।

ଶ୍ରୀ କୀର୍ତ୍ତିଦାପୁତ୍ରି, ମହାଭାବ ଗାତ୍ରି
ରମୋମାଧିଷ୍ଠାତ୍ରି, ଗୋପୀ ପ୍ରେମଦାତ୍ରି ।୧
ମାଧୂର୍ଯ୍ୟାଣାଂ ପୂର, ହେ ଶ୍ରୀ ବ୍ରଜେଶ୍ୱରୀ
ସ୍ଫୁରି ବିଦ୍ୟୁତ ଗୌର, ସୌଭାଗ୍ୟ ମଞ୍ଜୁଷା ।୨

ସାଧ୍ୱୀ ରୋଗୀବର୍ଗୀ, ଗୋଲକାଧିଦେବି
ସ୍ୱାମିନୀ ମାଧବି, ଶ୍ରୀ ବାର୍ଷଭାନବି ।୩
ସୁଖେନ୍ଦୁ ହାରିଣୀ, ଶ୍ୟାମାଙ୍କ ବର୍ତ୍ତିନୀ
ସ୍ୟନ୍ଦ ନଲ୍‌ହାଦିନୀ, ହେ ଦୁଃଖ ଧ୍ୱଂଶିନୀ ।୪

ହେ କୁଞ୍ଜ ଚେତନ ହେମାବ୍ଜ ଦେହନ
ଗୋବନ୍ଦ ମୋହନ, କାରୁଣ୍ୟ ବାହନ ।୫
ରୂଚିର ପକ୍ଷ୍ମପାଳ, ଋଷଭକଳ୍ମଖଲ,
ସର୍ବଦା ପରିପାଳ, ଶୁଦ୍ଧ ସଦ୍‌ଗୁଣା କଳ ।୬

ନିତ୍ୟ ନୂତନକାୟେ, ଶ୍ୟାମ ସୁନ୍ଦର ପ୍ରିୟେ
ପ୍ରସୂ ରତ୍ନାଳୟେ, ପଶୁପରମାଶ୍ରୟେ ।୭
ଇନ୍ଦୁବ୍ରଜ ପରମଳେ, ଇଧୂଭ୍ରାତ ଶୀତଳେ
ନବନୀତ କୋମଳେ, ନିଜ ଦାସୀ ବତ୍ସଳେ ।୮

ଅଖିଳ ଶକ୍ତିବରେ, ଜଗଦେକବନ୍ଧୁରେ
ମଧୁବ୍ରତ ଭଙ୍ଗୁରେ, ମଣିଗୁରୁ ନୂପୁରେ ।୯
ଗୋକୁଳାଟ ଘୋଷେ, ସଦ୍ବ୍ରହ୍ମା ବନ୍ଦ୍ୟସେ
ନିର୍ଲିପ୍ତେ ନିର୍ଦ୍ଦୋଷେ, କୋଟୀନ୍ଦୁ ପ୍ରକାଶେ ।୧୦

ଅଭିନବ ପ୍ରମଦେ, ନଟନ ବିଶାରଦେ
ଗାମ୍ଭୀର୍ଯ୍ୟ ବରହ୍ରଦେ, ଭ୍ରମଭୟ ବାରଦେ ।୧୧
ସତ୍ପଥେ ସୁବ୍ରତେ, ଯଶୋଦାଲାଳିତେ,
ଷଡ଼ୈଶ୍ୱର୍ଯ୍ୟାନ୍ୱିତେ, ସ୍ୱୀୟ ପ୍ରେମାର୍ପିତେ ।୧୨

ଅଷ୍ଟାସାତ୍ତ୍ୱିକାଙ୍ଗି, ଚଳାପାଙ୍ଗ ଭଙ୍ଗୀ,
କୃଷ୍ଣ ସ୍ୟାବ୍ଜ ଭୃଙ୍ଗି ଗୋବିନ୍ଦ ପ୍ରିୟାଙ୍ଗି ।୧୩
ଜୟ ଶ୍ରୀ କମଳାନନ, ସ୍ମି ବଳ ସୁଶୋଭନ,
ସିନ୍ଦୂର ତିଳକନ, ରମା ଶ୍ରୀବ୍ରଜପୂଜ୍ୟ ।୧୪

ଶତ୍ରୁ ମଦମର୍ଦ୍ଦିନି, ଗୋଷ୍ଠ ଶୁଭ ବର୍ଦ୍ଧିନି,
କୃଷ୍ଣମୟ ବଲ୍‌ଗନି, ଲଳିତାମ୍ବ ସଙ୍ଗିନି ।୧୫
ସତ୍ୟେ ତୀର୍ଥପୂତେ, ନଜାଲୀ ପ୍ରସିତେ,
ଲବଣାମ୍ବୁଧୌତେ ନପ କଣ୍ଟାଙ୍କିତେ ।୧୬

ହେ ଧୀରାତ୍ତଧୀରେ, ନିତ୍ୟାନନ୍ଦପୂରେ,
ବନ୍ଧୁଜୀବାଧରେ, କେଶାଦ୍ୟ ଗୋଚରେ ।୧୭
ଦଶ କର ଶୃଙ୍ଖଳେ, ଜୟ ଜଗନ୍ମଙ୍ଗଳେ,
ନନ୍ଦରାଣି ନର୍ମଳେ, ଘାକାଡ କୌଶଳେ ।୧୮

ସୁଧା ଧାରସ୍ନିତେ, ହେ ନର୍ମ ପଣ୍ଡିତେ,
ସୁସ୍ନିଗ୍ଧେ ବ୍ରଜହସ୍ତେ, ବଦଗେ ବଣନତେ ।୧୯
ଗୁରୁ ଭ୍ରୂକାର୍ମୁକେ, ରତ୍ନ ଗ୍ରୈବେୟକେ,
ପିୟୂଷ ବାଟକେ, ଲସଦୋର୍ବଲ୍ଲିକେ ।୨୦

ସୌଭାଗ୍ୟ ରେଖିକେ, ବଜ୍ର ଶଳାଙ୍କକେ,
ଲୋଲଲ୍ଲାଳକେ, ସଙ୍ଗୀତ କୌତୁକେ ।୨୧
ହୋଜ୍ଜ୍ୱଳକର୍ଣ୍ଣଲେ, ଚଳ ଦୃଗାଞ୍ଚଳେ,
ସୁକୃଷ୍ଣକୁନ୍ତଳେ, ଶ୍ରୀଳ ଗଣ୍ଡସ୍ଥଳେ ।୨୨

ଶ୍ରୀ କୃଷ୍ଣାନୁ ଶୀଳେ, ହେଲୋଳ କୁଣ୍ଡଳେ,
ଗୋବର୍ଦ୍ଧନାନୁକୂଳେ, ସ୍ୱକେଳି ବତ୍ସଳେ ।୨୩
ମାଣିକ୍ୟ ସ୍ୱରଦେ; ହରି ପ୍ରେମୋନ୍ମଦେ,
କଳାସୁକୋବଦେ, କୃଷ୍ଣଶର୍ମପ୍ରଦେ ।୨୪

କ୍ରୀଡ଼ାଧୌରେୟୁକେ, ଦକ୍ଷ୍ୟାଙ୍ଗୁଳୀୟୁକେ,
ଘୋଣାଗ୍ର ମୌକ୍ତିକେ, ସ୍ୱୀ ମୌଳି ମାଳକେ ।୨୫
ସୁକାନ୍ତେ ସଶ୍ରୋଣି, ଭନ୍ଦୋରୁ ସୁର୍‌ବଣି,
କୋକିଳା ସ୍ୱର୍ଷିଣି, ଓଁକାର ରୂପିଣି ।୨୬

ମତ୍ତେଭ ଗାମିନି, ଚନ୍ଦ୍ରକାନ୍ତସ୍ତନି
କଳଙ୍କ କାନ୍ଦନି, ଗୋଲକ ବାସିନି ।୨୭
ସୁପର୍ଣ୍ଣ ରଚର୍ଚ୍ଚିକେ, ଶିଖ କଣ୍ଠୋଳକେ,
ମହା ଲକ୍ଷ୍ମାଂଘ୍ରିକେ, ସୁରକ୍ତାଲ କ୍ତକେ ।୨୮

ଶ୍ରୀକୃଷ୍ଣାବଲମ୍ବେ, ଦାରିଦ୍ର୍ୟ ବଲୂନେ
ବିପଦ୍ଧିଧୂନନେ, ପ୍ରସୀଦ ପ୍ରସନ୍ନେ । ୨୯ ।
ଦକ୍ଷ୍ୟରହାଙ୍ଗଦେ, ସ୍ୱର୍ଚ୍ଛ ମନ୍ଦ ଭୁଦେ
ଗୋବନ୍ଦ ଭଙ୍ଗଦେ, ନତୋଽସ୍ମି ତେପଦେ । ୩୦ ।

ଇତି ଶ୍ରୀ ଗୋପାଳକୃଷ୍ଣ ପଟ୍ଟନାୟକ ବିରଚିତ
ଶ୍ରୀ ବୃଷଭାନୁଜା ପ୍ରେମ ନାମାବଳୀ ସମାପ୍ତ ।



## ରାଗ ଝିଂଝୋଟି—ଆଦିତାଳ

ମୁରୁଛି ନୁହଇ ମନୁ ବନ୍ଧୁଙ୍କ ବୁଦ୍ଧି କରିବ ରେ । ପଦ ।
ରହୁନାହିଁ ନେନେ ବନ ଅନୁବ୍ରତେ ନିଶିଦିନ
ତୋ ଶ୍ରୀମୁଖଚନ୍ଦ୍ର ଛବି ଖାଦ୍ୟ ବୃକ୍ଷ ରେ । ୧ ।
ଦୁଃଖୀ ହେବାକୁ କେ ଜନା ନାହିଁରେ ସ୍ନେହ ଅଧୀନା
ଗଲେ ଜୀବନ ଆଜ କାହ୍ନୁ ଦେଖିବ ରେ । ୨ ।
ନୟନେ କରନ୍ତି ଘର ଭୟେ ହୋଇ ଥର ଥର
ତୁମ୍ଭ ସେନ ପଳାଇ ଯିବାର ଛବି କି ରେ । ୩
ଶୁଭିଗଲେ ମୋର ଗିର ସ୍ନେହେ ହୋଇ ଜର ଜର
ଆସିବାର ଖୋସି ଖୋସି କେଶ ନିବରେ । ୪ ।
ଗୋପାଳକୃଷ୍ଣ ଭାବନ କରେ ତୁ ମିଳିଲେ ଧନ
ଛାଇଁଥିବା ଯାକ ହରଙ୍କୁ ସେବିବ ରେ । ୫ ।

—*—

## ରାଗ ତୋଡ଼ି—ଆଦିତାଳ

ବ୍ରଜ ବଧୂଙ୍କୁ ପଥ କେ ଭୁଲାଇଲା ରେ ।
କେ କଂସ କହ୍ନ କି ବଗିଡ଼ାଇଲା ରେ । ପଦ ।
ସୁଖେ ପୂରାଇବି ନିଶା ବୋଲି କରିଥିଲି ଆଶା
ନ ସହି କେ ମୋର ମନୋରଥ ଲତା ମୂଳ ଉପୁଡ଼ାଇଲା ରେ । ୧ ।
ଯାଉଥିବାର ଗଲା କେଣେ ବେଶ ହେଲା ଅକାରଣେ
ନିକୁଞ୍ଜ ତଳପ ତଳେ ପଣନ୍ତରେ ମୋତେ ତ ଗଡ଼ାଇଲା ରେ । ୨ ।
ମଦନ ଦାବ ଦହନ କଦନର ବିମୋଚନ
ପରମ ପ୍ରେମ ପୀୟୂଷ ପୂର୍ଣ୍ଣ ଚଷକ କିରୁ ଛଡ଼ାଇଲା ରେ । ୩ ।
ଆହା ତୋଳାର ପିଭୂଳା ଗଳାର ମଧୁର ମାଳା
ଦୁର୍ଦ୍ଦଇବ ଦୂର କରି ନୟନନ୍ତୁ ମୋର ନଗିଡ଼ାଇଲା ରେ । ୪ ।
ଗୋପାଳ କୃଷ୍ଣ ଭାଷଣ ଉଠ ଥଇଲେ ରମଣ
କୋଳି କୁଞ୍ଜ ଦେହଳୀକି ବରଷରେ ଚର୍ମ୍ମ ବଢ଼ାଇଲା ରେ । ୫ ।

—*—

## ରାଗ ଧନାଶ୍ରୀ—ମିଶ୍ରରୂପତାଳ

( ମୋହନ ଶ୍ୟାମ ଚନ୍ଦ୍ରା ପଡ଼ିଲ ମା—ବୃତ୍ତେ )

କେତେ ବୋଲି ମୋ ଦୁଃଖ ସହିବରେ ।
କା ଆଗେ ହୃଦ ଫେଡ଼ି କହିବରେ । ପଦ ।
ଲଭି ଏତେ କଷଣ ଯାଉନାହିଁ ପରାଣ
କି ଉପାୟେ ସଂଗିନ ବଞ୍ଚିବରେ । ୧ ।
ପ୍ରବେଶ ହେଲେ ଚିତ୍ତ ଖସି ଯାଉଛି ଧୃତି
ଜାଣି ନଥିଲି ଏକା ରହିବରେ । ୨ ।
ନୁହଇ ଦାସୀ ଭଳି ଆସିବା ପାଇଁ ଆଳି
ଶ୍ୟାମୁକୁ ଲେଖ କେହି ବହିବ ରେ । ୩ ।
ଦେହେ ପରାଣ ଥାଉ ସତେ ସଜନୀ ଆଉ
ଗୋପାଳ କୃଷ୍ଣଙ୍କୁ ମୁଁ ଚାହିଁବ ରେ । ୪ ।

—*—

## ରାଗ ମୁଖାରୀ—ମିଶ୍ର ରୂପତାଳ

ବନ୍ଧୁ ମୋ ନୟନଙ୍କ ଆଶାରେ
ପୋଷା ରତନ ରସଭୂଷାରେ । ପଦ ।
ଚନ୍ଦ୍ର ଚକୋର ପରାଏ ତୋର
ପଥ ଚାହିଁଛି ମୃଗ ତୃଷା ରେ । ୧
ଜନମାନ୍ତର ସୁକୃତ ମୋର
ତୋ କୃପା କଟାକ୍ଷରେ ଦଶାରେ । ୨ ।
ପୋଛି ବଦନ ସ୍ମର-କଦନ-
ଅକୂଳ ନଦୀରେ ନ ଭସାରେ । ୩ ।
ସୁଧା କଳପ କଥା ଅଳପ
କହି ନବାର ଶର ଭୃଷାରେ । ୪ ।

ହେଲେ ସମ୍ମୁଖ କହନ୍ତ ଦୁଃଖ
ଯେମନ୍ତ ଥାଇ ଏ ଭରସା ରେ । ୫ ।
ଶୁଣି ଲଳିତ ଦେଲା ସଙ୍କେତ
ଗୋପାଳ କୃଷ୍ଣଙ୍କୁ ସୁରସା ରେ । ୬ ।

—*—

## ରାଗ ବଙ୍ଗାହେର—ମିଶ୍ରରୂପତାଳ

ଏକ ହଟା ବ୍ରଜ ଗୋଷ୍ଠା-ଯାକ ପଡ଼ିଲାଣି ହୁରି ମା । ପଦ ।
ଆଜନମରୁ ଆଜକୁ ମୁହିଁ ସଦନ ଅଳନ୍ଦ ଜାଣିନାହିଁ
ଦେଖ ପାଦ କଣ୍ଟି ଗୁଲୁ ଗୁଲୁ ହେଲ ଏତେ ସରମା । ୧ ।
ବନକୁ ଗତାଗତରେ ତାର କେବେହେଁ କେମନ୍ତ ଦେଖିବାର
ଏହି ଦୋଷ ଦେଲେ ଏକା ମାତରକ ମୁହିଁ ହାରି ମା । ୨ ।
ଇତର ଜନଙ୍କ ପରି ମୁହିଁ ହୋଇଥିଲେ କଥା ଲୁହାଲୁହି
ହଅନ୍ତେନା ପରା ଏତେବେଳକୁ ଜାତିରୁ ଗବାରି ମା । ୩ ।
କେଉଁଠାରେ କେ ଆଖି କେତେବେଳେ
ମୁଁ ଥିଲି ସେ ବ୍ରଜ ବଧୂ ଭୁଲେ
ବୃଥା ଅପବାଦ ଆରୋପଣ ନଦେଖି ନଧରି ମା । ୪ ।
ଗୋପାଳକୃଷ୍ଣ ପଟ୍ଟନାୟକ ଭାଷେ ସ୍ୱାମିନି ଏ ବ୍ରଜଲୋକ
ପରଖିଲେ ମିଛ ବୋଲିବ ମୁଁ ପରମାଣ କରିମା । ୫ ।

—*—

## ରାଗ ମରୁଆ—ମିଶ୍ର ରୂପତାଳ

ଧୃତକ ଧରିବ ରେ ସଜନୀ କି କରି
ନତକ ନତ ହେଲେ ଏପରି । ପଦ ।
ପ୍ରେମ ବନ୍ଧନରୁ ଯେତେ ଯାତନା ରେ
କେହି ବଡ଼ତ ନ ଯେମନ୍ତ ହରି । ୧ ।
ପ୍ରୀତି ନଜାଣିଲା ସ୍ଥିତି ଏ ଲାଗରେ
ସ୍ୱୈରଣୀ ବୋଲନ୍ତି ଏ ବ୍ରଜ ନାରୀ । ୨ ।

ମାଉଛୁ ଦୁର୍ବଳ ନାହିଁ ବିବେକରେ ।
ଗୌରି ସୁତରେ କି ଦୋଷ ମୁଁ ନାଶୀ । ୩ ।
ଆନନ୍ଦ ଯେଉଁନ୍ତି ଏ ଦୁଃଖ ନଜାଣୁ
ଗୌଖ କାହ୍ନୁ ଫଗତ ସହଚରି । ୪ ।
ଗୋପାଳ କୃଷ୍ଣ କହଇ ଶ୍ରୀମନ୍ତ ଗୋ
ଗୌଖ ଖାର୍ଥକୁ ଗମିଲେ ମୁରାରି । ୫ ।

—*—

## ରାଗ ଧନାଶ୍ରୀ—ତସ୍ତଗତ ଏକତାଳ

କରୁଥିଲି ମୁଁ ନାହିଁ ନାହିଁ ରେ
ଆଣି ପକାଇ ଦେଲୁ ମୋତେ କାହିଁ ରେ । ପଦ ।
ଯିବା ବୋଲି ଗାଧୋଇ ଫାନ୍ଦେ ମୋତେ ପକାଇ
ବ୍ରଜବଧୂଙ୍କୁ କଲୁ ମୁହିଁ ମୁହିଁରେ । ୧ ।
ସାହସ ଏଡ଼େ କେ କରିବ ଅଧରେ ନାଶୀ ଧରିବ
ସହଚରୀ ଅଛୁ ଜାଣିବ ରହ ମୋ ସଂସାର ସରିବ । ୨ ।
ଜଟିଳା ଦେଵଟି କଷଣ ନା ଟି ଏବେ ମୋ ଲକ୍ଷଣ
କୋଟିବାର ତୁମ୍ଭ ଶରଣ ହେଉଟି ଜନ ଖଣ୍ଡଣ ଶୁଣ । ୩ ।
ଦିନକର ପୂଜାର ଫୁଲ ବନଜାକ୍ଷ ପ୍ରରଶିଲ
ବନଯାକ ବୁଲି ବୁଲି ଅଇଲ ସ୍ନାନକରିଥିଲି ଛୁଇଁଲ । ୪ ।
କେଳି କୁଞ୍ଜ ଫୁଲ ସେଜେ କଲେ ରାଧାକୃଷ୍ଣ ବିଜେ
ଭାଳ ଗୋପାଳ କୃଷ୍ଣ ଭଜେ ମିଳ ସେ ଚରଣ ସରୋଜେ । ୫ ।



## ରାଗ ବେଗଡ଼ା—ତ୍ରିପୁଟା ତାଳ

ଢ଼ାଳେ ତ ଢ଼ାଳିଲୁ ନାହିଁ କୃପା ସୁଧା ଝରକ—ବୃତ୍ତେ )

ଦେଖିଲେ ଦେଖିଲୁ ପଣ ଥରେ ରସିକ ରାଜଙ୍କୁ
ଅଖିଳ ବ୍ରଜବାସିଙ୍କ ଆଖିର ପୁଣ୍ୟ ପୁଞ୍ଜକୁ । ପଦ ।
ସୁରଭି ଗଣ ପଛରେ ମୁରଲୀ ବଜାଇ ଧୀରେ
ନାଚି ଆସିବା ବେଳରେ ବନ ବାହୁଡ଼ା ସଜକୁ । ୧ ।
ବିନ୍ଦୁ ବିନ୍ଦୁ ଶ୍ରମ ଝାଳ ଅଳକା ବୃତ କପୋଳ
ମକର କୁଣ୍ଡଳ ଗଣ୍ଡ ଶିଖଣ୍ଡ ଚୂଳ ଧ୍ୱଜକୁ । ୨ ।
ନଟବର ଶିଖା ମଣି ଚରମ ଦେଶର ବେଣୀ
ଝୁଲିବାର ବଂଶୀ ରନ୍ଧ୍ରେ ଝୁରୁ ଅଙ୍ଗୁଳି ବ୍ରଜକୁ । ୩ ।
ନାସିକାର ମୋତି ବର ଧୀରେ ଧୀରେ ଚଳିବାର
ଗୁଞ୍ଜାହାର ଭୁଲେ ଉର ପରମ ବନ୍ୟ ସ୍ରଜକୁ । ୪ ।
ଝୁମୁ ଝୁମୁ ବାଜିବାର ମଞ୍ଜୁଳ ମଣି ମଞ୍ଜୀର
ଗୋପାଳକୃଷ୍ଣ ଚିତ୍ତେ ଯେ ଛନ୍ଦା ଚରଣ କଞ୍ଜକୁ । ୫ ।

—*—

## ରାଗ ମାୟା ମାଳବ ଗୌଡ଼ା – ମିଶ୍ରରୂପତାଳ

( ଆନେ ପରା ନ କର—ବୃତ୍ତେ )

କରୁଛ କି ମୁହିଁ ଗୁମାନ କାହିଁକି ଆନ । ପଦ ।
ସୁବେଶ ହେବାକୁ ଆଳୀ ଡାକିଲେ ମୁଁ ନାହିଁ କାଲି
ମଥା ମୋର ବ୍ୟଥା ହୋଇ ତେଣୁ ମୋ ଲପନ ମ୍ଳାନ । ୧
ଏବେ ଶୁଣିଲି ଖବର ଆସିବ ପୁର ପଡ଼ିର
ଉଭା ହେବା ଅବସର ନାହିଁ କରିବ ରନ୍ଧନ । ୨
ଏକ୍ଷଣି ହେଲି ଶବଙ୍ଗ ଆସିଲ ଆହା କପର ?
ଡାକିବେ ଶ୍ରୀ ବ୍ରଜେଶ୍ୱରୀ ବରିବା ପାଇଁ ଅଶନ । ୩
କେତେ କୋଟି ଜନମର ପୁଣ୍ୟପୁଞ୍ଜ ଫଳ ମୋର
ସେବା ଯେ ହୋଇବ ଦୂର ଆହା କେଣେ ଅନୁମାନ । ୪

ଏବ୍ରଜରେ କାହାଠାରେ କରୁଣା କେଉଁ ପରିରେ
ହେବ ନାହିଁ କ ହୃଦରେ ମୋ ଜୀବର ତ ଜୀବନ । ୫
ଗୋପାଳକୃଷ୍ଣ କହଇ ବଡ଼ି ଯାଉଛି ମଣୋହି
ବୋଲୁ ଶ୍ରୀଲଳିତା ନେଇ ପହୁଡ଼ାଇଲେ ବହନ । ୬

—*—

## ରାଗ ପରଜ—ତସ୍ରଗତ ଏକତାଳ

( ରାଧାକୃଷ୍ଣ ନାମ ଚନ୍ଦ୍ରା ମଣିକ—ବୃତ୍ତେ )

କି କରିବ ବ୍ରଜବଧୂ ଲଗି ରେ ।
ମୋର ହୃଦରେ ରହିଲା ଜଗିରେ । ପଦ
ପ୍ରିୟଙ୍କ ମୁଖୁ ପଲକ ନ ତଳୁ
ଆଗେ ମିଳଗଲା କେଉଁ ବେଗିରେ । ୧
ନବେନ୍ଦୀବର ସୁଷମା ଯାହାର
କେତେ ନତ କରୁଛି ଭ୍ରୂଭଙ୍ଗୀରେ । ୨
କୀର୍ତ୍ତି ଶ୍ରବସ ଚମ୍ପକ ଉତ୍ତଂସ
ହେହି ଯାଚୁଛି ପରାଣ ହରିରେ । ୩
ଧରିଲା ହାତ ଦେଖ ଗୋ ସଂଗାତ
ଛାଡ଼ୁ ନାହିଁ ଦେଲେ ମୁଁ ଫିଙ୍ଗିରେ । ୪
କାହିଁରେ ଅଛି କେ ମୁଁ କରୁଛି
ଜାଣୁ ନାହିଁ ଖାଇଲି କଳାଗିରେ । ୫
କହେ ଗୋପାଳ—କୃଷ୍ଣ ପୀତ—ଚେଳ
ସୁକୃତ ଧୃତ ଗିରି ଦେଲା ଝାଙ୍ଗିରେ । ୬



## ନାୟକର ବିଦେଶ ଯାତ୍ରା

### ( ରାଗ—ଦକ୍ଷିଣ କାମୋଦୀ, ତାଳ—ଆଡ଼ତାଳ )

ଯାଉଛ ସ୍ୱାମୀ ରତନ ! ନ ହେବନି ମନେ ଆନ
ପିଣ୍ଡକୁ ସିନାରେ ଧନ ! ନେଉଛ ରଖି ଜୀବନ । ପଦ
ପ୍ରାଣ ବନ୍ଧୁ ମୋ ଭରସା ତୋ ବିନା କେ ଅଛି ରସା ?
ନେହୁ ମାର ନବରଷା; ଆସିବ ନୋହୁଁ ବରଷା । ୧
ଅତନୁ ସନ୍ତାପ ସହି ହୃଦରେ ମୃଣାଳବାନ୍ଧ
ଥିଲା ମୋ କପାଳେ ଏହା, ନକଲା ଦଇବ ଆହା । ୨
ମୋ ଛୁର ପାଇଁକ ଦୁଃଖୀ ହେଉଛରେ ଆନନ୍ଦ ସୁଖୀ ?
ମୁଁ ସିନା ତୋ ପ୍ରୀତିରଖି, ପାରିଲି ନାହିଁ ସୁମୁଖି । ୩
ସଂଗୀତ ପ୍ରବୀଣା ସହି ସଙ୍ଗୀତ ନଥିଲୁ ହୋଇ
ଭଙ୍ଗି ତ ଦେଉଛି ବହି, ଫିଙ୍ଗି ମୋତେ ଦୂରେ ନେଇ । ୪
ଗୋପାଳ କୃଷ୍ଣ ତୋହର ତପ୍ତମାଳଆ ନକର
ନଯାସୋର ବୃଷ୍ଟି କର—ବମ୍ପା ଗୋଷ୍ଠ ରସାସାର । ୫

—*—

## ମାନିନୀ ରାଧାଙ୍କ ଦୂତୀ ପ୍ରତି ଉକ୍ତି

### ( ରାଗ କଳସା—ତାଳ ତ୍ରିପୁଟା )

ହେ ଦୂତି ! କାହିଁ ନାହିଁ ତୋ କୋମଳ କଥନେ ।
ବାକ୍ୟାଳାପ ନ କରିବ ସେ ମଧୁ ମଥନେ ଗୋ । ୧
ଯା ସ୍ୱଭାବ ବ୍ୟବହାର ସମ ପରସ୍ପରେ
ତା ଭୁଲେ ମୈତ୍ରୀ ଜନ୍ମିଲେ ସ୍ଥାୟୀ ହୋଇପାରେ । ୨
ନିରନ୍ତ ଶମ୍ଭୁ ଚଞ୍ଚଳ ବଡ଼ ଅଘହନ୍ତା
ମୋ ଧୀରତାର ପ୍ରଶଂସା ଦିଗନ୍ତ ବ୍ୟାପିତା । ୩
ଶଠତା ନସ୍ତୁ କେବଳ ସେ ଶ୍ୟାମ ଚରିତ
ମୁଁ ସେ ନିଜ କୁଳପାଳୀ ମୃଦୁହସ୍ତା ମାତ । ୪

ତୁମ୍ଭ ହର ଅଂକୁଶ ନର୍ମ ଉପଯୁଣ
ସୁହୃଦାନୁ ବଂଧେ ମୁଁ ଧାର୍ମିକା ସହଜେଣ । ୫
ଏଣୁ ସେ ବଂଚକ ସଂଗେ ମୋ ପ୍ରଣୟ ବ୍ରତ
ସୁଖକର ହୋଇ ନପାରିବ କଥାଗତ । ୬
ବାଲ୍ୟ କାଳାବଧି ପ୍ରାଣବଧ ଯା ଅଭ୍ୟାସ
ଧ୍ୱନିତ ହେଉଛି ପୂତନାଦି କଲା ନାଶ । ୭
ସେ ନାଗରଙ୍କ ଚରିତ୍ର ଶାଠ୍ୟ ବୋଲି ମିତ !
ହୋଇ ସାରିଛି ଉତ୍ତମ ରୂପେ ଅବଗତ । ୮
କୋମଳ ହୃଦୟା କୁଳାଙ୍ଗନା ବୋଲି ମୁହିଁ
ବୁଝି ପାରି ନଥିଲି ଚେତିଲି ଏବେ ସ୍ପଷ୍ଟ । ୯
ସେଥିଲାଗି ଯଥୋଚିତ ଶିକ୍ଷା ପାଇଲିଣି
ତୋ ଶିକ୍ଷା କଥାରେ ନ ଭୁଲିବି ଆଉ ପୁଣି । ୧୦
ପ୍ରବୋଧି ଗୋପାଳ କୃଷ୍ଣ କହେ ପୁନର୍ବାର
ଯା' ହେଉ ପ୍ରେମବନ୍ଧର ଆଚରଣ କର । ୧୧

—*—

## ରାଗ ଆନନ୍ଦ ଭୈରବୀ—ରୂପକତାଳ

( ଆଜ ଚଳଭୁ କୁଂଜ ଭୁବନେ ଗୋ—ବୃତ୍ତେ )

ନା ବୋଲି କେତେ କହିଲି ତୋତେ ରେ ସଂଗିନ ।
ଯା ବୋଲି ଶେଷ କହିଲୁ ଶଠେ ରେ । ପଦ
ଭବ ନାହିଁଟି ସେ କହିବାର
ଠାକରେ ମନ ନ ରହେ ତାର
ଲୋକରେ ହୋଇ ଯିବ ପ୍ରଚାର
ଶୋକରେ ସଢ଼ ଯିବୁଟି ସନ୍ତତେ ।
ବାପର ଜଣି ହେଜୁଲୁ ନାହିଁ
ବାସ କଲୁ କୁଂଜବନେ ଯାଇ
ରସ ରସେ ତହିଁକି ହଜାଇ
କ୍ଲେଶ ଲଭିଲୁ ସଖିକେ ସେତେ । ୨

ଜାଣନ୍ତୁ ଲୋକେ ଦେବେ ଖଟାଣି
ଶୋଭବେ ଶୁଣି ସ୍ୱଜନେ ମଣ୍ଡଳି
କାନ୍ତ କୁଳ ଦେବତା ଦେଲୁ ଜଳ
ପ୍ରୀତି କଲେ ସେ ମୋହନ ସଂଗରେ । ୩
ଶ୍ୟାମର ଲାଗି କୁଟିଳ କେଶୀ
ଭାମର ଦେଲୁ ଗଞ୍ଜନ ବେଶୀ
ନାମ ତାହାର ଏକାଇ ବୋଲି
କ୍ଷମା ହେଲୁ ଝୁରି ଝୁରି ମରମେ । ୪
କାଣ୍ଡୁଆଣି ନ ଦେଖୁ ଆଉର
ଦୋଷ କରୁ ମେରୁ ପଟନ୍ତର
ଦାସ ମୁଁ ବୋଇଲେ ଛଡ ଧର
ତୋଷ ହୋଇ ଯାଉନ୍ତୁ ଭୁ.ଇଙ୍ଗିତେ । ୫
ଏ ଯାକ ହେଲେ ବନମାଳୀଙ୍କି
ସୋପାନ କଲେ ଅନନ୍ତ ତାଙ୍କ
କୃପା କରି ବୋଇଲେ ଆଳୀଙ୍କି
ଗୋପାଳକୃଷ୍ଣ ଶ୍ରୀହରି ଇଂଗିତେ । ୬

—*—

## ରାଗ ସାବେରୀ—ମିଶ୍ରଚାପ ତାଳ

( ଦୁଃଖି ହେବନ ମୋ ଧନା ଆଜମନ ସୁକୁମାରୀ—ବୃତ୍ତେ )

ନ ବଳଗଲ । ରାଧିକେ ନେହ ଲୁହ ପୋଛିବାକୁ ଏବେ । ୦ ।
ଛୁଟିଲ ବୋଲ । ନବ ଛଇଲ । ଭାଙ୍ଗୁଛି ନ ବସି ।
ଅଧ ବଇଶ । ତୋ ପରଭୃଷ
ହୋଇ ନରହେ ରଙ୍କ ଅଛି ଦେହ ତ ସେବାକୁ ଏବେ । ୧ ।
ସୁନା ନଳନ । ସମ୍ଭବଦନ । ମଣ୍ଡନ ପାଇଛୁ ।
କଦମ୍ବ ପିଣ୍ଡି । ଚରଣେ ଲୋଟି
ପାଉଛି କେତେ ନ ଖୋଜି ବସିଛୁ ଅନାଇଁ ଧଇରୁ । ୨ ।

ଗୋଷ୍ଠେ ଗୁଆଳ । ତୋ ଛଡ଼ୁଁ ବଳା । କେଉଁଠି ସେ ଅଛୁ ।
ମୋହନ ମନ । ତୋ ଠାରୁ ଆନ ।
କରିବ ଦଣ୍ଡୁମାହିଁ କଣେ ମୋତେ ଭଲ୍ କରିବାକୁ । ୩ ।
ତସ ଦୁଃଖ ଜାଣି । ଲଳିତା ଆଣି । କୋଳରେ ବସାଇ,
ଭାଷିଲେ କଥା । ନ କାନ୍ଦ ମଥା
ଗୋଷ୍ଠଥା ଅଣାଉଛୁ ଗୋଷ୍ଠାଞ୍ଚଳ ଚନ୍ଦ୍ରମାକୁ । ଏବେ । ୪ ।
ନବ ନୀରଙ୍କ । କୁଙ୍କୁମ ପଙ୍କ । ଗଞ୍ଜିଣ ଅଳୋକ
ଶିଖଣ୍ଡଚୂଳ । ପଛେ ଗୋପାଳ—
କୃଷ୍ଣ ସଙ୍ଗତେ ଆଗେ ଆସୁଅଛି କନ୍ଦାବାକୁ । ଏବେ । ୫ ।

—*—

## ରାଗ ଖମାଚ---ଆଦିତାଳ

( ନ ଭାଙ୍ଗରେ ଶୁଭଙ୍କି —ବୃନ୍ଦ )

ଜୀବନ ସିବ ପରା ସୁମର ମା
ମିଳବ କା ସତେ ମୋତେ ନଭୁଞ୍ଜ କହାଣୀ ମା । ପାଳି ।
ଅଭ୍ରଲହାଗିନ୍ ଦହୁଛି ଚଉଦଗେ ଶୋଭ
ବନ୍ଧୁବ କେହି କୋମଳ ରଙ୍ଗାଣି ବଲ୍ଲରୀ । ୧ ।
ପୂର୍ବ ପୁଣ୍ୟ ପୁଞ୍ଜ ସବୁ ବଶ୍ଚିବ ମୋହର
ଦେଖିବ ଯଶୋଦା-ବାତ୍ସଲ୍ୟ-ଲକ୍ଷ୍ମୀଙ୍କ କଙ୍କଣ । ୨ ।
ଲଳିତା ବିଭଙ୍ଗ ଭଙ୍ଗୀ ଆଧା ବଂଶୀଧାରୀ
ଆଖିରେ ନାଚୁଛି ଶିର ଶିଖଣ୍ଡ ମାଧୁରୀ । ୩ ।
ବଳୟୁ ମିଶା କଟାକ୍ଷ କୁଣନ ଘୁଞ୍ଚୁଣୀ
ନଶିଦନ ଉହାଲ୍ ମୋ ମନେ ଘର କରି । ୪ ।
କନ୍ଧ କନ୍ଧ ଗୁହୁଁ ଗୁହୁଁ କାକଗଲା ସର
ମନମଥ ହୃଦସ୍ତ ପକାଉଛି ବଦାର । ୫ ।
ଗୋପାଳକୃଷ୍ଣ ଅଭଲା ବସ କାଟଳ ବହାଣ
ଡ୍ରିସ୍ତ ପ୍ରତ୍ୟଙ୍ଗଙ୍କ ଲେଖ ହୃଦ କାପେ ଧରି । ୬ ।

—*—

## ରାଗ ପାନ୍ତବରାଡ଼ି—ମିଶ୍ରରୂପ ତାଳ

( ଭଜମନ ବ୍ରଜବନ ଦ୍ୱିଜ ରାଜଙ୍କୁ—ବୃତ୍ତେ )

ଜାଣିଲ ସଖି ତୋ ମନ୍ଦ ମନ୍ଦ ଝୁଲ ରେ । ପଦ ।
କହୁଛନ ରହିଥା ବୋଲ ନ ଭୁଲ ରେ । ପଦ ।
ମୁଁ ପଚାରିଲେ କଥାକୁ ଉତ୍ତର ଦେଲ ବେଳକୁ
କେଣେ କର୍ଣ୍ଣମୂଳ କେଣେ ନଖ ଚଲ ରେ । ୧ ।
ବ୍ରଜବଧୂ ଦୁଃଖ ଶୁଣି ପୂରିଲାଣି କେତେ ପାଣି
ବୋଲୁଛୁ ସେ ଆଉରି କ ବଳଗଲାରେ । ୨ ।
ଜନ୍ମିଛି କି ସନ୍ଦେହ ଦମ୍ଭେ ଭାଙ୍ଗି ଦେଉ ଦେହ
ଜୃମ୍ଭା ପରେ ଜୃମ୍ଭା ଆଣୁଛୁ ଛଇଲ ରେ । ୩
ମୁଖ ବୁଲାଇଲ ଖଣି ଦଣ୍ଡକେ ପ୍ରାଣ ମିଳଣି
ପ୍ରେମ ପୀୟୂଷ ଘଡ଼କେ ଏଡ଼ି ଦେଲାରେ । ୪
ଆସିଛୁ ପଥେ ବସାଇ କସ କହିବରେ ଯାଇ
ବୋଲୁ ସଖୀ ନୟନେ ଲୁହ ପୂରିଲ ରେ । ୫
ଲଳିତା ବୁଝି ସେ ଚିତ୍ତ ବକୁଳ କୁଞ୍ଜ ସଂକେତ
ଜହିଲେ ଗୋପାଳ କୃଷ୍ଣଙ୍କୁ ଚଳିଲ ରେ । ୬



## ରାଗ ମାଗ୍ଯା ମାଳବ ଗୌଡ଼ା—ମିଶ୍ରରୂପତାଳ

( ଶ୍ୟାମ କମଳାସ୍ୟଙ୍କୁ ସମନାହିଁ ଆଉ—ବୃତ୍ତେ )

ବ୍ରଜ ବଧୂ ପର ମୋତେ କେ ବଶ୍ଣିନାହିଁ
ମନ ପୂରୁଛି କି ହେଲେ ନିତ ଲୁହିଁ । ପଦ ।
ପ୍ରଣୟ ପରିହାସ ମିଶ୍ରା ଭାଷା ପୀୟୂଷ
ହସିବାର ଅଳପ କହି କହି ।
କାନନୁ ଆସିବାର ଅନାଇ ବାର ବାର
ଲେଉଟି ରାଜପଥେ ରହି ରହି । ୨

କୋଟିଏ କୋଟି ମାର　　　ପଦନଖ କୋଣର
　　ଅଂଶ ଲେଶକୁ ସମ ହେବ କାହିଁ । ୩
ଥିଲେ ହେଲେ ହୃଦରେ　　　ମୋମନ ଶ୍ରୀପଦରେ
　　ରହି ଥାଉଛି ସମ୍ବାହନ ପାଇଁ । ୪
ପତିବ୍ରତାକୁ ଜଳା-　　　ଞ୍ଜଳୀ ଦେବେ କମଳା
　　ବିମଳାଦି ପଡ଼ିଗଲେ ମୁହାଁ ମୁହିଁ । ୫
ନିତ୍ୟନୂତନ ବପୁ　　　ବନସ୍ପୁ ଅଦ୍ରି ଶିପୁ
　　ଦେଖିଲେ ମୁ ଭୁଲିବ କେ ଦେହ କହି ।
ଗୋପାଳକୃଷ୍ଣ ଭାବେ　　　ସୁଷମାରେ ସୁରସେ
　　ରମା ରମଣ ଯାଏ ସରି କାହିଁ । ୬ ।

---

## ରାଗ ପୁନ୍ନାଗ—ଝୁଲତାଳ

ହସି ହସି ରେ ଗୁନ୍ଥିବା ହଶୁଛି ଝୁରୁ ବେଣିରେ । ପଦ

ଆଳୀ ଠାରି ଦେଲେ ମୋର　　　ଯିବାର ସବର
　　ଆସୁଧନ କେଶ ଖୋସି ଖୋସି ରେ । ୧
ଦୂରୁ ଶୁଣି ମୋର ବାଣୀ　　　ପଞ୍ଜର ସରଣୀ ।
　　ପାଣେ ରଖିଥାଉ ମୁଖ ଶଶୀରେ । ୨
ଲଲାଟ ସିନ୍ଦୁର ତୋର　　　କପାଳରେ ମୋର
　　ଲାଗିଯାଇଥିଲେ ଘନ କେଶିରେ । ୩
ରତି ଶେଷେ ବାସ ସିନ୍ଧୁ　　　ଊଭା ହୋଇ କହୁ
　　ରହେ ରଦବାସ ଲାକେ ଦଂଶିରେ । ୪ ।
ଗୋପାଳ କୃଷ୍ଣକୁ କଥା　　　କହି ପୋଛୁ ମଥା
　　ଶାଢୀ ବାଡ ନଖେ ଘସି ଘସି ରେ । ୫ ।



## ରାଗ ନାଟକ ପ୍ରିୟା—ତାଳ ମିଶ୍ରରୂପ

( ମୂରଲ ତୋରେ ଶରଣ ଗଲି—ବୃତ୍ତେ )

ଆଜ୍ କି କେଶ ସଜନୀରେ
ପୁଷ୍ପ କାଟୀକ ପ୍ରିୟ ଆସିଲେନିରେ । ପଦ ।
ଚଳନ୍ତି ବେଳେ ଏକା ସୌଦାମିନୀ
ଗବାକ୍ଷ ଜାଳେ ଗୃହୀଁ ଚାହିଁଲିନିରେ । ୧ ।
ଦେଖିଲନ୍ତି ନବଜ ଘନ ରଜନୀ
ବେଳନ୍ତୁଁ ମୁହିଁ ଥିଲି ଅନୁମାନ ଗୋ । ୨ ।
ଦ୍ୱୀପ ଲିଭାଅ ଆସିବା ଗୋ ଘେନ
ବରଷିଲାନି ପରା କାଦମ୍ବିନୀରେ । ୩ ।
ହସିପକ୍ଷେ ଯାଉ ସବୁ ସଙ୍ଗିନୀ
ମୋହନ ହୃଦେ ରାଧା ରହିଲେନି ରେ । ୪ ।
କୋଲେ ଗୋପାଳକୃଷ୍ଣ ଶୋଇଲୁନି
ଜଟିଳା ପୁରକୁ ଆସ ସ୍ୱାମିନି ଯେ । ୫ ।

—*—

## ଖମ୍ବାଜ—ଏକତାଳ

### ଶ୍ରୀକୃଷ୍ଣଙ୍କ ପ୍ରତି ମଧୁମଙ୍ଗଳ

ବନ୍ଧୁ ଦୁଧ ସର ଚୋର !···(କଳାକାହ୍ନୁ )

ଶିଖି ଚୂଳିଆ ହେ କାଇଁଚ ମାଳିଆ
ଏବେ ପଡ଼ିଯିବ ଧରା । ୦
ବଙ୍କିମ ଅଧରେ ବେଣୁ ବାଇ ଧୀରେ
ଭଳି ନାଚ ବାଈ ପରା
ବରଜ ବାଳୀଙ୍କ କେଳି ସୁଧାରଙ୍କ
ଜାଣେ ମୁଁ ତୁମ ଚୋପରା । ୧
ରବ ସୁଚା ରଟ ନାଗ ଚଳେ ଧଟ
ଠିଆ ହୁଅ ଦେଖି ଖରା

କଳସୀ କାଖେଇ ଆସିବାର ଗୋଈ
ଦେଖି ମାର ଆଖିଠାରି । ୨
ହେ ହଟ ନାଗର ଲମ୍ପଟ ଭ୍ରମର
ବରଜେ ବାଜେ ନାଗରୀ
ସ୍ୱଭାବ ଚୋରପଣା ପ୍ରେମ ଆଶ୍ୱାସନା
ତୁମେ ତା ପ୍ରୀତି ପସରା । ୩
ଜାଣି ଯେତେହଟ ହେ ଶଠ ଲମ୍ପଟ
କହ୍ନୁ ନ ସରବ ଆଉ
ମୋହିନୀ ଲଗାଇ ନାଗରୀ ଭୁଲାଇ
ଲୁଟନ୍ତୁ ଜୀବନ ସାରି । ୪
କପଟି ମୋହନ ମୋର ନିବେଦନ
ନ ହୋଇବ ଭକ୍ତହରି
ଗୋପାଳ କୃଷ୍ଣର ଚିତ୍ତ ଶ୍ରୀପଦର
ରେଣୁ କରନ୍ତୁ ଆସରି । ୫



## ଶ୍ରୀକୃଷ୍ଣଙ୍କ ପ୍ରତି ଲଳିତା

### ତାଳ—ଏକତାଳି

ଆହେ ଶ୍ୟାମ ଘନ ତୁମ ଲାଗି ମନ
ଶ୍ରୀମଣ୍ଡ ଯାଉଛନ୍ତି ସରି ।
ନେଦଇ ପ୍ରୀତିରସ କର ତାକୁ ପାର
ଶ୍ରୀପଦେ ଜଳ ଏବେ ମାଗୁ ମୁଁ ଗୁହାରି ।
( ପଦ )
ପଞ୍ଚପୁଷ୍ପ ଶାୟକ
ଲକ୍ଷ କରନ୍ତି ଲକ୍ଷ
ବରଷ ଜ୍ୱରେ ଗୋଷ୍ଠ
ନିରନ୍ତର ଧକ ଧକ

ଝର ଝର ନୟନରୁ
ନୀର ଝରେ ଅଧିକ
ହୁତାଶ ଉଚ୍ଛ୍ୱାସରେ
ଶତଧା ଫାଟେ ବକ୍ଷ । ୧

ଶଶୀଜିତ ମୁଖ ମଳିନରୁ ପ୍ରତ୍ୟକ୍ଷ
ମାନସ ଯାଉଛି ଭାଙ୍ଗି
ବିରଳ କେଶ ବାସ ହୋଇଲାଣି ଅବଶ
ଅମ୍ବୁଜ କଳିକାରେ ଶିଶିର ବିନ୍ଦୁ ଲାଗି—
ଲଭେ ଯେମନ୍ତ ଦଶା
ତେମନ୍ତ ରସାଳସା
ଦିନକୁ ଦିନ କ୍ଷୀଣ
ହୋଇ ହୁଏ ହତାଶା
ପଚାରିଲେ ସଜନୀ
ନ କହେ ପଦେ ଭାଷା
ମଥା ପୋତି ତଳକୁ
କରଜେ ଖୋଳେ ରସା । ୨

ନୀଳମଣି ହାର ଗଳାରୁ ବାହାର
କରି ସେ ଦେଉଛି ଫିଙ୍ଗି
ମାଜୁ ନାହିଁ କେଶ ସାଜୁନାହିଁ ବେଶ
ଯମୁନା ଯିବା ପାଇଁ ନହୁଏ ଅନୁରାଗୀ
ଭ୍ରମର ଗୁଣ ଗୁଣୀ
ଝୁଁରେ ରମଣୀ ମଣି
ସ୍ମୃତି କଳା ମେଘକୁ
ନେତ୍ର ଝରଏ ପାଣି
କଦମ୍ବ ନୃତ୍ୟ ଦେଖି
ଥରଦେ ହୁଏ ଘୁଣି
ଚଳପ ଚେତନ ତଳେ
ଗଣ୍ଡେ ଧରା ଭଜନା । ୩

କୃପାସିନ୍ଧୁ ବୋଲାଇ ଅକୃପା କଲେ ଖାଇ
ଆଉ କି ସହେ ବନ୍ଧବ
ସ୍ୱଭାବରେ ବତ୍ସର ହେ ପ୍ରଭୁ ଗିରିଧାରୀ
କଷିଲ୍ଲ ଜନେ ସେବେ ବିନା ଦୋଷେ ମୁଣ୍ଡବ
କହ କିବା ଖ୍ୟାତି
ଅର୍ଜିବ ଶ୍ରୀପତି ?
ନାରୀ ହତ୍ୟା ପାତକୁଁ
କେଉଁଁ କା ହେବ ମୁକ୍ତି ?
ଜଗତେ ନ ପାଇବ
ତୁମେ କି ଅପଖ୍ୟାତି ?
ଗୋପାଳକୃଷ୍ଣ ବୋଲେ
ରଖ ଚରଣ ଶାନ୍ତି । ୬

—*—

## ଶ୍ରୀକୃଷ୍ଣଙ୍କ ପ୍ରତି—ଶ୍ରୀରାଧା

### ତାଳ—ଆଠତାଳି

ଶ୍ରୀହରି ।···ହେନ ଘାନା ଗୁହାରୀ ହେ ।
ଯୁଗେ ଯୁଗେ ମୁହିଁ ତୁମ୍ଭ କିଙ୍କରୀ ହେ । ୦
ତୁମେ କଳାନିଧି ମୁହିଁ କୁମୁଦ
ତୁମ ଦରଶନେ ଫିଟଇ ମୁଦ ହେ । ୧
ତୁମେ ରବି ହେଲେ ପଦ୍ମିନୀ ହୋଇ
ସରସୀ ସଞ୍ଚିଲେ ଥାଏ ଅନାଇଁ ମୁଁ । ୨
ନୀପମୂଳେ ତୁମେ ବାଇଲେ ବଂଶୀ
ମନ ପ୍ରାଣ ମୋର ଉଠେ ଉଲ୍ଲସି ହେ । ୩
ଗୋବତ୍ସା ଚରାଇ ଆସିଲା ବେଳେ
ଦେଖିବାକୁ ଧାଇଁ ମୁହିଁ ନରହେଲେ ହେ । ୪
ଶିରେ ଖୋସି ଜାମୁ ଡାଳ ହେ ଶ୍ୟାମ
ନାଚବାରେ ଲାଗି ରହେ ମୋ ମନ ହେ । ୫

ଶିଖିଚୂଳ ବନ୍ଧୁ ଥାଏ ଚୂଡର
ଝୁମୁ ଝୁମୁ ବାଜେ ପାଦେ ନୂପୁର ହେ । ୬
ଅଧରେ ମୋହନ ମୂରଲୀ ଶୋଭା
ଦେଖି ଛାଡ଼ି ମନ ହୁଅଇ ଲୋଭା ହେ । ୭
ଭାଲେ ଗୋରଚନା ଗୋପୀ ଚନ୍ଦନ
ଦେଖି ପୀଡ଼ା ବଏ ମନ୍ଦ ମଦନ ହେ । ୮
ଦେଖି କେବେ ତ୍ରିଭଙ୍ଗୀ ମୂରତି
କେଉଁ ପତିବ୍ରତା ଧରିବ ଧୃତି ହେ । ୯
ଝୁଲି ଝୁଲୁ ଯେବେ ଗୋପ କଟକେ
ଗ୍ଭଲୁଥାଅ ସଖାମାନେ ଛଟକେ ହେ । ୧୦
ନୀଳ ହାଣ୍ଡିଟିଏ ଗ୍ଭଲିଲା ପର
ମଣନ୍ତି ସକଳ ବରଜ ନାରୀ ହେ । ୧୧
ଘରେ ଘରେ ପଶି ସର ଲବଣୀ
ଚୋରି କରି ଖାଅ ମୂରଲୀ ପାଣି ହେ । ୧୨
ଯମୁନା କୂଳରେ ହୋଇଣ ଠିଆ
ଘାଟ ମାଗି ବୋଧେ ଭାଙ୍ଗ ମାଠିଆ ହେ । ୧୩
ଯେତେ ଦୁଷ୍ଟ କର୍ମ କର ମୋହନ
ସବୁ ମଣେ ମୁଁ ଖିଆଲି ସମାନ ହେ ।୧୪
ସକଳେ କହନ୍ତି ନନ୍ଦ ନନ୍ଦନ
ମୁଁ କହେ ତୁମେ ମୋ ହୃଦଚନ୍ଦନ ହେ ।୧୫।
ଯାହା କର ମୋର ନାହିଁ ବାରଣ
ଆଶ୍ରା କରି ଅଛି ଚାନ୍ଦା ଚରଣ ହେ ।୧୬।
ବାଜୁ ପଛେ ଅପବାଦ ନାଗରୀ
କହୁ କଳଙ୍କିନୀ ଜଗତ ସାରା ହେ ।୧୭।
କାହା କଥାକୁ ମୋ ନାହିଁ ତ ଡର
ଏକା ପ୍ରଭୁ ତୁମ୍ଭେ ହୁଅ ମୋହର ହେ ।୧୮।
ଯୁଗେ ଯୁଗେ କଥା ଥାଉ ରହିଣ ।
ରାଧାକୃଷ୍ଣ ନାମ ଏକ ହୋଇଣ ହେ ।୧୯।

ଗୋପାଳ କୃଷ୍ଣର ଏତିକ ଅଳି
ଦୟା କରି ରଖ ଶ୍ରୀବନମାଳି ହେ ।୨୦।

—*—

## ଶ୍ରୀରାଧାଙ୍କ ପ୍ରତି ଶ୍ରୀକୃଷ୍ଣ

### ତାଳ—ଖେମଟା

ବ୍ରଜ କିଶୋରୀ ରୂପେଶ୍ୱରୀ ପ୍ରିୟେ ଗୋ !
ବନ୍ଧା ମୁଁ ପ୍ରେମ ଡୋରେ ତୋହର
ଯେବେ କରିବୁ ହେଳେ ତାଳେ ନିଗୁଣ
ତେବେ ମରିବ ଭକ୍ଷି ନିଶ୍ଚେ ଜହର ।୦।
ପ୍ରେମର ନିଶାଣୀ ତୋ ପଣନ୍ତ କ୍ୟାନ
ସାକ୍ଷୀ ଅଛନ୍ତି ମୋର ଶିକ୍ଷି ଚନ୍ଦ୍ରିକା
ମୋହନ ମୁରଲୀ ରାଧେ ରାଧେ ବୋଲି
ରଟୁଥିବନ୍ତି ଅଷ୍ଟ ପ୍ରହର ।୧।
ସଲିଳ ବିହୁନେ···ନବଞ୍ଚଇ ଯେସନ୍ତେ
ଝଷକୁଳ ଆଗୋ ଏଣୀ ନୟନୀ
ତେସନ ମୋହନ···ହେବ ଉସାଲସା
ଆନ ହେବ ନାହିଁ କଥା ନକର ।୧।
ମୁଁ ପିଣ୍ଡ ତୁ ପ୍ରାଣ···ରେ ରାମା ରତନ
ମୁଁ ସରସୀ ତୁହି ଜଳ ଭଣ୍ଡାର
ତୋହ ବିନା ଶୂନ୍ୟ···ଚଉଦ ଭୁବନ
ଲିଭି ଯିବ ଏ କୃଷ୍ଣର ସୁନ୍ଦର ।୨।
ମନର ଉରଜା ରମ୍ୟାରଣ ରାଜା
ସଜାପଟେ ହିଅ ଦୋଷ ଦେଖିଣ
ତେଜ ନାହିଁ ଭଲେ ଉରଜରୁ ହେଲେ
ଅବଳ ମାନଙ୍କ ଏତେ ମୋହର । ୩ ।

ଆନନ୍ଦ ରୂପିଣୀ···ପ୍ରେମମୟୀ ଧନ୍ୟ
ରସମୟ ମୂର୍ତ୍ତି ସିନା ତୋହର ।
ଗୋପାଳକୃଷ୍ଣର ସେବା ନିରନ୍ତର
ଥାଉ ଏହି ଯୁଗଳ ଶ୍ରୀପଦ୍ମର । ୪ ।

—✳—

## ସଖୀ ଏବଂ ଶ୍ରୀରାଧା

ଶ୍ରୀରାଧା—କହ କହ ସହଚରୀ
କି କହିଲେ ସେହି କୁଞ୍ଜ ବିହାରୀ । ସହଚରୀରେ
କିବା ଦେଲେଣି ପାଶୋରି । ୧ ।
ଲଳିତା—ଶୁଣ ଗୋ ହେମ ବରଣୀ
ତୁମରି ବିରହେ କାଳିଆ ସୁନା । ବନୋଦିନୀଗୋ
ହୋଇଛନ୍ତି ଦୁଃଖମନା । ୨ ।
ଶ୍ରୀମୁଖ ଶୁଖି ଯାଇଛି
ଝର ଝର ନେତ୍ରୁ ନୀର ବହୁଛି । ବିନୋଦିନୀ ଗୋ
ତନୁଟି କ୍ଷିଣ ଦିଶୁଛି । ୩ ।
କେଶରେ ନାହିଁ ଶରଧା
ମନେ ପୂରିଅଛି ଅଶେଷ ବାଧା । ବିନୋଦିନୀ ଗୋ
ନିରବଧି ନେତ୍ର ମୁଦା । ୪ ।
ଯେତେ ଜଣିଲି ମଣାଇଁ
କିଛି ନ କହିଲେ କଳା କହ୍ନାଇଁ । ବିନୋଦିନୀ ଗୋ
ଖାଲି—ଲୁହ ପଡ଼ୁଥିଲା ବହି । ୫ ।
ଶିଖି ପୁଚ୍ଛଟି ତାଙ୍କର
ତଳେ ପଡ଼ି ଦିଶୁଥିଲା ଅସାର । ବିନୋଦିନୀ ଗୋ
ତନୁ—ଦିଶୁଥିଲା ନାରଖାର । ୬ ।
ଅଧରେ ମୁରଲୀ ଦେଇ
ଖାଲି—ରାଧା ରାଧା ଡ଼ାକନ୍ତି ସେହି । ବିନୋଦିନୀ ଗୋ
ତୋହ ଭାବରେ ବିହ୍ୱଳ ହୋଇ । ୭ ।

ନନ୍ଦଘେଶ ଆସିଲ ଫେର

ସେ ବେଳରୁ ମନ ଗଲାଣି ମରି । ବନୋଦ୍ଭବା ଗୋ
ସବୁ ଯିବଟି ବରଜ ଛିରି । ୮ ।

ଯାହା ଆସେ ତୋ ବଶ୍ୟରେ
ବୁଦ୍ଧି ସୁଦ୍ଧି ଭାବା କର ଶୀଘ୍ର ରେ । ବନୋଦ୍ଧନୀ ଗୋ
ଯେବେ ସେ ନଥାଏ ଶ୍ୟାମଠାରେ । ୯ ।

ଶ୍ରୀରାଧା—ଲଳିତା ବଚନ ଶୁଣି
ନେଣେ ଅଶ୍ରୁ ଭରି ତରୁଣୀ ମଣି । ବିଷାଦ ମନେ
ଲଳାଟେ ମଣ୍ଡିଲେ ପାଣି । ୧୦ ।

ହା ହା ମୋ ପ୍ରାଣ ମାଧୋଇ
ଲୁଚିଯିବ ସତେ ଭ୍ରମର ପାଇଁ ମୋ ପ୍ରାଣବନ୍ଧୁ ହେ
ବ୍ରଜେ ମୋର ଗତି ନାହିଁ । ୧୧ ।

ଶୁଣ ଅଭାଗିନୀ ଲଳି
ଜାଣୁ ଜାଣୁ କମ୍ପା ଏ ଦୁଃଖ ଭୋଗି । ପ୍ରାଣବନ୍ଧୁ ହେ
ନେବ ଯାଇ ଦୋଷ ମାଗି । ୧୨ ।

ବାଜୁ ପଟ୍ଟେ ନନ୍ଦା ବାଜା
ମୁଁ ଭୂଲି କଙ୍କଣ ଜୁଟେ ମୋ ରଜା । ପ୍ରାଣବନ୍ଧୁ ହେ
ଶଙ୍କ ଦେଉଛୁ କଲିଜା । ୧୩ ।

ମନ ନରହଇ ଘରେ
ବଂଶୀଧ୍ୱନି ଯେବେ ବାଜେ କାନରେ । ପ୍ରାଣବନ୍ଧୁ ହେ
ଯମୁନାକୁ ଯାଏ ଖରେ । ୧୪ ।

ଦିନେ ନ ଦେଖିଲେ ମୁଖ
ପ୍ରାଣେ ପୂରିଯାଏ ଅଶେଷ ଦୁଃଖ । ପ୍ରାଣବନ୍ଧୁ ହେ
ଛାତି ହୁଏ ଦକ ଦକ । ୧୫ ।

ଭ୍ରମର ଘନ ବରନ
ଦେଖି ସୁଖୀହୁଏ ତାପ ନୟନ । ପ୍ରାଣବନ୍ଧୁ ହେ
ପ୍ରୀତିରେ ଡୁବଇ ମନ । ୧୬ ।

ତୁମେ ମୋର ଗଳାହାର
କାଇଁଚ ମାଳଅ। ମରନ୍ତି ଧର । ପ୍ରାଣବନ୍ଧୁ ହେ
ହେଲ କ୍ଷମା ବାରଖାର । ୧୭ ।

ମୁଁ ପାପିନୀ ଦୋଷୀ ହେଲି
ନେହ ପ୍ରତିମାକୁ ଏ ଦୁଃଖ ଦେଲି । ସହଚରୀରେ
କ୍ଷୀରେ ଖାର ମିଶାଇଲି । ୧୮ ।

ସୁଧାକୁ ମଣିଲି ପାଣି
ଅନାଦରେ ଫିଙ୍ଗିଲି ଜାଣି ଜାଣି । ସହଚରୀରେ
ଝଁଣ ଯିବେ ମୋ ପରାଣ ମଣି । ୧୯ ।

ଯେନ ମୋହର ଜୀବନ୍ତ
ଆଜ୍ଞ ଥରେ ତୁମ୍ଭ ଚଳ ଝଟକି ସହଚରୀରେ
କଢ଼ କର ପ୍ରଭୁ ପତି । ୨୦ ।

ବର ହେ ଅଧୀର ହୋଇ
କୁଞ୍ଜେ ଅଛି ତାଙ୍କ ସରଣୀ ଚାହିଁ । ସହଚରୀରେ
କୁସୁମେ ଶେଯ ସେଜାଇ । ୨୧ ।

କ୍ଷମାକର ସର୍ବ ଦୋଷ
ଝୁଲି ଝୁଲି ଆସିବେ ପୀତବାସ । ସହଚରୀରେ
ଖଣ୍ଡିବାକୁ ମୋର ତ୍ରାସ । ୨୨ ।

ହରଷି କହିବେ ଯେବେ
ଜହର ଖାଇ ମୁଁ ମରିବି ତେବେ । ସହଚରୀରେ
ଖ୍ୟାତି ରହିବ ଭବେ । ୨୩ ।

ନଦେଖି କଳା ବଦନ
ହେଉ ଦିନ କାଟି ଯାଏ କଦନ । ସହଚରୀରେ
ଭଗାଇ ହୁଏ ମଦନ । ୨୪ ।

ଭସି ଯାଉଛି ଦୁଃଖରେ
ପଦ ତରଣୀରେ ତାରନ୍ତୁ ଖରେ । ଅଭାଗିନୀଙ୍କ
ବାନ୍ଧି ବାହୁ ଯୁଗଳରେ । ୨୫ ।

ଲଗାଇଦେଲେ ଚେଣ୍ଡୁଧାର
ନଷ୍ଟେ ଉଚ୍ଛିଷ୍ଟ ଖଞ୍ଜନ ପୂର । ସହଚରୀରେ
ଏଣ୍ଡ ଲାଗୁଛି ସଂସାର । ୨୬ ।

× × ×

ଶ୍ରୀରାଧା ବଚନ୍ତୁ ଶୁଣି
ଚନ୍ଦ୍ରଶ୍ରୀ ଲୁଚିତା ତରୁଣୀ ମଣି । ତତ୍ପରେ ଯାଇ
ଭେଟିଲ ମୁରଲୀ ପାଣି ।୨୭ ।
ଗୋପାଳକୃଷ୍ଣ ଭଣନ୍ତ
ଧେୟୁ ମୋର ସେ ଶ୍ରୀମନ୍ତ ଶ୍ରୀପଦ । ଏ ଭବଦ୍ଭୁମେ
ତାଙ୍କ ପଦେ ଥାଉ ମନ । ୨୮ ।

## ଶ୍ରୀକୃଷ୍ଣଙ୍କ ସ୍ତୁତି—ଲଳିତା

ତାଳ—ଆଠତାଳୀ

ହେ ଶ୍ୟାମଘନ । ତବ ବିରହରେ ଗୋପେଶ୍ୱରୀ କ୍ଷୀଣ । ୦ ।
ବିରହ ହୁତାଶେ ଜଳେ ନିତି ତନୁ
ଝର ଝର ବାରି ଝରଇ ନୟନୁ
ମୋହନ ମୂରତି ନପାଶୋର ମନୁ
ନିରତେ କାତର ରୋଦନ । ୧ ।
ସଜନୀଏ ମିଳି କହିଲେ ବୁଝାଇ
ଖୁଲ ଡ଼ାଳ ତଳେ ହେଲେ ନିଷ୍ଣୁଣଇ
ହାହା ଶ୍ୟାମ ଶ୍ୟାମ ବୋଲି ସେ ଝୁରଇ
ଗୁପ୍ତ କମ୍ପେ ଦମ ଦମ ହେ । ୨ ।
ଅନ୍ତରୁରେ ତନୁ ସଦା ଜର ଜର
ମୁହୁର୍ମୁହୁ ହୁଏ ବିରହେ କାତର
ପଚାରିଲେ କିଛି ନଦେଇ ଉତ୍ତର
ଚିଖାଦେ ଭୁଜେ ନାଖୁକ ହେ । ୩ ।

ଚନ୍ଦନ କସ୍ତୁରୀ ଲେପିଲେ ଶ୍ରୀଅଙ୍ଗେ
ଯୋଉଛି ଦର୍ପ ବାଳୀ ଅନ ଅନୁରାଗେ
କେବଳ ଅନାଏ ପଥକୁ ଅପାଙ୍ଗେ
ପାଇବାକୁ ଦରଶନ । ୪ ।
ସଜନ୍ତୁ ସଖୀଏ ଯାଏ କଞ୍ଜକେଶା
ଅଞ୍ଜନ ନୟନ କରୁନାହିଁ କଷା
ଭାଳି ଭାଳି ଉଡ଼ ଯାଉ ଅଛି ହଂସା
ମଉଳାଇ ଚନ୍ଦ୍ରାନନ । ୫ ।
ଶ୍ରୀଚରଣ ଦାସୀ ଠାରେ ଥିଲେ କୃପା
ପ୍ରକାଶ ମୋହନ ଥରେ ଅନୁକମ୍ପା
ଚମ୍ପା ବରଣୀକୁ ପୋଡ଼ିମାର କମ୍ପା
ହୋଇ କରୁଣା ନିଧାନ । ୬ ।
ଛନ୍ଦା ଚରଣରେ ହୋଇଛି ସେ ବନ୍ଧା
ମୁଣ୍ଡେ ମୁଣ୍ଡାଇଛି ସବୁ ନିନ୍ଦା ବାଧା
ତଥାପି ତୁମର ନାମେ ତା ଶରଧା
ଗୋପାଳକୃଷ୍ଣ ରଚନ । ୭ ।

—*—

## ଲଳିତାପ୍ରତି ଶ୍ରୀକୃଷ୍ଣ

ରାଗ—ଶଙ୍କରା ଭରଣ

ସାଅ ଗୋ ଲଳିତେ ସେନ ନିବେଦନ ମୋର
ସର୍ବାଶ୍ୱାସ ବଦନାରେ କହିବ ଏ ଗିର
ସେହି ଜଳ ମୁଁହି ମୀନ
ତାର ଅଦର୍ଶନେ ନିରହିବଣି ଜୀବନ । ୧ ।
ଚନ୍ଦ୍ରକୁ ଚେଳି ଚକୋର ଲଭଇ ଯେ ଗତି
ରାଇହୀନ ଜୀବନ ମୋ ହୁଏ ସେହି ମତି
ନିଶା ଚକ୍ରବାକ ପରି
ବାହୁନି କାନ୍ଦୁଛି ତାର ଗୁଣକୁ ସୁମରି । ୨ ।

ଝଁସ କେତନ, ର ଦାଉ ନପାରିବ ସହି
ନିଶ୍ଚେ କାଳିନ୍ଦୀ ହ୍ରଦରେ ଝାସ ଦେବ ଯାଇ
କଥା କାଳେ କାଳେ ଥିବ
କିଶୋରୀ ଲାଗି ପରାଣ ତେଜିଲା ମାଧବ । ୩ ।

ଛଇଳ ରତନ ସେ ମୋ କଣ୍ଠ ତଟ ମଣି
ମାନସ ନାୟିକା ପ୍ରେମ ସାଗରର ଖଣି
ଯେବେ ଦେବ ସେ ପାଶୋର
ପରାଣ ତେଜିବ ନିଶ୍ଚେ ତାଙ୍କୁ ଝୁରି ଝୁରି । ୪ ।
ଏ ବରଜେ ଜନ୍ମ ହେଲି ସିନା ତାହାପାଇଁ
କରେ ଯଷ୍ଟି ଧେନୁ ଧାଏଁ ଗୋବତ୍ସା ଚରାଇ
ଧରି ମୋହନ ମରଲୀ
ଫୁକାର ସନ୍ତୋଷ ପାଏ ରାଧେ ରାଧେ ବୋଲି । ୫ ।
ରାଧା ମୋ ହୃଦ ଚନ୍ଦନ ରାଧା ମୋର ଜପ
ରାଧା ମୋର ଧ୍ୟାନ ଜ୍ଞାନ ରାଧା ମୋର ତପ
ମୁହିଁ ତାର ଯଶଙ୍କର
ସେ ପର କଲେ କହ ମୁଁ ହୋଇବି କାହାର ? । ୬ ।
ରାଧା ଲାଗି ମାଧବ ମୁଁ ରାଇ ଲାଗି କାହ୍ନୁ
କିଶୋରୀ ଲାଗି କିଶୋର ହେଲି ଜନ୍ମଦିନୁ
ବୃନ୍ଦାବନ ରାସ ଖେଳ
ବୃଥା ହେବ ସବୁ ପର କଲେ ସେ ଛଇଳୀ । ୭ ।
ଆଗୋ ଲଳିତେ ପରାଣ ପୋଡୁଛି ମୋହର
ଶ୍ରୀରାଧା ବଦନେ ବୋଲି ଜାଣିଥା ନିକର
ରାସେ ନ ଆସଇ ନନ୍ଦ
ବେଳୁ ବେଳ ବଢ଼ିଯାଏ ବିରହ ବିଚ୍ଛେଦ । ୮ ।
କର ଧରି କହୁଛି ମୁଁ ଦୟାକର ଥରେ
ଭେଟାଅ ନେଇଣ ରାଜୁ ଜେମା ସଙ୍ଗତରେ
ଧର୍ମ ହୋଇବ ଅପାର
ତୁମର ଯଶ ଘୋଷିବ ଏ ସଚରାଚର । ୯ ।

ମାନଙ୍କ ସେ ଉନୋଦନା କହୁଅଛ ରୋଷ
ଦେଖା ହେଲେ ଶ୍ରୀଗୁରୁମୁରେ ମାଗିନେବ ଦୋଷ
ହୋଇ ବନ୍ଧୁ ନଉଗ୍ରଳ
ଗୋପାଳ କୃଷ୍ଣ କହଇ ସର୍ମି ବ ମଙ୍ଗଳ । ୧୦ ।

---

## ଶ୍ରୀକୃଷ୍ଣପ୍ରତି ଲଳିତା

ତାଳ—ଆଠତାଳ

ଆହେ ଶ୍ରୀ ରଙ୍ଗା ଚସୁର
ଏ ସଂସାର ସାର          ମୁରଲୀଧର ହେ
ଖଣ୍ଡ କୋଟି ଜଗତର । ୦ ।
ଯେ ପଦ ସରୋଜ          ରଜ ଲଭିବାକୁ
ବ୍ରହ୍ମା ହର ନିରନ୍ତର
ମାଗୁଛନ୍ତି କର          ପ୍ରସାରି ବିନୟେ
କୃପା ଭିକ୍ଷୁ ପରକାର । ୧ ।
ଯେ ଚରଣ ଛୁଇଁ          ମୂର୍ତ୍ତିମତୀ ହେଲା
ବନେ ଅହଲ୍ୟା ପଥର
ସେ ଚରଣ ଧୋଇ          ସାଯୁଜ୍ୟ ମୁକତି
ହେଲେ ଲଭିଲା ଧିବର । ୨ ।
ମିଠା, ଖଟା, ପିତା,          ଫଳ ଚାଖି ଦେଲା
ସ୍ନେହେ ଶବରୀ ମାତର
ଘୃଣା ଟେଟଶ ପ୍ରଭୁ !          ଉଚ୍ଛିଷ୍ଟ-ଖାଇଲ
ଭକ୍ତ ଭାବରେ ବିଭୋର । ୩ ।
ଭକ୍ତ ଲାଗି ସ୍ତମ୍ଭୁ          ପ୍ରକାଶିତ ହେଲ
ଧରି ନୃସିଂହ ଶରୀର
ଚିରି ଦେଲ ହେଲେ          ହିରଣ୍ୟକୁ ବନେ
ଶୁଷ୍କ ତୃଣ ପରକାର । ୪ ।

କ୍ରୋଧେ ଅନ୍ଧ ହୋଇ ଶ୍ରୀବଶିଷ୍ଠ ବ୍ରାହ୍ମଣ
ଚରଣ କରୁ ପ୍ରହାର
ସ୍ନେହରେ ଯେ ଚିହ୍ନ ବକ୍ଷରେ ବହିଲ
କ୍ଷମି ସବୁ ଦୋଷ ତାର । ୫ ।

ଭକତର ବନ୍ଧୁ ଯେଣୁ ଦୀନବନ୍ଧୁ
ତେଣୁଟି ସଦା ଉଦାର
ଭକତ ନିମନ୍ତେ କରିପାର ସବୁ
ନିଜକୁ ମଣି ଅସାର । ୬ ।

ଇନ୍ଦ୍ର ଜନେ ଦଣ୍ଡ ଦେବାକୁ ପ୍ରଚଣ୍ଡ
କ୍ରୋଧେ ହୋଇ ଜର ଜର
ସାତ ରାତି ସାତ ଦିନ ବରଷିଲା
ଘୋର ଆଷ୍ଟେ ଜଳଧର । ୭ ।

ଘୋର ବାତ୍ୟା ଭୁଲେ ପଥର ଛେଚିଲା
କରି ଘୋର ଅନ୍ଧକାର
ଭକତଙ୍କ ହିତେ ଟାଣି ଆଙ୍ଗୁଳିରେ
ଟେକି ଧରିଲ ମନ୍ଦର । ୮ ।

ହାରି ଯାଇ ଇନ୍ଦ୍ର ଶରଣ ପଶିଲେ
କେବେ ଦେଖିଲୁ ଆମ୍ଭର
ବତ୍ସା ହରି ନେଇ ବ୍ରହ୍ମା ହାରି ଯାଇ
ଆଶ୍ରା କଲା ଶ୍ରୀପଦୁର । ୯ ।

ମହାଜନ ମାନେ ଯେ ପଦ ପଙ୍କଜେ
ଭୃଙ୍ଗ ପରି ନିରନ୍ତର
ମଧୁ ପାନ ଆଶେ ମିଳୁଛନ୍ତି ଆସି
ସେହିତ ସଂସାରେ ସାର । ୧୦ ।

ଗୁର ଗୋପାଙ୍ଗଣୀ ମାଙ୍ଗ ଆମ୍ଭେ କାହ୍ନୁ
ମରତେ ଜନ୍ମ ଆମ୍ଭର
ତୁମ୍ଭ ଦରଶନେ ହୋଇ ଅଛୁ ଧନ୍ୟ
ଯୋଗ୍ୟଟି ନୋହୁ ତୁମ୍ଭର । ୧୧ ।

ଶ୍ରୀରଙ୍ଗା ଚରଣ ସେବା ଖଟିବାକୁ
କମଳା ସଦା ତତ୍ପର
ଗାଣ୍ଠୋ ନେଇ କାଣ୍ଡୀ ପରିଦୃଶ୍ୟ ରୂପେ
ଝୁମନ୍ତି ଯାଇ ପୟୂର । ୧୨ ।
ସେହି ମହା ପ୍ରଭୁ ଲୀଳା ଖେଳା ଲାଗି
ବ୍ରଜେ ହୋଇ ଅବତାର
କଳା କାହ୍ନୁ ରୂପେ ଆମ୍ଭ ଆଖି ପଟେ
କରୁଛ ମାୟା ସଞ୍ଚାର । ୧୩ ।
ଗୋପାଙ୍ଗଣୀ ରାଧା ସ୍ୱବରେ ଶରଧା
ଏତେ ତାହାଁଙ୍କ ତୁମ୍ଭର
ଲୁଚିଯିବ ପ୍ରଭୁ ସହ୍ୟ ନପାରିବ
ଶୁଣି ତୁମ୍ଭ ଦୁଃଖ ଗିର । ୧୪ ।
କୋଟି କୋଟି ରାଧା ଇଚ୍ଛିବେ ପ୍ରଭୁହେ
ସେବିବାକୁ ଶ୍ରୀପୟର
ଏଭଳି କଥାକୁ ଅଧୀର ହୋଇଣ
ଗଡ଼ା ନାହିଁ ଅଶ୍ରୁଧାର । ୧୫ ।
ମୋ’ରାଣ ମାଧବ ଚିନ୍ତା କର ତ୍ୟାଗ
ଆସ ମୋ ଭୁଲେ ନକର ।
ଆଜି ଭେଟାଇବ ବନୋଦ୍ଧମା ରାଣୀ
ଗୋପାଳ କୃଷ୍ଣ ତତ୍ପର । ୧୬ ।

—*—

## ମିଳନ ମାଧୁରୀ

ତାଳ—ଆଠତାଳ

( ଦେଖ ) ମିଳନ ମାଧୁରୀରେ । ସହଚରୀ !
କୁଞ୍ଜପଟେ ବାଜୁଅଛି ମଙ୍ଗଳ ମହୁରୀ ରେ । ୦ ।
ଆଲଟ ଚାମର ଘେନ
ଲଳିତା ବିଶାଖା ବେନ
ଡାକୁଛନ୍ତି ଧୀରେ ଧୀରେ ନେବେ ଠାରି ଠାରି ରେ । ୧ ।

କୁଂଜ ଦୋଳ ସିଂହାସନେ
ସ୍ନେହ ସମର୍ପଣ ମନେ
ବିଜେ ଯୁଗଳ ଛନ୍ଦରେ ଗୁଣ ଗିରିଧାରୀ ରେ । ୨ ।
କସ୍ତୁରୀ ଚନ୍ଦନ ଗୋଳି
କୋଳନ୍ଦିଏ ଚନ୍ଦ୍ରାବାଳୀ
ଇନ୍ଦୁରେଖା ବାସଜଳ ମାରେ ପୀଚକାରୀରେ । ୩ ।
ଗୁନ୍ଥି ସଜଫୁଲ ମାଳ
ଚମ୍ପକଲତା ଛଇଳ
ଯୁଗଳ ମୂରତି ଗଳେ ଦିଏ ସଜ କରିରେ । ୪ ।
ତାମ୍ବୁଲ ପେଟିକା ଧରି
ଧୀରେ ତୁଙ୍ଗ ବିଦ୍ୟାଗୋରୀ
ଭୁଞ୍ଜାଏ ଗୁଣି କାହ୍ନୁଙ୍କ ମୁଖେ ଥିରି ଥିରି ରେ । ୫ ।
ଚମ୍ପକ ଲତା ଛଇଳ
ସ୍ନେହେ ଦିଏ ଦୁଲଦୁଲୀ
ସୁଦେବୀ କା ରଙ୍ଗ ଦେବୀ ବନ୍ଦା ପନା କରିରେ । ୬ ।
ଗାଆନ୍ତି ମେଳନଗୀତି
ସଭିରେ ଫୁଲାଇ ଛାତି
କର୍ପୂର, ଚନ୍ଦନ, ଚୁଆ ଗୋଳା ପାଏ ଭରିରେ । ୭ ।
ସକଳେ ହୋଇ ମଣ୍ଡଳ
ଦେଇ ଘନ ହୁଳ ହୁଳୀ
ହସି ନାଚ ଖେଳ କୁଦୀ ପିଚକାରୀ ମାରୀ ରେ । ୮ ।
ବାଇଲେ ବିବିଧ ବାଦ୍ୟ
ଶୁଣି କୁଞ୍ଜ ବନ ସ୍ତବ୍ଧ
ମୃଦଙ୍ଗ ପଖଉ ରବା ମଙ୍ଗଳ ମହୁରୀ ରେ । ୯ ।
ଗାଇଲେ ମଧୁର ଗୀତ
ହୋଇଣ ଉଲ୍ଲସିତ ଚିତ୍ତ
ଗୋପାଳ କୃଷ୍ଣ ଭଜଇ ଗୋପ ଗିରି ଧାରୀ ରେ । ୧୦ ।

—*—

## ସ୍ତବଗାନ

ଜୟ ଜୟ ବ୍ରଜ ଭୁବନ ଚନ୍ଦ୍ରମା
ଜୟ କାହ୍ନୁଆ କିଶୋର
ଜୟ ଜୟ ବାଙ୍କ ଚୂଳିଆ କହ୍ନାଇ
ଜୟ ଦଧି ଦୁଗ୍ଧ ଚୋର । ୧ ।
ଚନ୍ଦନ ଚର୍ଚ୍ଚିତା ବୃଷଭାନୁ ସୁତା
ଜୟ ରାଧା ବିନୋଦିନୀ
କୃଷ୍ଣ ପ୍ରାଣାଧିକେ ଜୟ ଗାନ୍ଧର୍ବିକେ
ଗୋପ ଶୋଭା ବିବର୍ଦ୍ଧିନୀ । ୨ ।
ରସ ରାସେଶ୍ୱରୀ ଭୁବନ ଈଶ୍ୱରୀ
ନାଗରୀ ମଉଡ଼ ମଣି
ଶ୍ରୀପଦ ସରୋଜ ମଧୁ ଲୋଭେ ନତ
ଲୁଟନ୍ତି ମଧୁପ ଶ୍ରେଣୀ । ୩ ।
ଗୋକୁଳ ମଣ୍ଡନ ଯଶୋଦାନନ୍ଦନ
ଜୟ ହେ ବାଙ୍କ ଚୂଳିଆ
ଅନ୍ତୁଡ଼ ଶାଳରେ ପୂତନା ନାଶିଲ
ଗୋପ ବାଳକ ମେଳିଆ । ୪ ।
ତୃଣା, ବକା, ଅଘା, ଶକଟା ନାଶକ
ଗୋବର୍ଦ୍ଧନ ଗିରିଧାରୀ
ଶରତ ରାସର ରସିକ ଶେଖର
ଜୟ କୁଞ୍ଜବନଚାରୀ । ୫ ।
ଧୂଳି ଖେଳ ଛଳେ ଅନ୍ଧ ବ୍ରାହ୍ମଣକୁ
ଚକ୍ଷୁଦାନ କଲ ହେଳେ
କାଳନ୍ଦୀରେ ପଶି କମଳ ତୋଳିଲ
କାଳୀୟକୁ ଦଳ ବଳେ । ୬ ।
ଭୂତ ହୋଇ ରାଧାପୁରେ କଲ କେଳି
ଉଭାଇ ବରଜ ସାରା

ସପ୍ତଜଳା ଜଳଧୀରେ ଜଳଚୋଳ
ଗଣ ହେବେଲେ ସତ୍ତା ସ୍ଥିତି । ୭ ।
ଧନ୍ୟ ଧନ୍ୟଗଣ ନଗାନା କଶୋଶ
କଳାକାଳୁ ମନୋହାଷ
ଯା ନାମ ଧରନ୍ତେ ନରକ ଯାତନା
ପ୍ରାଣୀଙ୍କୁ ପଳାଏ ଡର । ୮ ।
ଏ ବ୍ରଜ ବଜାରେ ରାଧା ନାମ ଗୋଟି
ଅମୃତରୁ ବଳ ସ୍ୱାଦ
ରାଧା ବିନା ନାହିଁ କୃଷ୍ଣ ଦରଶନ
ଯୁଗେ ଯୁଗେଟି ପ୍ରବାଦ । ୯ ।
ଯହିଁ ରାଧା ତହିଁ କୃଷ୍ଣ ଗୋ ସଙ୍ଗିନୀ
କୃଷ୍ଣ ଯହିଁ ତହିଁ ରାଧା ।
ରାଧା କୃଷ୍ଣ ନାମ ଜପ କର ପ୍ରାଣୀ
ହରଇ ଶମନ ବାଧା ।୧୦।
ଜମ୍ବୁନଦ ଗୋରୀ ଶ୍ରୀରାଧା କଶୋରୀ
ନୀଳ ମେଘ କୃଷ୍ଣ କାନ୍ତି
କଳାଧଳା ତନୁ ମିଳନ ଦର୍ଶନେ
ତୁଟି ଯାଏ ଭବ ଭ୍ରାନ୍ତି ।୧୧
ଚନ୍ମୟ ଚକ୍ଷୁ ରସରହ କୃଷ୍ଣ
ରାଧା ଆନନ୍ଦ ରୂପିଣୀ
ଚାପ ନୟନରେ ନଦେଖିଲେ ଥରେ
ଡରେ କାଳ ତରଙ୍ଗିଣୀ ।୧୨
ଆସ ଆସ ଗୋ ବରଜ ଲଳନା
ଧର ବନ୍ଦାପନା ଥାଳ
ବନ୍ଦାଇବା ଆଜ ଯୁଗଳ ଛନ୍ଦରେ
ଶ୍ରୀ କଶୋରୀ ବନମାଳ ।୧୩
ବୃନ୍ଦାବନାରଣ୍ୟ ଦ୍ୱାଦଶ କୁଞ୍ଜରେ
ଥାପି ଯୁଗଳ ମୂରତି ।

ରଞ୍ଜି ସଞ୍ଜବେଳେ ମଧୁର ସକାଳେ
କରିବା ନିତ୍ୟ ଆରତି ।୧୩।
ଜୟ ଜୟ ରସରସିକ ଶେଖର
ଜୟ ରସିକା କିଶୋରୀ ।
ଗୋପାଳ କୃଷ୍ଣର ମାନସ ଭ୍ରମର
ମାତେ ସଦା ମଧୁକରୀ ।୧୪।

—*—

## ଶ୍ରୀକୃଷ୍ଣଙ୍କ ପ୍ରତି—ଯଶୋଦା
### ତାଳ—ଖେମଟା

କଳାକାହ୍ନୁ ଉଠରେ ଉଠରେ ଦେଖ ପାହିଲାଣି ରାତି ।
କୁଞ୍ଜ କୋଣେ ଡାକିଲେଣି ପକ୍ଷୀ ନାନାଜାତି
କାକ-କହ୍ଳ ପାନ୍ତି ।୦।
ବହିଲାଣି ମନ୍ଦ ମନ୍ଦ ମଳୟର ବାତି
ଉପବନେ ଫୁଟିଲାଣି ଫୁଲ ଜାତି ଜାତି
ବାବୁ ବୋଲେ ପେନ୍ଥି ପେନ୍ଥି ।୧।
ଉଠି ବଳରାମ ଦେଖ ଧରେ ପ୍ରଜାପତି
ସଖାଗଣ ଆସି ଦ୍ୱାରେ ଠୁଳ ହୋଇଛନ୍ତି
ତୋତେ ଶ୍ରଦ୍ଧାରେ ଡାକନ୍ତି ।୨।
ଉଠି ମୁଖ ପଖାଳରେ ମୋ ଗୁଣ୍ଡୁଣୀ ହାଣ୍ଡି
ସର ସାକର ଲବଣୀ ରଖିଛି ସାଇତି
ଭୁଞ୍ଜି-ଦୁଇଭାଇ ହୋଇ ସାଥୀ ।୩।
ଏଡ଼େ ଅଳସୁଆ ବାବୁ ହେବାର ଅନୀତି
ନିଦ୍ରା ତେଜନ୍ତି ସର୍ବେ ହୋଇଲେ ପାହାନ୍ତି
ଧନ ଦେଖରେ ସମ୍ପ୍ରତି ।୪।
ଉଠ କଳା କଳେବର ନୋହୁ ଅପସାତି
ଗୋପାଳ କୃଷ୍ଣ କହଇ ନଶୁଅ ଶ୍ରୀପତି
ଦେଖ-ହେଲାଣି ପ୍ରଭାତି ।୫।

—*—

## ଶ୍ରୀକୃଷ୍ଣଙ୍କ ପ୍ରତି—ଭକ୍ତ

### କୀର୍ତ୍ତନ

ନାଚ ନାଚ ଗିରିଧାରୀ ବ୍ରଜବାଳ ମେଳେ
ମାତି ଉଠୁ ବ୍ରଜଦାଣ୍ଡ ତୁମ ନାଚ ଖେଳେ
ପ୍ରଭୁ ବାଜୁ ଶୁଭ ବାଜା
ଗୋପପୋଏ ପ୍ରଜା ତୁମ୍ଭେ ହୁଅ କାହ୍ନୁ ରାଜା ।୧।

ଗୋପ କନ୍ୟାମାନେ ଧରି ଆଲଟ ଚାମର
ପ୍ରଭୁ ମୁଗ୍‌ଧା କନ୍ୟାମାନେ
ପନାରରେ ପିଚକାରୀ ମାରନ୍ତୁ ଯତନେ ।୨।

କୁଞ୍ଜ ରବେ ରବିସୁତା ବଏ ହୁଳହୁଳ
ସୁବଳ ବଜାଏ ଶଙ୍ଖ କୁଲାଇ କାହାଳୀ
ପଢ଼େ ସୁଦାମ ମଙ୍ଗଳ
ଜୟ ଜୟ ଗୀତି ଗାଏ ଶ୍ରୀମଧୁ ମଙ୍ଗଳ ।୩।

ନାଚନ୍ତୁ ଗୋପାଳ ଧୁଏ ହୋଇ ଧାଡ଼ି ଧାଡ଼ି
ଖେଳିବେ ଗୋପ ଗୋପାଳେ ଆସିଣ ଲଉଡ଼ି
ଦେଖିଣ ଯଶୋଦା ରାଣୀ
ସ୍ନେହେ ଯାଇତ ରଖିବେ ସର ଯେ ଲବଣୀ ।୪।

ଗବାକ୍ଷେ ଅନାଇ ଥିବେ ବୃଷଭାନୁ ସୁତା
ମନେ ମନେ ହେଉଥିବେ ଅତି ଆନନ୍ଦିତା
ଅଷ୍ଟସଖୀ ହୋଇ ମେଳ
ବନ୍ଦାଇବେ ଯତନେ ଦେଇଣ ଅର୍ଘ୍ୟଥାଳ ।୫।

ସ୍ୱର୍ଗେ ଥାଇ ଦେବଗଣ ଦୁନ୍ଦୁଭି ବାଇବେ
ବ୍ରହ୍ମାସୁତ ନାଚି ନାଚି ବୀଣା ବଜାଇବେ ।
ହେବ ଜଗତ ଆନନ୍ଦ
ଲୀଳାରେ ମାତିବା ଦେଖି ଦେବ ଆଦିକନ୍ଦ ।୬।

ଜୟ ଜୟ ନନ୍ଦସୁତ ନାଟୁଆ କିଶୋର
ଅଶେଷ କୋଟି ଜଗତ ସାର ପରିସ୍ବର
ସେହି ଚରଣ କମଳେ
ଗୋପାଳ କୃଷ୍ଣ ମଜ୍ଜିଲ ନିରନ୍ତର ଲୁବ୍ଧେ । ୭ ।

—*—

## ଖଣ୍ଡିତା ବାଣୀ

### ରାଗ ମୁଖାରୀ—ତାଳ ଆଦି

ଯାଅ ଯାଅ ମୋ ପ୍ରାଣରୁ ଶ୍ୟାମ ଚେଣ୍ଡିକ ହେ । ଶୋଭା
କି ଭାଗ୍ୟ ଆଜ ମୋହର ପ୍ରଫୁଲ୍ଲ ମୁଖ ଭୂମ୍ବର
ଦେଖି ନେତ୍ର ଲୋଭ ନୋହିବ ପୁଣି କେବେ ହେ । ୧
କାଲି ନିଶୀ ଉଜାଗର ରଞ୍ଜିଲ କାହା ମନ୍ଦିର
ଶଯ୍ୟନ କରଯା ଯେନ ବାଣୀ କି ହେ । ୨
ଅଧରେ କଜ୍ଜ୍ୱଳ ଗାର ଦଶ୍ତୁଛି କି ମନୋହର
କରେ ଦେଖ କଙ୍କଣର ମଣି କି ହେ । ୩
ଭୂମ୍ବ କରନ ସମାନ ଜାଣିକେ ଦେଲୁ ବସନ
ଧନ୍ୟ ବୋଲି ସିନା ସେ ରମଣୀ କି ହେ । ୪
ଜଗନ୍ନାଥ ରାଜା ଭଣେ ଆହା ଧାନେ କି ଶୋଭା ଦିଶେ
ଆସିଲ କି ପଥ ଭୁଲି ଏଣିକି ହେ । ୫

—*—

* ଜଗନ୍ନାଥ ରାଜା—ପାରଳା ଖେମୁଣ୍ଡୀ ରାଜ୍ୟର ତତ୍କାଳୀନ ନରପତି । କବି ଗୋପାଳକୃଷ୍ଣ ଏହାଙ୍କ ଅଶେଷ ଗୁଣରେ ପ୍ରୀତ ହୋଇ ରାଜାଙ୍କ ନାମରେ ଭଣିତା କରି ଏହି କବିତାଟି ତାଙ୍କୁ (ରାଜାଙ୍କୁ) ଭେଟି ଦେଇଥିଲେ ।

—ସଂକଳକ—

## ଶ୍ରୀ କୃଷ୍ଣଚନ୍ଦ୍ରଙ୍କ ଭାବନା

### ( ରାଗ ବେହାଗଡ଼ା—ତାଳ ତ୍ରିପୁଟା )

ସରିଲାଣି ସୁଖ ସ୍ୱପ୍ନ କାହିଁରେ ନଲାଗେ ମନ
ବରଜିଲି ଦିନୁ ବ୍ରଜ ପୁର ସୁଖ ନିକେତନ । ପଦ

ରହିଛି ସିନା ଜୀବନ ଝୁରିବାକୁ ନିଶି ଦିନ
ଦିନ ଦିନକର ଯେନା ଯେନ ସୁଖ ବରଧନ । ୧

ପ୍ରାଣସମା କିଶୋରୀର ନ ଶୁଣେ ଅମିୟ ଗିର
ବଦନ କଳମଧୁର ହେଲାଣି ଏବେ ସ୍ୱପନ । ୨

କରୁଥିବ କିସ ବସି ଭାବୁଥିବ ରସାଳସୀ
ଆହାରେ ମନ୍ଦ କରମ ବିଧି ହେଲା ବିଡ଼ମ୍ବନ । ୩

ଆସିଥିଲା ବୃନ୍ଦାବଣ ସୁବଳକୁ କରି ସାଥୀ
ଦେଇଛି ଅବଧି ତଥି ଯିବ ବୋଲି ବୃନ୍ଦାବନ । ୪

ବ୍ରଜ ବଧୂ ଭଳି ଏତେ ଉଦନ୍ତ ଉଦ୍ଧବ ହାତେ
ପେଶୁଁ ଲେଖି ସେ ପଦାବ୍ଜେ ଗୋପାଳକୃଷ୍ଣ ବନ୍ଦନ । ୫

—*—

* ଏହି ସୁମଧୁର ସଂଗୀତଟି ମୋର ପ୍ରିୟତମ ବନ୍ଧୁ ଜାମୁଗାଁ ନିବାସୀ ରଘୁନାଥ ଆଚାର୍ଯ୍ୟଙ୍କ ଠାରୁ ସଂଗୃହୀତ । ବ୍ରଜପୁର ଛାଡ଼ି କୃଷ୍ଣଚନ୍ଦ୍ର ମଥୁରାକୁ ଗଲାପରେ ଆତ୍ମୀୟ ସ୍ୱଜନଙ୍କ ବିଚ୍ଛେଦରେ ତାଙ୍କର ମନ କିଭଳି ଭାବରେ ତଳପି ଉଠିଥିଲା ସରଳ ସୁନ୍ଦର ଭାଷାରେ ଗୋପାଳକୃଷ୍ଣ ତାକୁ ବର୍ଣ୍ଣନା କରିଛନ୍ତି । ଅନୁଭବ ବ୍ୟତୀତ ଅନ୍ୟ କୌଣସି ଲେଖକ ଏଭଳି ପ୍ରକାଶ କରିବା କ୍ୱଚିତ୍ ଦେଖାଯାଏ ।

—ସଂକଳକ—

## ରାଗ ମୋହନା—ରୂପକ ତାଳ

ହୋଇ ରଂଗେ ବହର । ହରି ସଙ୍ଗେ ଶ୍ରୀ କଶୋରୀ । ପଦ

ପବନେ ଚଳ ଚମ୍ପକ କଳୀ ଉମାଳେ ଢ଼ଳଳୀ ପରି । ୧
ପଶୁପୀବାଳା ଚପଳା ମାଳା ଘନକୁ ଘେରିଲା ପରି । ୨
ହେମାବ୍ଜ ବଦନ ବସୁସୀ ଜନ ମଧୁବ୍ରତ ଗିରିଧାରୀ । ୩
ଫିଙ୍ଗୁ ଅମ୍ବର ବ୍ରଜ ସୁନ୍ଦରୀ କୁଂଚୁଳୀ ଗଳ ବାହାରି । ୪
ଶ୍ରୀ ରାଧା ଫିଙ୍ଗୁ ମୋହର ଜଗୁ କାଳ ହୃଦରେ ସଞ୍ଚରି । ୫
ନଳ ସନ୍ତର ଧରି ରନ୍ତର ବଞ୍ଚନ୍ତ୍ର ପନର ବାରି । ୬
ଗୋପାଳକୃଷ୍ଣ ନୟନ ତୃଷ୍ଣ ହୋଇଲା ସେ ଶୋଭାସରି ।୭



## ରାଗ ନୀଳମ୍ବରୀ—ମିଶ୍ରରୂପ ତାଳ

ଯାଚ କଥା କୁହାଯିବରେ ଜାଣିଥା । ପଦ ।

ଲଳତ ନିଭଙ୍ଗଭଙ୍ଗୀ ନଟବର ସଜ
କରଧ ଉତ୍ତମ ବଂଶୀ ବସ । ମୁଖାମ୍ଭୋଜ ।
ଯଦ୍ଦ ମନରେ ପଡ଼ିବରେ । ୧ ।
ବାଧୁ ଉଦୟରେ କ କୁମୁଦ ନଫୁଟିବ
ଚନ୍ଦ୍ରକାନ୍ତ ମଣିକ ଦରବ ନସ୍ରବିବ
ଆସନ୍ତୁ ସେ ଜଣାଯିବରେ । ୨ ।
କ୍ଷଣ ନ ଦେଖିଲେ ଯାହା କୋଡ଼ଏଥର
ଆଳୀଙ୍କି ପଠାଇ ଅଣାଉ ଥାଇ ଖବର
ସେ ଲୋଭକ ଗ୍ଲାନ ହେବରେ । ୩
କାଳୀନ୍ଦ୍ର ମଥାରେ କଳ୍ପଦନ ସେ ନର୍ତ୍ତନ
ଯାହା ହୋଇଗଲୁ କରିଥିଲୁ ଯେ ଗୁମାନ
ଛନ୍ତ ଶତ୍ତେ କ ନ ଥିବ ରେ । ୪

ଅଭିମନ୍ୟୁ ସକୁଟୁମ୍ବ ହୋଇ ମଥୁରାକୁ
ଯିବ ବୋଲି କାଲି କହୁଥିଲା ଜଟିଳାକୁ
ପଡ଼ିଛି ତ ଉପଦ୍ରବ ରେ ।୫
ଛଳ ହୋଇ ଶ୍ରୀ ରାଧିକା ଆଳୀଙ୍କି ପାଖରୁ
ସେ କହନ୍ତି ପଠାଇଛି ପୂର୍ଣ୍ଣମାସୀ ଠାରୁ
ଗୋପାଳକୃଷ୍ଣ ଆସିବରେ ।୬



## ରାଗ କାଫି——ମିଶ୍ର ଝୁମ୍ପାତାଳ

( ତୋ ଲାଗି ମୋହନ ହୋଇ ଅଚେତନ—ବୃତ୍ତେ )

ସଙ୍ଗିନରେ ରାସରଙ୍ଗିନରେ ଦୋଷ
କ୍ଷମା କର ଜୀବବନ୍ଧୁ ରୁଷଣାରେ । ପଦ
ଯାକର ତୋ ପଦ ପଙ୍କଜ କିଂକର
ରଙ୍କ ରତନ ମୃଗାଙ୍କ ଲପନାରେ ।
ଶଙ୍କର ଚନ୍ଦ୍ର ନିଃଶଙ୍କାରେ ଦହୁଛି
ଅଙ୍କ ପର୍ଯ୍ୟଂକ ମୋ ମନ୍ତ୍ର ବିନାରେ । ୧
ଯୋଡ଼ ପାଣି ଜଣାଉଛି ରାମାମଣି
ଧରଣୀରେ ନଖଗାର ଲେଖନାରେ ।
କଣିଲ ଜନ ମୁଁ ତୋର ଆଜନ ମୁଁ
ଛନ୍ଦ ତୋଳ ଗୁନ୍ଥ ବେଣୀ ଲୋଟାନାରେ । ୨
ମାନସନ୍ଧୁ ମାନ ହର ସ୍ମର ଶରୁ
ରଖ ନୂଆଁ ସରୁ ମାଳ ବସନାରେ ।
ଜୀବଧା! ପଯନ୍ତୁ ପୀୟୁଷ ହାସରୁ
ଲବ ପ୍ରସରୁ ଗଞ୍ଜନ ନୟନାରେ । ୩
ଗୋକୁଳ କୁଳଜା ପରିଷଦ ରାଜା
ନ କଲେ କରୁଣା ମୁଁ ଜଣା ତୋହାରେ ।

ରାଧେ ରାଧେ ବୋଲି ସୋରଷୀ ସଲିଲରେ
ଝାସିବାର ଶୁଣୁ ଦିନାରେ । ୪
ଅବନତ ହୋଇ ଧରନ୍ତୁ ପଦ ଦୁଇ
ରାଧା ପ୍ରସନ୍ନତା କରି କଲନା ରେ
ଗଲେ ନିଜ ନିଜ କୁଞ୍ଜେ ଆଲୀ ବ୍ରଜ
ଗୋପାଳକୃଷ୍ଣ କରେ ଭାବନା ରେ । ୫

—*—

## ରାଗ କୀରବାଣୀ—ତାଳ ମିଶ୍ରରୂପ

ସେ ଦିନା ନୂଆକରେ ବ୍ରଜବନ୍ଧୁ ।
ଆସ ପଛକୁ ପଳାନା । ପଦ ।
ଆସୁଛନ୍ତୁ ତୋ ପାଛୋଟି ଆଗକୁ ସଙ୍ଗିନୀ ହୋଇ ରେ
ତଳାସ ବନ୍ଧିଲା ଅନାଅନା । ୧ ।
ଅଛନ୍ତୁ ଏତେ କାହିଁକ ରହିଥା ଆଉ ଘଡ଼ିକ
ପୂରାଇବେ ତୋ ମନ କାମନା । ୨ ।
ମୋ ପାଶେ ଆଜ ରଜନୀ ରହିଥିବୁ କ ସଜନୀ
ତନୁ କୁ ମୋ ପୋଛନ ପକାନା । ୩ ।
ପୀରତ କଳପଲତା କାନ୍ତ କୁଳାଧି ଦେବତା
ଲୁଚବୁ କେହି ଚନ୍ଦ୍ର ବଦନା । ୪ ।
ଛଡ଼ାଇ ଘେନବ ଲଜ୍ଜା ନିକୁଞ୍ଜ କୁସୁମ ଶଯ୍ୟା
କଲେ ଗୋପାଳକୃଷ୍ଣ ରଚନା । ୫ ।



## ରାଗ ଝଂକୋଟି—ଆଦିତାଳ

ଶ୍ୟାମସଖି ରାଧା ସୁଧାକର ମୁହିଁକି ।
ଚାହିଁଲେ ଘଟଣା ଘଟନାଶ ସୁନ୍ଦର ପଣକି । ପଦ ।

ବନେ ଦୂର ଦୂରରେ ବ୍ରଜ ରାଜ ପୁରରେ
ବିଲୋକି ମୁଁ ଅନୁମାନ ଥିଲି ଦୁହିଁକି । ୧ ।

ଯୁଗଳଙ୍କୁ ଚିତ୍ରରେ ତାରତମ୍ୟ ଜଗତରେ
ଏତା ଶ୍ରୁତିଚିତ୍ର ସରିହେବ ନାହିଁକି । ୨ ।

ନଦେଙ୍କେ କ ଖାଲି ଦା ମାଗିଥିଲେ ଯଶୋଦା
ଏବେ ଦେଖି ପୁଣି ନନ୍ଦ ଲକ୍ଷ୍ମୀ ବିହିକି । ୩ ।

ଯମୁନା ଜଳରେ ସୁନା- କଂଜ ଫୁଲ ଛବିନା
ବିଶୁଥାନ୍ତା ଜନେ ମୁହଁଳଙ୍କେ ବୁଝିକି । ୪ ।

ଗୋପାଳକୃଷ୍ଣ ଭାଷେ ରାଧା ଲାଜ ଦରଷେ
ହସି ହସି ଛଳେ ଚଳ ହେଲେ ଆଳୀକି । ୫ ।



### ସଖି ଉକ୍ତି *

( ଡ଼ାକବ ରାଧାରମଣ—ବୃତ୍ତେ )

ତରଙ୍ଗ ଭଲ୍ଲ ପାଙ୍ଗିଲ୍ଲ ରେ
ଶ୍ୟାମ ଅନୁରୂପେ ରାଧା ରଚିଲ୍ଲ ରେ । ପଦ ।
କୋଟି ରତିମାର ନଉଛଣାକୁ
ଭୁଲ ହେବେ ନାହିଁ ପଦ ତଳକୁ । ୧ ।

---

* ପ୍ରେମ ଆଗରେ ଭଲମନ୍ଦ କିଛି ନାହିଁ । ସାନ ବଡ଼, ପର ଆପଣାର କୌଣସି ବନ୍ଧନ ସେ ମାନେନା । କୃଷ୍ଣଙ୍କ ଭଳି ଜଗନ୍ମନ ନୟନାଭିରାମ ପୁରୁଷ ମଧ୍ୟ ସୁନ୍ଦରୀ ସ୍ତ୍ରୀଟିଏ ଦେଖି ପାରିଲେ । ସ୍ୱକୀୟା ଥାଉ ଥାଉ ପରକୀୟା ପ୍ରେମ କରୁଛନ୍ତି ବୋଲି କୌଣସି ଏକ ସଖୀ ମୁହଁରେ ଅଭିଯୋଗଟି ଗୋପାଳକୃଷ୍ଣ ସୁନ୍ଦର ଭାବରେ ବ୍ୟକ୍ତ କରିଛନ୍ତି ।

ସୁନ୍ଦର ପଣରେ ପ୍ରଥମ ଗିଲା ।
ଜଗଜ୍ଜନ ମନ ମୃଗ ବାଗୁରା । ୨ ।
ବାଦେ ବଡ଼ୁ କ୍ଳାନ୍ତ ଯା ଲଭି ପ୍ରେମ
ଆଜ ସରିକ ନାହିଁ ଯେ ବିଶ୍ରାମ । ୩ ।
ସାମାନ୍ୟ ସ୍ୱକୀୟାଙ୍କୁ କରାଇଲା
ପରକୀୟାରେ ତତ୍ତ୍ୱ ମଜାଇଲା । ୪ ।
ଉତ୍କଳ ନର୍ଦ୍ଦୀଆସ କୃଷ୍ଣ ଶ୍ରୀମୂର୍ତ୍ତି
ପରମାନନ୍ଦ ସ୍ୱରୂପିଣୀ ଶ୍ରୀମତ୍ତୀ । ୫ ।
ଗୋପାଳ କୃଷ୍ଣ ସେ ପଦ ନଳିନ
ଯୁଗେ ସମର୍ପିଲା ମନ ଜୀବନ । ୬ ।

—*—

## ରାଗ କୀରବାଣୀ—ମିଶ୍ରରୂପ ତାଳ

( ସେ ଦିନା ନୂଆଁକରେ ବ୍ରଜବଧୂ )

ରାଧାଶ୍ରୀତ ସଖୀର ବାହାର, ସଙ୍ଗ ସେ । ପଦ ।

ବ୍ରହ୍ମା ନାରଦ ଶଙ୍କର ଧ୍ୟାନରେ ଯେ ଅଗୋଚର
ଅନୁସରନ୍ତି ଦାସୀକ ଭାବ । ୧ ।
ଯା ବାମ ପଦ କନିଷ୍ଠା ଅଙ୍ଗୁଷ୍ଠି ନଖର ଲଟା
ଲବ ରମାର ଗର୍ବାପହାରି । ୨ ।
ବ୍ରଜ ସ୍ତ୍ରୀ ବାଳ ବୃଦ୍ଧାରୁ ସର୍ବାଂଶରେ ସବୁଠାରୁ
ବିଲକ୍ଷଣ ଗୁଣ ଗଣ ଯାର । ୩ ।
ଏ ଗୋଷ୍ଠବାସୀ ସକଳ ଆଖି ବନ୍ଧିବାର ଫଳ
ଏକାସିନା ତାଙ୍କୁ ଦେଖିବାର । ୪ ।
ଗୋପାଳକୃଷ୍ଣ କଥନ ରହୁ ମୋ ମନ ଜୀବନ
ପଦାବ୍ଜେ ସେ କୀର୍ତ୍ତିଦା ଜେମାର । ୫ ।

—*—

# ଭକ୍ତର ଅନୁଚିନ୍ତା

## ଢାଲ ଝୁଲା

ମନ ଗାଅ ନିତରେ

ନଟବର ବଂଶୀଧର ଶ୍ୟାମଳ ସୁନ୍ଦର କାନ୍ତ । ୦ ।
ଭବସାଗରର ଘୋର ଅନ୍ଧାର ଭୟଙ୍କର
ମୂଳ କୂଳ ନାହିଁ ଥର ଉଠେ ଚିତ୍ତ
ଯେବେ ଲୋଡ଼ିବୁ ଆଲୋକ ତେବେ ନିରେଖ ଗୋଲୋକ
ବିରଜ ମଣ୍ଡଳେ ଜଳେ ଦିବ୍ୟ ଜ୍ୟୋତି ରେ । ୧ ।
ଘନ ବରନ ମଦନ ମୋହନ ନନ୍ଦ ନନ୍ଦନ
ପୂତନା ପରାଣଖିଆ ଶାନ୍ତକାନ୍ତ,
ଯାମଳାର୍ଜ୍ଜୁନ ଭଞ୍ଜକ ଯଶୋଦା ହୃଦ ଚନ୍ଦକ
ଯା ଚରଣ ପରଶରୁ ଜନ୍ମାଗତ । ୨ ।
ଜୀବନଦ ଘନମାଳ ଅପଘନ ସୁଷମଳ
ଜମ୍ବୁନଦ ଗୋଷ୍ଠ ଯାର ପ୍ରାଣସାଥି ।
ସେ ପଦ ପଙ୍କଜତଳେ ପ୍ରେମ ଭକ୍ତି ଭାବ ଭେଳେ
ମୂଢ଼ମନ ଢାଳିଦିଅ ତୋର ମଥାରେ । ୩ ।
ଯେଉଁ ପଦ ଆଶ୍ରା କରି ତରିଲା ଗୌତମ ନାରୀ
ଘୋରକଳେ ଥାଇଶନ୍ତି ବାରୁହାଣ୍ଡି
ଚନ୍ଦ୍ରେ ନନ୍ଦ କରନାଶ ଯଶ କଲେ ପରକାଶ
ସେ ପଦୁର ଚିନ୍ତାଆ ଦିବାରାତିରେ । ୪ ।
ହର ବିରଞ୍ଚି ସମ୍ପଦ ଅଟଇ ଯେ ଅଭୟ ପଦ
ଯା ପ୍ରସାଦେ ଲଭେ ଯମଦଣ୍ଡ ତାଣ ।
ସେ ଅଖିଳ ଚିନ୍ତାମଣି ଶ୍ରୀପଦେ କରେ ମାଗୁଣି
ଗୋପାଳକୃଷ୍ଣ ପାଗଳା ଦିବା ରାତି ରେ । ୫ ।



## ରାଗ ମାଳବ ଗୌଡ଼ା—ମିଶ୍ରଝୁମ୍ପତାଳ

( ଟଳଷିତ ଗନ୍ଧ କଥାରେ—ବୃନ୍ଦେ )

କହିଲେ କହିବୁ ଗୋଷ୍ଠରେ ସଙ୍ଗାତ ।
ତୁହି ଦେଖିବ'କୁ ଅଛୁ କି ଅନ୍ତର ନିକୁଞ୍ଜ ବିହାରୀ ଦୋଷରେ ।ପଦ।
ବ୍ରଜ ପୁରନ୍ଦର ନନ୍ଦନ ସୁନ୍ଦର ବୃନ୍ଦ ଚନ୍ଦ ବନ୍ଦିତ
କର କୋଡ଼ରେ ନଚାଇଲୁ ଇତର ଅଢ଼େ ନ ଡ଼ାକ୍ତ ଦୃଷ୍ଟି କି । ୧ ।
ଝରକୁ ଝର ପଦ୍ମାବଳୀ ମକରୀ ଲେଖୁଦିନ ଅଶ୍ରୁ ନାହିଁ
ଆଜି ଯେତେ ସେବା ଆଳୀ ଅଜଣାରେ ବଢ଼ାଉ ଏକାସାକ୍ଷୀ ତୁହି ।୨
କି କଲି ନାହାନ୍ତି ଭୋର ନଙ୍କଣ ଗ୍ଲାଇପରେ ପାଶେ ଥାଇ
ଭୁ ସିନା ନବେଧେ କହୁଛୁ ଅସିଲେ ସେ ଲକ୍ଷା ଲେଖିବା ପାଇଁ । ୩ ।
ଘଡ଼ିଏ ଛାମୁରୁ ହୋଇଲେ ଅନ୍ତର ତୋ ପାଦର ଶହ୍ନାର ଧୂଳି
କି କି ହେଉ ଛନ୍ତି ଲୁହ ପୋଛି ପୋଛି ବୃନ୍ଦାବନ ସାରା ବୁଲି । ୪।
ଶୁଣି ସଖୀ ବାଣୀ ଶ୍ରୀ କିଶୋରମଣି ଶ୍ୟାମେ ଛାମୁରେ ମିଳିଲେ
ଗୋପାଳକୃଷ୍ଣ ଦୋହବ୍ଜ ପୋଛୁ ପୋଛୁ ମୋହନ କୋଳକୁ ନେଲେ ।୫।



## ରାଗ କାମୋଦୀ—ମିଶ୍ର ଝୁମ୍ପତାଳ

( ହେ ଗୋପିକା ନନ୍ଦନ ଭୁମେ ନିଷ୍ଠୁର ନୂଦ ପ୍ରିୟ ହେ—ବୃନ୍ଦେ )

ସରଧାରେ କର ମନ । ଶ୍ରୀ ରାଧା ନାମ କୀର୍ତ୍ତନ । ପଦ ।
କଷ୍ଟସୃଜ ସର୍ଜ୍ଜନାରେ ଶ୍ରୁତି ପୁରାଣରେ ।
ଏଥୁ କିଳ ନାହିଁ ପଥ ଲଭିବାକୁ ପ୍ରେମଧନ । ୧ ।
କାହାକୁ ନକର ଲକ୍ଷ୍ୟ । ସବୁଥିରୁ ନିରପେକ୍ଷ
ହୋଇ କରୁଥା ଗୋଷ୍ଠେନ୍ଦ୍ର ଅଙ୍କେ ସ୍ୱାମିନୀଙ୍କି ଧ୍ୟାନ ।
ହେ ଶ୍ରୀକୃଷ୍ଣ ପ୍ରାଣପ୍ରିୟେ । ହେ ସର୍ବ ରମା ଆଶ୍ରୟେ
ବୋଲି ଶ୍ରୀକୁଣ୍ଡ ସେକୁରେ ରହିଯା ରାତି ଦିନ । ୩ ।
ରାଧେଶ୍ୱରୀ ସେବାଯୋଗ୍ୟ । କେଉଁ ଜନ ସୌଭାଗ୍ୟ
ବୃନ୍ଦାବନ ପୁରନ୍ଦର ବିନା ନ ଜାଣନ୍ତି ଆନ । ୪ ।

ଦି ଚତ୍ତ୍ୱର ରାସଲୀଳା । ସେବା ଗ୍ରହ ବନ ଚଳା
ସ୍ୱକାଙ୍କ୍ଷସ୍ୱ ସାଧୁସଙ୍ଗେ ପ୍ରେମ ଭକ୍ତି ସୁଧାପାନ । ୫ ।
ଦସ୍ୟାନ୍ତ ଶ୍ରୀଗୁରୁଦେବ । ଛେଦକାର ଷୋଳ ଅବୟବ
ଗୋପାଳ କୃଷ୍ଣ ଭଣେ ଲଭିବୁ ହୁଅ ସାବଧାନ । ୬ ।

—*—

## ରାଗ ମୋହନା—ତସ୍ରକାତ ଏକତାଳ

( ଶ୍ରୀ ଗୋରଚନ୍ଦ୍ର ପଦ ବଂଦରେ ମାନସ—ବୃତ୍ତେ )

ରାଧା ଗୋବିଂଦ ଭଜରେ ମାନସ । ପଦ ।

ଚେଜ କୂଟ କପଟ ଲୋଟ ଯମୁନା ତଟ
ଶ୍ରୀ ରାସସ୍ଥଳୀ ରଜରେ ମାନସ । ୧

ସେ ଶ୍ୟାମ କୁଣ୍ଡପାର ବନେ ବସନ୍ତ କର
ହର ଏ ଭବ ଗୁଜରେ, ମାନସ । ୨

ଗଳ ପଡ଼ୁଥିବାର ଚଳେ ମୁକୁତା ହାର
ଗୋଟାଇ ଗୁରୁ ସ୍ତ୍ରଜରେ, ମାନସ । ୩

ଦୋଳାଲୀଳା କାଳରେ ଧରି ଡୋରି ସଧୀରେ
ପଞ୍ଚାଇ ସୁଖେ ମଜ୍ଜରେ, ମାନସ । ୪

ରାସ ଅବସାନରେ କୁସୁମ ବ୍ୟଜନରେ
ଉଦ୍ଧ ସଖୀ ସମାଜରେ, ମାନସ । ୫

ଗୋପାଳ କୃଷ୍ଣକଥା କରନାହିଁ ଅନ୍ୟଥା
ନିଭୃତକୁଂଜ ସେଜରେ, ମାନସ । ୬



## ରାଗ—ପରଜ—ମିଶ୍ର ରୂପତାଳ

( ଦେଖାଇବ କି ସତେ ଦଇବ—ବୃତ୍ତେ )

ପଢ଼ ପିକନି ଲେଉ ଲେଉ଼ ଯେ ମୋତେ ସରଜ ଲପଟା । ପଦ ।

ବସନ୍ତ ମରୁତ ପିକ ମଧୁବ୍ରତ ବନ୍ଧୁ ସଖା ସେନା ସୈନ୍ୟ ସଙ୍ଗେ
କେତକୀ କୁନ୍ତ ଦେଖାଇ ରୂପରେ ଶର ବସାଇ
ଦାରୁଣ ମଦନ ଧାଉଁ ଦେବନରେ ଦେବନ । ୧

ପ୍ରାଙ୍ଗଣର ମଲ୍ଲୀ ବଲ୍ଲୀରେ ବଧୂଲି ଅଧଗ୍ଧ ଭୃଙ୍ଗ ରଙ୍ଗକୁ ରୁନ୍ଧି
କାମପାଦେ ଅଳନ୍ଦରେ ରଖି ଦୁଆର ବନ୍ଧରେ
ଅପସର ଲୁଦ୍ଧ ପୋଛୁ ଥିବନରେ ଥିବନ । ୨

ଆଳୀ ମୋ ସନ୍ଦେଶ ପବନ୍ତୁ ନାସାଣ ମଥା ପୋଛି ଧରାରେ ଅଙ୍ଗ ଛନ୍ଦି
ଘସି ଘସି ଆସୁକନ୍ଦ ବାଣୀ କଣ୍ଠେ ଗଲେ ରୁନ୍ଧି
ଶୋକରେ ସିବଲୀ ବଲ ହେବନ ରେ ହେବନ । ୩

ଉତ୍ତୀର୍ଣ୍ଣ ସୁବର୍ଣ୍ଣ କାନ୍ତିକ ଯା ବର୍ଣ୍ଣ ହସୁଥାଇ ଏବେ ଶୀର୍ଣ୍ଣ ହୋଇ
ଝାଞ୍ଜୀ ବଜା ନବ ବଲ୍ଲୀ ପବସ୍ତ୍ରେ ପିବନ ଲୋକ
ସେ ଯେ ଲାଗି ଯାଇଥିବ ମୋ ସେନରେ ମୋ ସେନ । ୪

ମାର ଅଂଧକାର କୂପରେ ଗୁଆଁର ପଣେ ଚିନ୍ତାମଣି ଦେଲଫିଙ୍ଗି
ଗୋପାଳକୃଷ୍ଣ ଭଣିତ ଆଜ କି ପରାଣମିତ
ଧୃତ ଧରିବ ମୋ ଗୁଣ ବାଜନ ରେ ବାଜନ । ୫

—*—

## ରାଗ ଯଦୁକୁଳ କାମୋଦୀ—ମିଶ୍ରରୂପ ତାଳ

ଅନାଥରେ, ଅନାଥରେ
ଅନାଥୁରେ କି ଦୋଷ କଲି । ପଦ ।

ହେମ ବରନା କାମ ଚୋ ବନା
ନେବ ଜୀବନ ସୁନା । ୧

କର ଉଚ୍ଛେ କର ଗଣ୍ଡୁ
ଡର ଦୂର ମୁଁ କି ସରୁ । ୨

ବଚନାମୃତ ରତ ଭରତ
ମୁଞ୍ଚ ଦୋଷ ପ୍ରାଣମିତ । ୩ ।
ଯୋଷା ଯା କର ଭୂଷା ଯା କର
ହସାନାରେ ବନ୍ଧୁ ପର । ୪
କୃପାକୁ ଡୋଳା ଅପାଙ୍ଗ ତଳା
ଗୋପାଳ କୃଷ୍ଣ ହେବଲ । ୫

—*—

## ରାଗ—ପୁନ୍ନାଗ ବରାଡ଼ି ଏକତାଳି

ନୂଆହେ ନେହ ନେମହେନ ଯୀବନ୍ତି । ଘୋଷା ।

ଯାହାକୁ ଦେଖିଲେ ଭୟ ସଦା ହେଉଛି ହୃଦୟ
ଧର ହେଉନାହିଁ ଦଣ୍ଡେ ଧୃତିକି । ୧
କେ ମୋ ଲପନକୁ ଦେଖି ଥକାଇ ରଖିଲେ ଆଖି
ଜନ ଅଣ ଯାଉଛି ମୋ ଗତିକି । ୨
ଜାଣିଲେ ବ୍ରଜ ଗୁଆଳୀ ଜାତିରୁ ଦେବେ ଟାଳି
କଷ୍ଟ ଦେବେ ଜଟିଳା ଜରତୀକି । ୩
ଶିରେ ଧରୁଛି ତୋହାତ ଶୁଣରେ ପରାଣ ମିତ
ନଆସିଲାପର କର ଗତିକ । ୪
ଗୋପାଳକୃଷ୍ଣ କହଇ କେଜାଣିବ କାହିଁ ପାଇଁ
ବୃନ୍ଦାବନେଶ୍ୱରୀ ଏଡ଼େ * ଭ୍ରାନ୍ତିକି ? ୫

—*—

* ପିରତି ପଥ ଖପଡ଼ା ଯେତେ ସତର୍କ ରହିଲେ ମଧ ତାହା ବୃଥ ଲୋକମାନେ ଜାଣିବେ ଏଇ ସିଦ୍ଧାନ୍ତରେ କବି ଉପନୀତ ହୋଇ ପ୍ରେମିକା (ରାଧା) ମୁହଁରେ କୁହାଇଛନ୍ତି ।

—ସଂକଳକ—

## ରାଗ କାମୋଦ—ମିଶ୍ରରୂପ ତାଳ

( ନାଗର ବର ପ୍ରେମ ନରେଖି କର—ବୃତ୍ତେ )

କେବେ ନଥିବା ରୁଷା ଆଜ କାହିଁକି
ମୋହନ ଠାରେ ମନ ଭଜଗଲା କି ? ପଦ ।
କରଜବୁ ତୁ ସିନା କପଟ ସେ ତୋ ତନା
ବଞ୍ଚିବେ ମାନସରେ ପାଞ୍ଚିଲୁ କି ? ୧
ଶ୍ରୀ ବ୍ରଜେନ୍ଦ୍ର ନନ୍ଦନ ମୋ ଜୀବର ଜୀବନ
କେତେଥର କୋଲିଛୁ ପାସୋରିଲୁ କି ? ୨
ମହାଭାବ ରୂପିଣି ପ୍ରେମଧନରେ ଜଣି
ଅଧରୁ ସୁଧା ଯାକୁ ଦେଉଛୁଲୁ କି । ୩
ଆରେ ପ୍ରାଣ ମିତଣି କେଉଁ କହିଲେ ଶୁଣି
ଏପରି ଦୁଅନା ରେ ଆଜ ଏଣିକି । ୪
ଗୋପାଳ କୃଷ୍ଣ କୋଲେ ହାତଧରି ପହିଲେ
ଆନ ପକାଇ କୁହାଯାଇ ନାହିଁକି । ୫

—✳—

## ରାଗ ଝିଞ୍ଜୋଟି—ମିଶ୍ର ରୂପତାଳ

( ମୁରଲୀ ତୋରେ ଶରଣ ଗଲି—ବୃତ୍ତେ )

କି କଲି । କି ମୁ ରୁଚ୍ଛିଲି ✳ ରେ ।
କାଳେ ହେଲୁ ଆସି କି ରହିଗଲି ରେ । ପଦ ।
କି କରୁଥିବି ନବ ଛଇଲୀ
ଲଜିଲି ବୟସେ କି ଦଣ୍ଡ ଦେଲି ରେ । ୧ ।

---

✳ ଭକ୍ତକବି ଗୋପାଳକୃଷ୍ଣ, ବୃଦ୍ଧ ବୟସରେ ପୁତ୍ର ଓ ଜାମାତାଙ୍କ ବିୟୋଗରେ ଶୋକାକୁଳ ହୋଇ ଉଠିଥିଲେ । ପାରିବାରିକ ଦୁଃଖ ତାଙ୍କୁ ମର୍ମାହତ କରିଥିଲା । ଶେଷପୁତ୍ର କରୁଣାନିଧି ପଟ୍ଟନାୟକଙ୍କ ମୃତ୍ୟୁ ପରେ ସେ ଏକରକମ ମୂକ ପାଲଟି ଗଲେ । ନିଜ ଗୃହର ଏକ ନିର୍ଜନ ସ୍ଥାନରେ ବସି ଉପରୋକ୍ତ କବିତାଟି ଲେଖି ଥିଲେ ବୋଲି ଶୁଣାଯାଏ ।

ନୀ-ଶତଙ୍କ ବସି ରମା ଅଙ୍କ ରେ ଧନ
କହ୍ନି ନଥିଲା ଖୁଞ୍ଚେ ବଚନ ରେ । ୨ ।
ପଶୁଣଲେ ଆଳୀ ଯିବାର ମୋର
ଲୁଆଁଇ ଦେଉଥିବ ପଦ୍ମ ଶିରରେ । ୩ ।
ଅବଧି ବଳବା ବନ୍ଧୁ ସୁବେଶ
ନତ ହେଉଥିବ ରମଣୀ ଈଶରେ । ୪ ।
ପଳାଶ ପୀରତି କଳପ ବଲ୍ଲୀ
ବଚ୍ଛଦ ଅସିରେ ମୂଳୁ ନାଶିଲ ରେ । ୫ ।
ଗୋପାଳ କୃଷ୍ଣ ଭାଷଇ ଦଇବ
କପଟ ରୁହିଁବ ଜୀବନେ ଥିବ ରେ । ୬ ।

—*—

## ବାଲ୍ୟଲୀଳା

( ଶ୍ରୀକୃଷ୍ଣଙ୍କ ବାଲ୍ୟାବସ୍ଥାରେ ମାତା ଯଶୋଦା ନାନା ପ୍ରକାର ଭୟ ଜନ୍ମାଇ ଶୁଆଇ ଦେଉଥିଲେ । ଏହି କବିତାରେ ମୃଦୁ ଭର୍ତ୍ସନା ଗୁଡ଼ିକ ବାତ୍ସଲ୍ୟ ରସର ଏକ ଏକ ନମୁନା—ସଙ୍କଳୟିତା

### ରାଗ ଧନାଶ୍ରୀ—ମିଶ୍ରରୂପତାଳ

( ଗୋଷ୍ଠ ଚନ୍ଦ୍ରମାଙ୍କୁ ଆସ କୋଳରେ—ବୃତ୍ତେ )

ବ୍ରଜକୁ ଫେରି ଆସିଛୁ ଧେନ ନେଇ ଶୁଅ ଭୁଜ ହୋଇ ରେ ।
ରଙ୍କର ଧନ ମୋ ଗୋକୁଳ ଚନ୍ଦ୍ରମା ବସି ପାଇ ନାହିଁ ରେ । ୧ ।
ଦିନ ଗୋଟା ଯାକ ମାଡିଲୁ ନାଟରେ ପଲକ ନ ପକାଇରେ
ଶ୍ରାମ ନଶବଦ ହେଲାନି କ ତୋତେ ନଦ୍ରା ଆସୁନାହିଁ ରେ । ୨ ।
କେ ଶିଖାଇ ଦେଲା ଡୋଳା ଡ଼ାଳବାର ତାଳ ଉକୁଟାଇ ଥେଇ
ପାଦ ବଥାଇବ ପର ଆଉଷିକ ନାଟ ଅଣ୍ଟି ନାହିଁ ରେ । ୩ ।
ନମଁଙ୍କନ ଜିତ କେତେ ଖାଇ ବହିଗଲା କ୍ଷୁଧା ଖାଇରେ
ଆସ ଆସ ସ୍ତନ୍ୟ ପାନ କରାଇବ ବାବୁ ଜାଗିଅଛରେ । ୪ ।
ପଶ୍ଚୁ ଫେନ୍ଦ୍ରକୁଳ-ପ୍ରତାପ ଭୁ ଦେଖ ଖେଳ ଛାଡ଼ି ଦେଇରେ
କେତେବେଳ ହେଲା ଶୟନ କଲାଣି ବଳରାମ ଯାଇରେ । ୫ ।

ଚୁମ୍ବନ ଶିରେ ଦେଇ ନେଲେ ଯଶୋଦା ହୃଦରେ ଲଗାଇ ଯେ
କର୍ଣ୍ଣ ମୂଳେ ଧୀରେ ଧୀରେ କର ମାରି ଦେଲେ ଫୁଙ୍କାଇ ଯେ । ୬ ।
ନିମ୍ବ ପର୍ଣ୍ଣ ହରିଦ୍ରା ଚୂର୍ଣ୍ଣ ଘଷନ୍ତ ଅନଳେ ପକାଇ ଯେ
ଗୋପାଳକୃଷ୍ଣ କହଇ ଧୂପଦେଲେ ଧନଞ୍ଜିକା ନେଇ ଯେ । ୭ ।



## ରାଗ ନାଦନାମକ୍ରିୟା—ଏକତାଳ

ଶ୍ୟାମ ସୁନ୍ଦର ମୁରଳୀ ନିନାଦ ଜାତ ନେତ୍ର ମଣିଲି । ପଦ ।
ଗୁରୁଜନ ସଂଗେ କଥା ପରସଙ୍ଗେ
ବସିଥିଲି କି ଚମକି ପଡ଼ିଲି । ୧ ।
ପୂରିଲା ପୁଲକ ଦେହ ଗୋଟାପାକ
ବିନା ଶୀତରେ ମୁଁ କେତେ ଥରିଲି । ୨ ।
କାହିଁ ଗଲା ମନ ବୁଡ଼ି ଗଲା ଜ୍ଞାନ
ବେନି ନୟନ ମୁଁ ବୁଜି ରହିଲି । ୩
ନିଶି କି ଦିବସ ବନ କି ଆବାସ
ଜାଗର କି ସ୍ୱପନ ନ ଦେଖିଲି । ୪ ।
ଗୋପାଳ କୃଷ୍ଣ ସେ ଶ୍ରୀ ରାଧାଙ୍କୁ ଗ୍ରାସେ
ଶ୍ରୀବ ଦ୍ରବ ଶ୍ରବୁଥିଲି ରହିଁଲି । ୫ ।



## ରାଗ ଧନାଶ୍ରୀ—ମିଶ୍ରରୂପତାଳ

ତୋତେ କେ କହିଲା ପରି ମୋତେ ଚରମ କରି
ମରମ ବିଦାରି ପକାଇଲୁ ରେ । ପଦ ।
ବାଟ ପାଶୋରିଲୁ ପରି ଯେ ଅଇଲୁ
କେତେ ଦିନକୁ ଦୟା ବୋଇଲୁ ରେ । ୧ ।
କରିଅଛୁ ବ୍ରତ ଆଜ ପୁରହୁତ
ପୁଛୁଣ୍ଟିଲୁ ଅନାନା ବୋଇଲୁ ରେ । ୨ ।

ତୁ ହସନ୍ତେ ଧୀରେ କଥାହେଲେ ଥରେ
ନଷେଧି ମଥାଡ କମ୍ପାଇଲା ରେ । ୩ ।
ମୋହନଙ୍କୁ ମୁହିଁ ଗୁହିଁବତ ନାହିଁ
ଚେ।ମୁଖେ ଯାଆନ୍ତୁ ବୋଇଲା ରେ । ୪ ।
କୁଶଳକ ମିତ କୁମ୍ଭର ଯାବନ୍ତ
ସଙ୍ଗ ଲଳା ଆଗହୁଁ ଛଇଲାରେ । ୫ ।
ଗୋପାଳକୃଷ୍ଣ ସେ ବାଣୀ ଶୁଣି ରୋଷେ
ଆପଣ ସ୍ୱଭକ ଯୋଗାଇଲା ରେ । ୬ ।



## ରାଗ ଭୈରବୀ—ମିଶ୍ର ରୂପତାଳ

( ମୋହନଙ୍କୁ ଚୁମ୍ବିବ କି ସେ ରାଧା ଭୁନାରେ—ବୃତ୍ତେ )
ବ୍ରଜେନ୍ଦ୍ର ନନ୍ଦନ ସଙ୍ଗ ଏକା ଶ୍ରୀରାଧାର । ପଦ ।
ଚନ୍ଦ୍ରାବଳୀ ଆଦି କରି ପଞ୍ଚୁର ନାଗରୀ ନାରୀ
ବୃଥା ପଛେ ଧାଇଁ ବାର । ୧ ।
ଏ ଦେହ ସେ ସରଣଟି ସେ ତନୁ ଏ ଜୀବନଟି
ବାରି ହେଉନାହିଁ ପ୍ରୀତି ଯାର । ୨ ।
ଯେଉଁପରି ସୁଲକ୍ଷଣ ଯେମନ୍ତ ଶୋଭା ସୁଗୁଣ
ଊଣା ଅଧିକ ନାହିଁ ବାହାର । ୩ ।
ସେ ଦୁହିଙ୍କି ଏକା ବେଳେ ଦେଖି ନେଉଛନ୍ତି ଯେ ଡୋଳେ
ଆନନ୍ଦଭ୍ରମ ହେଉଛି ତାର । ୪ ।
ଯା ମନ କୃଷ୍ଣଙ୍କୁ ରସି ଭଜବ ରାଧାର ଦାସୀ
ହେଉ ଗୋପାଳ କୃଷ୍ଣ ପ୍ରକାଶ । ୫ ।

## ରାଗ କୀରବାଣୀ—ମିଶ୍ରଝମ୍ପତାଳ

ସଜ୍ଜ ସେଜ୍ଜ ଏ ବ୍ରଜେନ୍ଦ୍ର କୁମାର । ପଦ ।

କରି କୁସୁମ ଚୟନ ଖୋଇଲୁ ସେ ଏକା ବନରେ
କୃଷ୍ଣର ବୋଲି ମୁଁ କନ୍ତବାର । ୧ ।
ଶୁଣି ସେ ହୋଇଲୁ ଛନ୍ନ ସେ ବନ ମୁରଲୀ ସ୍ୱନ ରେ
ଏଣୁ ବୃନ୍ଦାବନ ଚନ୍ଦ୍ରମାର । ୨ ।
ବିଶାଖା ଲେଖି ପଟରେ ଦେଇଥିଲେ ତୋ ଛାମୁରେ
ନୂଆ ନଟବର ରୂପ ସାର । ୩ ।
ଆଖି ପୂରି ଦରଶନ କଲୁ ଜୀବନ ଧନ ରେ
ମୂର୍ତ୍ତି କନ୍ତ ହୋଇଛି ଶୃଙ୍ଗାର । ୪ ।
ତୋ ପାଦ ଚିହ୍ନର ଧୂଳି ହୃଦୟରେ ହୋଇ ବୋଳ ରେ
ପୋଛୁଥିଲେ ନେତ୍ର ନୀରରେ । ୫ ।
କାନନ କାହ୍ନୁଡ଼ା ବାଟ ନିକଟେ ଅଟାଳି ତଟ ରେ
ଗୋପାଳକୃଷ୍ଣ କରି ବିହାର । ୬ ।

—*—

## ରାଗ ଝିଂଝୋଟି—ମିଶ୍ରଝମ୍ପ—ତାଳ

( ତୋତେ ଯନ୍ଧ ନ ଲାଗିଲାକି ଶ୍ୟାମ ବାଧା—ବୃତ୍ତେ )

କାହିଁକିରେ ମନ ମାନେ ଆଜ ମାନ
ତୋର ଯୋବନର ସଜ୍ଜ । ପଦ ।
ଶତ ଶୀତ କର ନନ୍ଦିଛଇ ବାର
ଶ୍ରୀମୁଖେ ସରସ ନାହିଁ । ୧ ।
ନୟନରେ ନୀର ଅଛି ଦୁହିଁଙ୍କର
କିଛି ତେଜ ହେଉ ନାହିଁ । ୨ ।
ପଦ୍ମା ଯାଇଥିଲା ଭେଟ ନ ପାଇଲା
ବୁଝି ଆସିଲାତ ମୂର୍ତ୍ତି । ୩ ।



ପୂଛନ୍ତ ଆଳୀନିକର    ଲଗିଲାଣି ଖେଳ ପଶାର

ଯୋଦ୍ଧା ଶିରୋମଣି ଆଗେ ବସିଲେଣି

ମୂର୍ଚ୍ଛା ମୂର୍ତ୍ତି ହୋଇ ନାଗର ରାଜା ।

( ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ୨୧୧ ପୃଷ୍ଠା )

ଦୁହିଁଙ୍କର ନେତ୍ର ପଥେ ଦୁଇ ଗାତ
ଲେଖାହେଲା ପରି ରନ୍ଧ୍ର । ୪ ।
ବ୍ରଜ ଜନଙ୍କର ଆଖି ରନ୍ଧ୍ରଦ୍ୱାର
ଫଳ ଯେ ସେ କୃଷ୍ଣ ଭୃଙ୍ଗ । ୫ ।
କୁଟିଳା ଜଟିଳା ନଟି ବନ୍ଧ ଗଲା
ଗୋପାଳକୃଷ୍ଣତ କନ୍ଧ । ୬ ।

—*—

## ରାଗ କଲ୍ୟାଣୀ—ରୂପକ ତାଳ

( ରାତ୍ର ପାହିଗଲା ହେ ହାଣ୍ଡ—ବୃତ୍ତେ )

ସରଧାରେ ଧାଇଁ ଶ୍ରୀରାଧା—କୁଞ୍ଜବନକୁ ଗାବନ ଦେଖି ଯା
ପ୍ରାଣନାଥ ସଙ୍ଗେ ବିଜେ କରନ୍ତି ଅନଙ୍ଗ ମଞ୍ଜରୀଙ୍କର ଅଗ୍ରଜା ।
ବିଶ୍ୱସୃଜ କି ରଚିଥିଲା ଶ୍ରୀକୁଣ୍ଡ କୁଞ୍ଜର ଚନ୍ଦ୍ରଶାଳା
ଯା ସୋପାନ ଶ୍ରେଣୀ ରତ୍ନ ଚିନ୍ତାମଣି
ବିଲୋକିଲେ ପ୍ରଶଂସିବେ ବିଡ଼ୌଜା ।୧
ଫୁରିଛନ୍ତି ଆଳି ନିକର ଲାଗିଲାଣି ଖେଳ ପଶାର
ଯୋଡା ଶିରୋମଣି ଆଗେ ବସିଲେଣ
ମୁହିଁ ମୁହିଁ ହୋଇ ନାଗର ରାଜା ।୨
ପଣ କରି ଶିଖଣ୍ଡ ବେଣୀ କୁଣ୍ଡଳ ତାଟଙ୍କ ସଙ୍ଗିନୀ
ବଂଶୀ ହାରାବଳୀ ସ୍ୱଦେଶ୍ୱରୀ ହରି
ବୋଲି ହୋଇଗଲେ ତ ହାଉଜା ।୩
ଶ୍ରୀ ଗାନ୍ଧର୍ବୀ ଖେଳରେ ଜିଣୁ ସଖୀ ଛଡ଼ାଇ ଆଣୁ ବେଣୁ
ବୃନ୍ଦାବନ ପଞ୍ଚମହିଷୀ ହସନ୍ତି
ଆଳୀପରେ ଦେଇ ଦର ଆଉଜା ।୪
ରଖିଦେଇ ପଖାଉଜର ହେଲେଣ ଦାସୀ ଉପହାର
ବାହାରି ଯିବେ ଗୋପାଳ କୃଷ୍ଣ ବୋଲେ
କରିବାକୁ ଏବେ ଚରଣ ପୂଜା ।୫

—*—

# ସ୍ୱ ଅନୁଭୂତି

## ରାଗ କୀରବାଣୀ—ତାଳ ମିଶ୍ରରୂପ

( କବି ଗୋପାଳକୃଷ୍ଣ, ରାଧାକୃଷ୍ଣଙ୍କ ପ୍ରେମଲୀଳାରେ ଏପରି ବିଭୋଳ ଥିଲେ ଯେ ରାତ୍ରରେ ଶୋଇଲାବେଳେ ସ୍ୱପ୍ନ ମଧ୍ୟ ଦେଖୁଥିଲେ । ରାଧାକୃଷ୍ଣଙ୍କ ଲୀଳା ଖେଳାକୁ ଯିଏ ଆଖିରେ ଦେଖିଛି ସିଏ କେତେ ବଡ଼ ଭାଗ୍ୟବାନ ହୋଇ ନଥିବ ! ଗୀତଚ୍ଛଳରେ କବି ସୁନ୍ଦର ଭାବରେ ଏହି ବିଷୟ ବର୍ଣ୍ଣନା କରିଛନ୍ତି )

( କେଣେ ନଶୁଣି ଯେ ଡାକୁଥିଲେ ଏତେପରି—ବୃତ୍ତେ

ଅରେ ଦେଖିଛି ଯେ ସେ ସିନା ସେ ସୁଖ ଜାଣେ

ଶ୍ରୀ ରାଧା ଗୋବିନ୍ଦ ମୂରତି ସୁଷମା ମନରେ ଅଙ୍କା କ୍ଷଣେ ।ପଦ।

ନିଶାନ୍ତରେ ବୃଦ୍ଧ ମର୍କଟୀ କର୍ଖଟୀ ଡାକ ପଡ଼ିଗଲେ କର୍ଣ୍ଣେ ।
ଝଟାପଟ୍ ଆସି ଜଗାହୋଇବାର ନିଭୃତ କୁଞ୍ଜ ଉତ୍ତୀର୍ଣ୍ଣେ ।୧
ନନ୍ଦାଳୟରେ ଅଶନ ସମୟରେ ସୁରସ ପରିବେଷଣେ ।
ଲାଜ ହରଷରେ ଜରଜର ହୋଇ ଅନାଅନି ନେତ୍ର କୋଣେ ।୨
ଶ୍ରୀ ଯଶୋଦା କୋଳେ ଧରି ଶ୍ରୀରାଧାଙ୍କୁ ଭୂଷିତ କରି ଭୂଷଣେ ।
ବଧୂ ସଙ୍ଗେ ବ୍ରଜବଧୂଙ୍କୁ ବଳେଇକୁ ଲୋଭାଇ ବାତ୍ସଲ୍ୟ ଗୁଣେ ।୩
ମଥୁରା ପଥେ ଓଗାଳି ଯେ ଛଳିଲବର ରଙ୍ଗ ଦାମାପଣେ
ଶ୍ରୀରାଧା ଚକ୍ଷୁରେ ଜଳ୍ପି ବାର ଭାବ ଚେଲାଞ୍ଚଳ ଆକର୍ଷଣେ ।୪
ଶ୍ୱେତ ରୂପଲ ମାନ ଗର୍ବ ରୋମାଞ୍ଚ ସ୍ୱେଦାଶ୍ରୁ କମ୍ପ ସ୍ଫୁରଣେ
ଲାଜ ହର୍ଷ ହାସ ଉନ୍ମାଦ ଜନିତ କୃଷ୍ଣସ୍ପର୍ଶ ପୂରଣେ ।୫
ରତ୍ନି ବସିଥିଲେ ବୃନ୍ଦାବନେଶ୍ୱରୀ ସ୍ୱ ଚେଳାଞ୍ଚଳ ବରଣେ
କରୁଣା ମୟୀ ଶ୍ରୀକରେ ତୋଳିବାର ମୋହନ ପଡ଼ୁ ଚରଣେ ।୬
ଗୋବର୍ଦ୍ଧନ ଗିରିବର ଗହ୍ୱରରେ ବିଶ୍ୱକର୍ମାର ନିର୍ମାଣେ
ବକୁଳ ପିଲୁଳା ବୃନ୍ଦ ମଧ୍ୟେ ହଂସତୂଲ ତୁଳ ଶେଯ ବିହରଣେ ।୭
ଅଧେ ତନୁପୀତ ଅର୍ଦ୍ଧାଙ୍ଗ ଅଶିତ ହେବାର ବନ ଭ୍ରମଣେ
ସପଲ୍ଲବ ପୁଷ୍ପ ପରଷ୍ଟରେ ଅବତଂସ କଲ୍ପର ଶ୍ରବଣେ ।୮

ଫୁଲ ତୋଳନ୍ତୁ ପାଶେ ମିଳନ୍ତୁ ଅଳି ଆଳୀ ଭସ୍ତେ ବାର ଉପବଣେ
ରମଣ କୋଳରେ ଲୁଚି ରହିବାର ଶ୍ରୀକୁଣ୍ଡ ସେତୁ ପ୍ରାଙ୍ଗଣେ ।୯
ରତ୍ନ ଦୋଳାରେ ବିଜେକଲା କାଳରେ ପଞ୍ଚାଉ ସଜନ ଟାଣେ
ବେଣୀ କରେ ପ୍ରିୟ ଭୁଜ ଭିଡ଼ି ସ୍ମର ବାଣ ରଖଇ କି ଭୂଣେ ।୧୦
ମଧୁପାନେ ମତ୍ତ ହୋଇ ମନ୍ଦରାକ୍ଷୀ ରଙ୍ଗି ମୋହନ ଡାହାଣେ
ତାମ୍ବୁଳ ଯୋଗାଇ ଭୃଙ୍ଗାକର ଜାତୁ ଆଳୀ ହସିବାର ତେଣେ ।୧୧
ସାବନ୍ତ ସୁବେଶ ଶ୍ଳଥ ହୋଇଥାଇ ଗାଢ଼ ମନମଥ ରଣେ
ଶ୍ରୀକୁଣ୍ଡ ତଟରେ ଭଗ୍ନ ହୋଇବାର ମନ୍ଦ ଗନ୍ଧ ସମୀରଣେ ।୧୨
ଶ୍ରୀସରସୀରେ ଜଳଯୁଦ୍ଧେ ଶ୍ରୀହରି ହାରି ବୁଡ଼ି ରହିକ୍ଷଣେ
ଧରି ରାଧାଙ୍କୁ ପଳାଇ ରହିବାର କଣ୍ଠ ଜଳ ପରିମାଣେ ।୧୩
ଚନ୍ଦନ ବୋଳ ଉକୁଟାଉ ଚରମେ ରହି ଶ୍ରୀରାଧା ଆପଣେ
ହସାହସି ହୋଇବାର ରୁହିଁ ପ୍ରାନ୍ତବନ୍ଧ ଦରପଣେ ।୧୪
ନିକୁଞ୍ଜେ ବେଶ ଅଶନ ଶୟନାନ୍ତେ ଶ୍ରୀବୃନ୍ଦାଙ୍କ ପ[illegible]ମାଣେ
ପରସ୍ପରେ ତନୁ ପୁଲକ ହେବାର ଶୁକ ସାରୀଙ୍କ ଭାଷଣେ ।୧୫
ପଶା ଖେଳରେ ମୁରଲୀ ହାରି ଦେଇ ବୃଷଭାନୁଜାଙ୍କୁ ଏଣେ
ମାଗିହଅ ବୋଲୁ ହସିଲେ ବୟସୀ ପୁଣି ଧାଇଁବାର ତେଣେ । ୧୬ ।
ମିହାର୍ଚନାନ୍ତରେ କପଟେ ବଟୁଙ୍କୁ କହ ବୋଲି ହେ ଆପଣେ
ଜଟିଳା ବନ୍ଧୁ କରଦେଇ ଦେଖାଉ ରାଧା ଥନ୍ତୁ ଦରପଣେ । ୧୭ ।
ନବଢ଼ ମାରଦ ନିଶିରେ ଶ୍ରୀବୃଷଭାନୁଙ୍କର ସାଧାରଣେ
ଟିକପର ଡାକୁ ଜାଣି ସଦନକୁ ଆଣିଲାକାଳେ ଗହଣେ । ୧୮ ।
ରାସ ଅବସାନେ ଯମୁନା ପୁଳିନେ ନିର୍ମଳ ଚନ୍ଦ୍ର କିରଣେ
ବ୍ରଜବଧୂ କୋଳେ କଣୋଣି ମଣିଙ୍କି ନବ ବୟସୀଙ୍କ ଗଣେ । ୧୯ ।
ନିଭୃତ ନିକୁଞ୍ଜ କାନ୍ତ ପୁଷ୍ପ ଶେଯ ପାଦୋପଧାନ ଅଭ୍ୟନ୍ତେ
ବସି ଗୋପାଳକୃଷ୍ଣ ପଞ୍ଚନାମ୍ବକ ପରମ ହରଷେ ଭଣେ । ୨୦ ।



## ରାଗ ଶ୍ରୀ—ଆଦତାଳ

( ନାହିଁ ମୋ ଗନ୍ତା ତୋ ବନାରେ କୁନ୍ଦରଦନା—ବୃତ୍ତେ )

ପଙ୍କଜ ଲୋଚନା ! ଦୁଃଖୀ ନୋହିବୁ ମୋ ବନାରେ । ପଦ ।
ଅଯିବ ରକ୍ଷିବା ବର କନକଟେ ଶ୍ରୀମୁଖ ତୋର
ପ୍ରଫୁଲ୍ଲ ନୋହୁ ସୁମନାରେ । ୧ ।
ଦୂବଂପରି ଗଜଗଣ୍ଡ ଓଥେରବୁ ନାହିଁଟି ଶୁଣ୍ଡ
ଓାଳଲେ ପାଶ୍ୱ ମୋ ନାରେ । ୨ ।
ଯାଅ ବୋଲ ଶ୍ରୀମୁଖରୁ ସରସେ ବାଣୀ ଉଚାରୁ
କନ୍ଦୁ ମୋ ଗଣ୍ଡି ହୁନାରେ । ୩ ।
ନ ବୁହା ନୟନୁ ନୀର ଯେନ ଧନ ଆନ ମୋର
ଟେକ ମୁଖ ମୋତେ ଅନାରେ । ୪ ।
ଗୋପାଳ କୃଷ୍ଣ ଅଙ୍କରେ ବସାଇ ଯଶୋଦେ ସଧୀରେ
କହୁଛେ କହ୍ନାଇ ସିନାରେ । ୫ ।

—✻—

## ରାଗ ପୁନ୍ନାଗ ବରାଡ଼ି—ମିଶ୍ରରୂପତାଳ

( ନାହିଁ କରଦେ ରେ—ବୃତ୍ତେ )

ଶ୍ୟାମ ବୋଇଲେ ଗୋ ଓରି ମୁଁ ଏଣୁ ତନ୍ତ୍ରିକ
ନେନତେ ମନ ଧରି ଗୁଲୁଥିଲେ ହେଲେ ଜାଣୁମଣି ଜାଣିଲ୍ କ । ପଦ ।
ଭୁଜଙ୍ଗ ପରାୟେ ଗତ୍ତ ତା ପ୍ରେମର ସ୍ୱଭାବ ସଦା କୁଟିଳ
ଏ ଯେନ କହୁଛୁ ସତ୍ୟ ତାର ବାଣୀ ଉପରେ ମୋ ଗିର ତଳ । ୧
ମୋତ୍ତିଦ ମୁକୁତା ହାର ପଦକର ମଣିରେ ତା ରୂପରୂହିଁ
ଆନନାଶ୍ୱ କେ ମୋ କୋଳରେ ରହିଛୁ ବୋଲି ଗଲ ମାନ ବହି । ୨
ପଶା ଖେଳରେ ହାରିଲେ ମୁଖ ଶୁଖିଯିବ ଯେ ବୋଲି ମୁଁ ମ ।
କଣା ଦାନ ନପକାଇ ଶୁଣିବାକୁ ଶ୍ରୀମୁଖ ସରସ ବାଣୀ । ୩

ଆପଣର ବକ୍ଷ କକ୍ଷର ନଖ କ୍ଷତ ଆଦ୍ୟ ମୋ ଅଂଗରେ ଦେଖି
ଉତ୍ତର ନ ଦେଇ ବଳାସ ବନ୍ଧ୍ୱଲା ହୁଏ ଅବନତ ମୁଖୀ । ୪
ଶିବ ଛୁଇ ପଦ ପ୍ରାନ୍ତରେ ପଡ଼ାଇ ଜଣାଉ ଥିଲ ତ ଏଣେ
ଗୋପାଳକୃଷ୍ଣ ଭଣଇ ଚନ୍ଦ୍ରାବଳୀ ଯାଉ ଅଣାଇଲ କେଣେ । ୫

—*—

## ରାଗ ଝଂକୋଟୀ—ମିଶ୍ରଝମ୍ପତାଳ

( ଶ୍ରୀକୃଷ୍ଣ ସ୍ୱଧା ରମଣ ବୋଲି—କୃଷ୍ଣେ )

ମୁଁ ଶ୍ୟାମ ବଂଧୁ ଭଳି କ ଗୋ ।
ସମ ନୋହିବ ଯେ ପଦ ଧୂଳିକ । ପଦ
ତାମରସ ବନ କେଲି ଅଳିକ ।
କ ମଣି କପୋଳସ୍ଥ ଗିବ ମଲ୍ଲୀକ । ୧
ନାଗର ନିକର ବଳ ସଳିକ
ସାମ୍ୟ କରୁଛୁ ମୁଢ଼ ଗୁଆଳୀକ । ୨
ତୁଲ କରୁ ମୋତେ ବନମାଳୀକି
ଶୁଣିଲେ ଜନେ ମ୍ୟନ୍ତେବ ଡାଳିକ । ୩
ନିଳୋତ୍ପଳ ଗର୍ବ ଦଳ ଝଳକ
ତୁଳୁଛୁ କତ୍ତା ଦରତ୍ତା ମଳକ । ୪
ଗୋପାଳ କୃଷ୍ଣ ତୋଳ ମଣ୍ଡଳିକ
ହସିଲ ସ୍ୱାମିନୀ କହୁ ଆଳୀକି । ୫



## ରାଗ କୀରବାଣୀ—ଆଦିତାଳ

ସତ୍ୟ କି ବ୍ରତ କରି ବର ପାଇଲୁ
ସେବି କେଉଁ ଦେବତାଙ୍କୁ ମନାଇଲୁ ? ପଦ ।
ସେ ବଙ୍କ ବଇଶିକ ସେବକଙ୍କ ପରି କରି
ନବ କିଶୋରୀ ପଛେ ବୁଲାଇଲୁ । ୧
ଜଗନ୍ମୋହନ ମାନସ ମତ୍ତାଇଲୁ
ମାନ କରି ପ୍ରପଦରେ ଲୋଟାଇଲୁ
ଯା ସ୍ମୃତି ଲବ ଭବ ବ୍ରହ୍ମାଦିଙ୍କୁ ଦୁର୍ଲ୍ଲଭ
ତାଙ୍କୁ କର ଯୋଡରେ ନମାଇଲୁ । ୨
ଆନ ବିଷୟୁ ମନ ପାସୋରାଇଲୁ
ଧ୍ୟାନ ତୋ ରୂପ ସତତ କରାଇଲୁ
କାନରେ କି ମନ୍ତ୍ର ଦେଲୁଟି ନିରନ୍ତର
ରାଧେ ହା ଶ୍ରୀରାଧେ ବୋଲି ଜପାଇଲୁ । ୩
କେତେ ବାର ତରୁଣୀଙ୍କି କନ୍ଦାଇଲୁ
ତାଙ୍କ ମନୋରଥ ଦ୍ରୁମ ଭଙ୍ଗାଇଲୁ
ବନମାଳୀ ସେ ଚନ୍ଦ୍ରାବଳୀ ପ୍ରୀତି ପଥରେ
ଧୂଳି ଉଡ଼ୁଥିଲା ତୃଣ ଉଠାଇଲୁ । ୪
ବନଯାକର କୁସୁମ ତୋଳାଇଲୁ
ପ୍ରସାଧନୀ ଦେଇ ଖୋସା ଖୋସାଇଲୁ
ମକରୀ ପତ୍ରାବଳୀ ତିଳକ ସଜଡ଼ାଇ
ପଦଧରାଇ ଯାବକ ଲେଖାଇଲୁ । ୫ ।
ପୁଷ୍ପ ବାଟିକା ଡକାଇ ଅଣାଇଲୁ
ପୁରେ ବାଳି ସୃଷ୍ଟି ପାସୋରି ଶୋଇଲୁ
ଗୋପାଳ କୃଷ୍ଣ ଭଣେ ଆଳୀଙ୍କି ରାଧା ଏଣେ
ହସି ହସନ୍ତି ଅଞ୍ଚଳ କୁ ଢାଳିଲୁ । ୬ ।



## ରାଗ ମୋହନା—ଏକତାଳ

( ରାଧା ଗୋବିନ୍ଦ ଭଜରେ—ବୃନ୍ଦେ )

ରାଧା ଗୋବିନ୍ଦ ବୋଲି ଗଲାରେ, ପରାଣ । ପଦ ।

ବ୍ରଜ ବନକୁ ଯାଇ ସ୍ୱାମିମା କୁଣ୍ଡେ ରହି
ବୋଲ ହୋଇଲ ମୁଁ ଶରଣ ରେ । ୧ ।
ଶ୍ରୀ ରାସେଶ୍ୱରଙ୍କର କଙ୍କଣ ତୁ ପୂର୍ବର
କହିଲ ଅଟେଁ ଏବେ ଜାଣରେ । ୨ ।
ନୁହଇ ସେ କାହାର ବୋଲୁ ସବୁ ମୋହର
ହୋଇଛିବୁଟି ଆକାରଣ ରେ । ୩ ।
ହଜିଛି ଯେଉଁ ଠାରେ ଲୋଡ଼ ଯାରେ ତହିଁରେ
ବାହାରେ କରନା ଭ୍ରମଣରେ । ୪ ।
ଗୋପାଳ କୃଷ୍ଣ ଭଣେ ନଯାଉ ତ ଜମିଣେ
ମିଳିବ ପ୍ରେୟସୀ ଚରଣ ରେ । ୫ ।

—✳—

## ରାଗ ମୁଖାରୀ—ମିଶ୍ରରୂପକ

ସନ୍ଧ୍ୟରେ ହେଉଲନ ବଂଶ୍ୱନା । ପଦ ।

ବୃନ୍ଦାବନ ଚନ୍ଦ୍ରମା ଦର୍ଶନର ମହିମା
ଥିଲଇ ଦେଲି ଚକ୍ଷୁ ତୁ ଲୁଣ୍ଠନା । ୧ ।
ବରହି ପକ୍ଷ ରଙ୍ଗି ନେବେ ପଲକ ରଖି
ଗ୍ରହାବେଶ ପରିଏ ବାଉଳ ହୋନା । ୨ ।
ନୀପ କୁସୁମାକର ଦଶୁଛି କଳେବର
ଦକ୍ଷିଣାନିଳରେ ଅପବାଦ ଦେନା । ୩ ।
ଗୁଞ୍ଜା ଗ୍ରଜ ବଳୟକ ନେତ୍ରମାର କାହିଁକ
ବହୁଛି ଅଦମ୍ୟେ ମୋତେ କଷ୍ଟ ଜନା । ୪ ।
ଗୋପାଳ କୃଷ୍ଣ ଭଣେ ଣରେପିବାକୁ ଦୋଷେ
ଏ ବରଜ ଲୋକରୁ ସଖିଲ ସିନା । ୫ ।

—✳—

## ରାଗ କୀରବାଣୀ—ମିଶ୍ରରୂପକତାଳ

( ସେ ସିନା ନୂଆଙ୍କରେ ବ୍ରଜ ବଧୂ—ବୃତ୍ତେ )

ମୁଁ ତ ଜାଣି ଜାଣି କରୁଛୁ ମାନ । ପଦ ।

କାହାକୁ ବୋଲିବି କସ ମୋହରି କରମ ଦୋଷ
ସ୍ୱହସ୍ତେ କରୁଛୁ ବିଷ ପାନ । ୧ ।
ଅଛୁର ସତେ ଏ ଯୋଗ ଆନ କେ କରିବ ଭୋଗ
ଲୁହ ପୋଛୁ ହୋଇବାକୁ ଗ୍ଳାନ । ୨ ।
ଆହା ହାତ ଧରି ମୋତେ ଏହ୍ବରୁଷା ଲାଗି କେତେ
ଦେଇଥିଲେ ନ ପାଳିଲ ଆନ । ୩ ।
ବ୍ରଜବଧୂ ଦୁଃଖ ଦେଖି ହୋଇବ କୋଳତ ସୁଖୀ
ଆନକୁ ବତାଇ ଦେଲ କାନ । ୪ ।
ଗୋପାଳ କୃଷ୍ଣ କହଇ ଆଣିଲେକ ଲୋଉଠାଇ
ସଜନି କର ସେହ୍ନି ଗୁମାନ । ୫ ।

—*—

## ରଗ ଝଂଜୋଟି—ମିଶ୍ରରୂପକତାଳ

( ମୋହନ ନୟନାଞ୍ଚଳ ନାଚିଲ—ବୃତ୍ତେ )

ଯେ ଦେଖିଛୁ ସେ ସିନାରେ ଜାଣିବ । ପଦ ।

ନଟନ ଶିଖଣ୍ଡ ଚନ୍ଦ ନୂଆଁ ମକର କୁଣ୍ଡଳ
ମୁରଲୀ କସା ଶ୍ରୀମୁଖ-ସଙ୍ଖାବ । ୧ ।
ଆଗରେ ବଳାଇ ଧେନୁ ଅ.ସୁଥିଲ କେଳେ କନ୍ଥୁ
ଆହା ନର୍ତ୍ତନ ରଙ୍ଗ ମହୋତ୍ସବ । ୨ ।
ଅଳସ ହସି ଅ.କତ ରଖି ତାଳଲେ ନେଶାନ୍ତ
କଥା ନୋହୁ ମଥାବେଢ ପାରିବ । ୩ ।
ଘଣେ କମିତେ ଦେବେଳ ବସିବା ବସାଇ କୋଳେ
ମହା ଆଦରଣ ଆଗରେ ଥିବ । ୪ ।

ଶରହାସ ହଳାପରେ    ଚନ୍ଦ୍ରଲକ୍ଷ ସମକ୍ଷରେ
କୁଞ୍ଜ ଫୁଲ ଶେଯେ ସେ ଅବସୂବ । ୫ ।
ଗୋପାଳ କୃଷ୍ଣ କହଇ    ଶୁଣ ବରଜ ବଡ଼ାଇ
ଦୁଖୀ ଯୋଗାନରେ କି ନ ଗଢ଼ିବ । ୬ ।

---

## ରାଗ ଝିଞ୍ଜୋଟି—ମ ଶ୍ରରୂପ ତାଳ

( ତୋତେ ସନ୍ଧ ନ ଲଗିଲାନ ଶ୍ୟାମ ବାଧା—ବୃନ୍ଦେ )
ଯାହା ଭାଳଥିଲ ହୋଇଥିଲେ ଆଜ ଚନ୍ଦ୍ରାନନ ଦିଶନ୍ତା କି । ପଦ ।
ଶତ ଅବସୂବ ଭେଜଲେ ରାଜୀବ-ପଦ ସେବା ମିଳନ୍ତା କି । ୧ ।
ମୋ ଜୀବ ଜୀବନ ହୃଦର କଦନ କେ ଲଖାଇ ପାରନ୍ତା କି । ୨ ।
ମନେ ପଡ଼ିଗଲେ ମୁହିଁ ହେଲେ ୨ ନେନେ ଲୁହ ରହନ୍ତା କି । ୩ ।
ଦୃଷଣେ କା'ପରେ କେଳ ଚଳପରେ ବଳେ କେ ଚୁମ୍ବନ୍ତା କି ।୪।
କହଇ ଗୋପାଳକୃଷ୍ଣ ସେ କମଳ ଭବ ଏହା କରନ୍ତା କି । ୫ ।

—*—

## ରାଗ ପରଜ—ମି ଶ୍ରଚାପତାଳ

ଗୁଣମଣି । କି ଗୁଡ଼ ଅଇଲ ଜାଣି ଜାଣି ରେ । ପଦ ।
ଯାଉଛୁ ବୋଲି ମୁଁ କହୁ    ଯାହା ହେଲୁ ରହୁଁ ରହୁଁ
ବହିଗଲା ନୟନରୁ ପାଣି ରେ । ୧ ।
କଣ୍ଠ ଗଦଗଦ ହେଲା    ବଦନରୁ ନ ସ୍ଫୁରିଲା
ଉତ୍ତର ଆସୁ ଅକଥ୍ୟ ବାଣୀରେ । ୨ ।
ଫିଟି ଖୋସୁ ଖୋସୁ ବେଶ    ଲୋଟୁଥିଲା ବାସ ଶେଷ
ଆସି ରହିଥିଲୁ ଆରୋହଣୀ ରେ । ୩ ।
ନଖେ ଶାଢ଼ୀ ଧଡ଼ି ଘସି    ଲୁଆଁଇ ବଦନଶଶୀ
ଦିଶୁଛି ତୋ ଉଭାହେବା ଠାଣିରେ । ୪ ।

ପାଷାଣୁ ହେଲ ଦାରୁଣ    କି ଚଳିଲ ମୋ ଚରଣ
ତୋର ସେ ଭାଷଣ ଶୁଣି ଶୁଣି ରେ । ୫ ।
ଗୋପାଳ କୃଷ୍ଣ କହଇ    ଏ ଭାଗ୍ୟ କରିଛୁ ଯାଇ
ବସାଇବ ତୋତେ ଅଙ୍କେ ପୁଣିରେ । ୬ ।

—*—

## ରାଗ ଖରହରପ୍ରିୟା—ତ୍ରସ୍ରଗତି ଏକତାଳ

ନନ୍ଦ ନୟନ-ଇନ୍ଦୀବର-ଇନ୍ଦୁ ତୋ ଲାଗି
ଯୋଗୀ ହୋଇଗଲା ପର ଦିଶୁଛୁ ଭଙ୍ଗୀ । ପଦ ।
ଶ୍ରୀ ଅଙ୍ଗରେ ବନ୍ୟାସି    ଛନ୍ଦ ଦେବତା ଋଷି
ବୃଜ ଲକ୍ଷଣ ହେଉଥିଲେ ଓଲଗି । ୧ ।
ଚଣ୍ଡେ ଚନ୍ଦ୍ର ତୋ ରୂପ    ତୋ ନାମ କରି ଜପ
ନିଭୃତ ନିକୁଞ୍ଜରେ ଅଛନ୍ତି ଜଗି । ୨ ।
କି ବୋଲି କହିବି ମୁଁ    ବିବେକରେ ଜାଣି ମୁଁ
ସାଜ ସଜ ଏ ବେଶ ହୁଅ ଉଲ୍ଲାସି । ୩ ।
ମସୃଣ ଘୁଣ୍ଟି    ତନୁରେ ବିଭୂତି
ବାରଣ ହେଉନାହିଁ ଶିଖିବ ଅଙ୍ଗି । ୪ ।
ଦେଇଛନ୍ତି ଶ୍ରୀକର    ଲେଖ ଦେଖ ସତ୍ୱର
ଉଠ ମଠ ନ କର ପରାଣ ସଙ୍ଗି । ୫ ।
ଗୋପାଳ କୃଷ୍ଣ ବୋଲେ    କୃଷ୍ଣ ପାଶେ ମିଳିଲେ
ପ୍ରିୟ କଲର ଦୋଷ ପଛକୁ ଫିଙ୍ଗି । ୬ ।



## ରାଗ ଆଶାବରୀ—ଆଦତାଲ

ମୃଦୁବାଣୀ ଅରେ ଶୁଣାରେ । ପଦ ।

ପୁର ଦୁଆର ଯାଏ କରବେଲେ ବନଦେଶ
କୃପାଳୁ କର କରୁଣା ରେ । ୧ ।

ଶୀତଳ କର୍ପୂରରୁ ସ୍ୱାଦୁ ପୀୟୂଷ ଠାରୁ
ସୁ ସ୍ୱର ବୀଣାରୁ କିଣାରେ । ୨ ।

ଯୁବା ମୋହ ମନ୍ତ୍ର ମଦନ ଦର ହର
ମୁନୀନ୍ଦ୍ର ଧଇର୍ଯ୍ୟ ହଣାରେ । ୩ ।

ପ୍ରତି ଅକ୍ଷରେ ପ୍ରେମ ମୂର୍ତ୍ତିବନ୍ତ ଅସମ
ଯେ ଶୁଣେ ହୁଏ ତୋ କଣାରେ । ୪ ।

ଗୋପାଳ କୃଷ୍ଣ ବୋଲେ ଆଳୀଙ୍କ ଡାକ ହେଲେ
ହିଙ୍ଗ ହୋଇ ଅଗଣାରେ । ୫ ।



## ରାଗ ଝଂଜୋଟି—ତାଳ ମିଶ୍ରଚାପ

ନନ୍ଦନା ଯେହ୍ନ କାମନାରେ
ଗଲ୍ପ ଚପଲେ ବୋଲୁ ଅନା ଅନା ରେ । ପଦ ।
ପ୍ରାଙ୍ଗଣରେ ବନସରେ ନଭରେ
ଦେଖିବା ପାଇଁ ଖେଳା ନାନା ମତରେ । ୧ ।
ମୋ ନାମ କହିବା ଶିଶୁକୁ ହୃଦେ
ଘକାଇ ଡ଼ାକୁ ଥା ଇ କ ପ୍ରମୋଦେ ରେ । ୨ ।
ମୋତେ ଦେଖିଛୁ ବୋଲି ସଜନୀରେ
ନେହରେ ଚୁମ୍ବୁଥାଇ କେତେଥର ରେ । ୩ ।
କ୍ଷଣେ ନଦେଖିଲେ ଆଳୀଙ୍କ ଡାକ
ବୋଲେ ନ ହଣେ ମୁଁ ଅପରାଧୀ କରେ । ୪ ।

ଅଳୀକରେ ଗୃହଁ ମୋ ଲଗି ପ୍ରବ
ଫୁଲକାଇ ବଏ ପ୍ରଣ୍ଡ ପ୍ରଷ୍ଣକରେ । ୫ ।
ଗୋପାଳକୃଷ୍ଣ ପୁଛଇ ଦୁଷ୍ଣକ
କହ ମୋ ପରେ ସତେ ରୁଷି ଛୁ କରେ ! ୬ ।

—*—

## ରାଗ ମାଣ୍ଡ୍ରା ମାଳବ ଗୌଡ଼ା—ମିଶ୍ର ରୂପତାଳ

ଶ୍ୟାମ କମମାସ୍ତକୁ ସମନାହଁ ଆଜ ଜଣେ । ପଦ ।
ବେନ ବାଣୀ ଶୁଭାଶୁଭ ହେଲେ ହୋଇ ଲୋଭ ଲୋଭ
ଯାହା ହେଉଥାଇ ଦେହ ଫୁଲବାଣେ । ୧ ।
ବଦନ୍ତେ ମୁଖ ଦେଖା ଦେଖି ନୋହୁଥିବ ଯେତେ ଆଖି
ଝୁଁରୁଥାଇ ତାକୁ ଝୁଁରି ଅନୁଷଣେ । ୨ ।
ଅଙ୍ଗରେ ଅଙ୍ଗ ନମିଶେ ମିଶିଲା ପରି ଆଭାସେ
ଗୃହଁ ଦେଲେ ନାଚୁଥାଇ ନେତ୍ରକୋଣେ । ୩ ।
ଲବେ ହୋଇଲେ ମଉନ ପକାଇ ଦେଇ ଗୁମାନ
ଦୁଃଖ ପଙ୍କେ ବୁଲଇ ସେ ଯିବ ଯେଣେ । ୪ ।
କେ ଅବାକ କହିବାକୁ ଡାକଲେ ଠାରି ରହକୁ
କମ୍ପୁଥାଇ ବପୁ ଯେତେ ଦରପଣେ । ୫ ।
ଗୋପାଳ କୃଷ୍ଣ କହଇ ଛନ୍ଦକୁ ପଙ୍କେ ପକାଇ
ଶଙ୍କୁ ହେଲେ ହେଁ ମିହ ବୋଲି ଭଣେ ।

—•○•—

## ସାଧକ ଦେହୋଚିତ ଲାଳସା
## ରାଗ ଝଞ୍ଜୋଟି—ମିଶ୍ରରୂପ

( ଡାକବ ରାଧା ରମଣ ବୋଲି—ବୃନ୍ଦେ )
ଜନମିଥିଲେ ଶ୍ରୀ ବ୍ରଜେମୁଁ
ସେବଥାନ୍ତି ରାସେଶ୍ୱରୀ ପଦାବ୍‌ଜେ ମୁଁ ।ପଦ।
ପାଟକ ଗୋପଜାତି ସମ୍ବନ୍ଧରେ
ଅଦ୍ଭୁତ ରହିଥାନ୍ତି ସେବାରେ ।୧

ପ୍ରାତଃକୁଷ୍ମାଣ୍ଡ ହା ଦାସ ରସନ୍ତ
ପରହୈପ୍ୟାଭବ ହୁଅନ୍ତା ମୋର ।୨
କେଶ ହେବାର ସମ୍ଭାର ସାବନ୍ତ
ଯନ୍ତ୍ରେ ରଖନ୍ତ ଜାଣି ଅଦ୍ଭୁତ ।୩
ବ୍ରଜେନ୍ଦ୍ର ପୁରକୁ ଯିବା ବେଳକୁ
ଡାକନ୍ତେ ମୋତେ ଠାଣ ମସ୍ତକକୁ ।୪
ଭେଟହେଲେ ପ୍ରିୟ କୁଣ୍ଡାରଣ୍ୟରେ
ମୁଁ ଲୁଚନ୍ତେ ଫୁଲତୋଳା ଛଳରେ ।୫
ଶବଦାଉ ମୁଁ ଆଳୀ ଆସିବାର
ପ୍ରାଣେଶ କୋଳରୁ ହେଉ ଅନ୍ତର । ୬ ।
ଗୋପାଳ କୃଷ୍ଣ ଏ ଉକ୍ତିରୁ ଲୀଳା
ଭାବ ଭାବ ଦୀର୍ଘ ଶ୍ୱାସ ଚେଳଲା ।୭

—*—

## ରାଗ ଧନାଶ୍ରୀ—ମିଶ୍ର ଚାପ ତାଳ

( ମୋହନ ସାନ୍ତ ଚନ୍ଦ୍ରାପଢ଼ିଲ ରେ—ବୃତ୍ତେ )

ଅନୁସରକା ଫଳ ଦଶିଲାରେ
ଅନୁଭବକୁ ଆଜ ଆସିଲା ରେ ।ପଦ।
ମୋ ଦୁଃଖରେ ଦୁଃଖିନୀ ହେବାଥାଉ ସଜନୀ
ଶୁଣି କଦନ ପୁଣି ହସିଲାରେ ।୧
ଦୂରରୁ ଦେଖିମୋତେ କର ଉରରେ କେତେ
ମାଣ୍ଡଦନ୍ତେ ରସନା ଦଂଶିଲା ରେ ।୨
ତା ମୋ ଭେଟପଥରୁ କାର ଚଞ୍ଚଳ ଖାରୁ
ଅନ୍ତର କଲାରୁ ଆସ୍ପନ୍ଦିଲା ରେ ।୩
ଦେଖି ମୋ ପୂର୍ବ ଲେଖ- ମାନ ଲଭି ବିମୁଖ
ଛୁଡାଇ ଉଦରରେ ଯା ଖୋସିଲା ରେ ।୪
ଗୋପାଳ କୃଷ୍ଣ କୋଲେ ଦରଶନ ନଦେଲେ
ଆଳୀକ ହେଲେ ଯା ନ ପେଶିଲା ରେ ।୫

—*—

## ରାଗ ମାଳବ ଗୌଡ଼ା—ମିଶ୍ରଗ୍ରୂପତାଳ

କେ କି ଲଗାଇ କହିଲା ଧନକୁ ମୋ ନାରେ । ପଦ ।

ଡ଼ାକିଲେ ଆଳୀ କହନ୍ତେ ବୋଇଲା ଭୁ ନାରେ
ପୂର୍ବନ୍ତି ନୟନୁ ଝର ଯେ ଅନାଇ ଦେଲେ ଶିର
ଲୁଆଁଇ ଦେଉଛି ସୁମନାରେ । ୧ ।
ପୂର୍ବବ ପର ମୋହର ପ୍ରସଙ୍ଗ ସଖୀ ନକର
ସଙ୍ଗେ କରୁନାହିଁ ଭାବନାରେ । ୨ ।
ସତେ କରି ଦେବ ଭିନ୍ନ ମୋ ସ୍ନେହ ଦରିଦ୍ର ଜନ
ଧନ ମୋ ଗଣ୍ଠିର ସୁନାରେ । ୩ ।
ଅଖ୍ୟାତ ନୂତନ ପ୍ରେମ ଲୋଭିତ ପରାଣ ସମ
ମାନିଲା କେମନ୍ତ ଭାବନାରେ । ୪ ।
ଗୋପାଳ କୃଷ୍ଣ କହଇ ଗୁଣ ପାସୋର ନୁହଇ ।
ଆନ ନକାଣଇ ମୋ ବନାରେ । ୫ ।

—*—

## ରାଗ ଧନାଶ୍ରୀ—ମିଶ୍ରଗ୍ରୂପତାଳ

କି କରି ନାହିଁ ପଙ୍କଜ ମୁଖ ଶ୍ୟାମ ଅଙ୍କସୁଖ ଆଶାରେ
ଧିକ ହେଉ ଧୈର୍ଯ୍ୟ ଧରିକ ଗାଇଁଛି
ପାମରୀ ମୁଁ କୁଳକାଙ୍କର ଡରରେ । ପଦ ।
ପରାଣ ସମାନ ଆପଣ ଦୁହିଁକ ଦେଇ ମୁଁ କଷଣ ରେ
ନାରି ବ୍ରଜରାଜ ସନ୍ଧିଧିକ ଅନୁ ବରଜାଇଲ ଯା ମାର ଉନ୍ମାଦରେ ।୧ ।
ଗୁରୁତର ଲଜ୍ଜା ମୁଆଁ କଦୃସରେ ହେଲି ଶିଥିଳାଇ ସେ
ଗୁଣବନ୍ତ ରମା ମୋ ଆଡ଼କୁ ଚାହିଁ ନହସି ବେକ ହାତଦେଇ ମୁଖରେ
ଲଳିତା ତ୍ରିଭଙ୍ଗ ଭଙ୍ଗୀ ଆହା ବଂଶୀ ଧାରୀ
ଆଖିରେ ନାଚୁଛି ଶିର ଶିଖଣ୍ଡ ମାଧୁରୀ । ୩ ।
ବନପୁ ମିଶା କଟାକ୍ଷ ବୃତାନ୍ତ ଚାତୁରୀ
ନଶିବକ ରହିଲା ମୋ ମନେ ଡର କରୁ । ୪ ।

କହୁ କହୁ ଝୁହୁଁ ଝୁହୁଁ କାଳଗଲା ସର
ମନମଥ ହୃଦୟୁ ପକାଇଛୁ ଉଦାର । ୫ ।
ଗୋପାଳକୃଷ୍ଣ ଅଇଲା ସେ କାଳେ ବାହାର
ପ୍ରିୟୁ ପ୍ରତ୍ୟନଙ୍ଗ ଲେଖ ହୃଦ ବାସେ ଧର । ୬ ।



## ରାଗ ଭୈରବୀ—ମିଶ୍ର ଝୁପତାଳ

କ୍ଷଣକୁ କ୍ଷଣ ପର ପ୍ରେମ କପଟ ଲୋଡ଼ାଇ
ଯେ ଶିଖିଛୁ ସେ ବୁଝିଛୁ ତାର ବଡ଼ାଇ । ପଦ ।
ଦୃଷ୍ଟିରୁ ଅଇଲେ ଦୂର ଜନମାଇ ନେତ୍ରୁ ମାର
ଧର ପଣନ୍ତ ଦୁଃଖର ପଙ୍କରେ ଗୋଡ଼ାଇ । ୧ ।
ବକ୍ଷରୁ ଯା ଖାଳ ଶପଥ ଡ଼ାକଲେ ରହି ପୂରତେ
ନଶୁଭେ ଶୁଭିଲେ ପ୍ରତି ଉତ୍ତର ହୁଡ଼ାଇ । ୨ ।
ଶୁଣାଇ କାହା କଳ୍ପିତ ମଣାଇ ତା ବାଣୀ ବତ
ଆଣୁଥାଇ ଦେହଳୀକି ବଷୟୁ ଏଡ଼ାଇ । ୩
ସୋପାନ ଉପରେ ରହି ସେ ଢଶିବା ଢଶେ ଝୁଣ୍ଟି
ବୀଣାରୁ ସୁସ୍ୱର କରି ଯାଞ୍ଚକ ପଡାଇ । ୪ ।
ଗୋପାଳକୃଷ୍ଣ କହଇ ଯଦି ଅଳପ ତୋଳାଇ
ତା ପ୍ରସଂଗ ବାଉଳାଇ ନଦ୍ରାହି ଛଡ଼ାଇ । ୫ ।



## ଶଙ୍କରୀ

## ରାଗ କୀରବାଣୀ—ତାଳ ମିଶ୍ରଝୁପ

( ଜଣା ପଡ଼ିଲାରେ ବଣା ମୃଗାକ୍ଷୀ ତୋ ଛଳ—ବୃତ୍ତେ )

କେଉଣେ ନଶୁଣ ଯେ ଡ଼ାକୁଥିଲେ ଏତେ ପର
ପରିଚୟୁ ଦେଲେ ସୁନ୍ଦର ଘେଣ ମୁଁ ପଳାଇ ଯିବାକୁ ଧର ? । ପଦ
ଖାଲୁରୁ ଦେଲ ଦଣ୍ଡକଲା କଥାରେ ଆଶା ଅନେକ ବଢ଼ିଲା
ଅକଳଙ୍କ ପୂର୍ଣ୍ଣ ଶରଦ ଚନ୍ଦ୍ରମା ମୁଖ ଥରେ ନଦେଖିଲା । ୧ ।

ଷୋଡ଼ଶ ନାମ ମନ୍ତ୍ରାର୍ଥାନୁସାରରେ ନିତ୍ୟ ଦାସୀ ଯେ ଯାହାର
ପରାର୍ଦ୍ଧ କାଳ ବ୍ରହ୍ମାର ସମ୍ମିଳନ ଆତୁର ହେଉଛି ଦୂର । ୨ ।
ହେ ଶ୍ରୀ ନାଗରେନ୍ଦ୍ର ବୃନ୍ଦାବନ ଚନ୍ଦ୍ର ହେ ଗୋଷ୍ଠେଶ୍ୱର ତନୁଜ ।
ଶ୍ରୀ ରାଧା ଜୀବନ ନୂତନ ମଦନ ବ୍ରଜ ନବ ଯୁବରାଜ । ୩ ।
ଧୃତବଂଶୀ ବେଣୁ ପବନ ଚରଣ ହେ ବ୍ରଜେଶ୍ୱରୀଙ୍କ ସୁତ
ଶତପତ୍ର ନେତ୍ର ମୃଦୁରାଗ ଗାତ୍ର ହେ ଗୋକୁଳା ରଣ୍ୟ ମିତ୍ର । ୪ ।
ମାଗୁନାହିଁ କିଛି ମନେମାତ୍ର ଅଛି ଆଖି ପୂରାଇ ଦେଖିବ ।
କୃପାକଲେ ତୁମ୍ଭ ପ୍ରାଣବନ୍ଧୁ ରାଧା ପଦାବ୍ଜ କିଙ୍କରୀ ହେବ । ୫ ।
ଶ୍ରୀ କଶୋରୀମଣି କରିଥିଲେ ମାନ ବଲ୍ଲେକ ଆପଣା ଦୋଷ ।
ତୁମ୍ଭ ପାଇଁ ଲଳିତାଙ୍କ ପାଦ ପଡ଼ି ଛଡାଇ ଦେବ ସେ ରୋଷ । ୬ ।
ଆଣି ଦେଉଥିବ ମୋ ସ୍ୱାମିନୀ ଶ୍ରୀ ହସ୍ତର ଗୁନ୍ଥା ଫୁଲମାଳା ।
ତୁମ୍ଭେ ସଜାଡ଼ି ଦେବାର ଝଁରାନେଇ ଦେଇ କହିବ ଫଟୁଲା । ୭ ।
ବଜେ କରିଥିଲ ବେଳେ ଶ୍ରୀ କ୍ଷତ୍ରିଦା ଜେମା ତୁମ୍ଭ ଶ୍ରୀଅଙ୍ଗରେ
ଗୋପାଳକୃଷ୍ଣ ତାମ୍ବୂଳଭାଙ୍ଗି ଲାଗି କରାଉଥିବ ଶ୍ରୀମୁଖରେ । ୮ ।



## ରାଗ ଶଙ୍କରା ଭରଣ—ରୂପକ ତାଳ

କି ନାଦରେ ପ୍ରାଣ ସଂଗିନ ଶୁଭୁଛି କଦମ୍ବ ବନେ ।
ଶ୍ରୁତିରେ ସୁଧା ବରଷି ଧୃତି ନାଶେ ମଞ୍ଜି ମନେ । ପଦ ।
ଦିଗ ବିଦିଗେ ପ୍ରସରି ଖଗ ମୃଗ ଜଡ଼କରି, ସଖି !
କୁଳବଧୂ ମାନୀ ଗ୍ରନ୍ଥି ଫିଟାଉଛି ଅପଟନେ । ୧ ।
ଜଳ ସ୍ତମ୍ଭ ଗ୍ରାବ ଦ୍ରବ ହୋଇଲାକ ଅସମ୍ଭବରେ, ସଖି !
ଆଜନ୍ମ ମୁଁ ଆଜକୁ ମୁଁ ଶୁଣିତ ନଥିଲି ଦିନେ ଦିନେ । ୨ ।
ଆସୁ କନା ମୋ ପାଶକୁ ଲଭିଲଟି କି ଦଶାକୁରେ ସଖି !
ନୀପ ଫୁଲ ପରି ଲୋମ ପୂରିଲା ମୋ ଅଙ୍ଗଘନେ । ୩ ।
ତୋଳିଲି କୁସୁମ କରୁ ଗଳି ପଡ଼ିଲା ରମ୍ଭୋରୁ ରେ, ସଖି ।
ରହି ପାରିବ ନାହିଁ ମୁଁ ଗୁଡ଼ି ଦେ ନେଇ ସଦନେ । ୪ ।
ବଜାଉଛି ରସାଳସି ନିକୁଞ୍ଜ ଦେବତା ବଂଶୀରେ, ସଖି !
ଗୋପାଳ କୃଷ୍ଣ ଭାଷଇ ପ୍ରକଟିଲା ତ୍ରିଭୁବନେ । ୫ ।



## ରାଗ ଖମାଚ—ଆଦତାଳ

( ଭଜନମଦ ହୃଦ୍‌ପ୍ରାଣ ପ୍ରେୟସୀ ଶ୍ରୀମତୀଙ୍କ—ଉକ୍ତେ )

ଆଜ ବ୍ରଜରାଜ ପୁରେ ଲାଜେ ମୁଁ ବୁଡ଼ିଲି ମା । ପଦ ।
ରେହିଣୀଙ୍କ ସଙ୍ଗତରେ ଥିଲି ରନ୍ଧନ ମଧ୍ୟରେ
ପଛକୁ ନାଗର ବର ଦୃଷ୍ଟି ପଡ଼ିଲି ମା । ୧
ହୃଦକରେ ଦମ ଦମ ବୁଦ୍ଧି ମୋ ହୋଇଲା ବାମ
ସୁଧାସମ ଶିଖରଣୀ ଜଳେ ନଉଡ଼ିଲି ମା । ୨
କପଟିନୀ କୁନ୍ଦବଲ୍ଲୀ ଜାଣି ପାଶୁ ଗଲା ଚଳି
ସାଙ୍ଗ ପଡ଼ିବାରୁ ଆଣି ଓଢ଼ଣି ଓଢ଼ିଲି ମା । ୩
ହେଲି କି ପାକ ସମ୍ଭାର ବୋଲି ପଚ୍ଛରନ୍ତେ ମୋର
ଧଣ୍ଡ ଖସିଗଲା ପ୍ରଭ ଉତ୍ତର ତୁଡ଼ିଲି ମା । ୪
ମୋ ଓଷ୍ଠ କମ୍ପିଲ ଲକ୍ଷି ହସିଲା ଯେ ଆଡ଼େ ରହି
ତା ଇଂଗିତ ହେଳ ଶିଷ୍ଟେ ଅଧର ପୀଡ଼ିଲି ମା । ୫
ଗୋପାଳ କୃଷ୍ଣ କହନ୍ତି ଉଠୁ ଜଟିଳା ଅଇଲା
ଆସନ୍ତୁ ସଜନି ତୋତେ କେତେ ମୁଁ ଲୋଡ଼ିଲି ମା । ୬



## ରାଗ ମୁଖାରୀ—ମିଶ୍ରଝାପତାଳ

ଜଣା ଗଲାନି । ସ୍ୱର ସ୍ମୃତାଣି
କଶୋଗ୍ର ମଣି । ପଦ
ଲଳନା ବର ଥରକୁ ଥର
ଯମୁନାରୁ ନୀର ଅଣା ଗଲାନି । ୧
ବ୍ରଜେନ୍ଦ୍ର ସୁତ ନୟନ କୁନ୍ତ
ଘାତ ବିବେକ ବୁଦ୍ଧି ଜଣା ଗଲାନି । ୨
ତୋ ଭାବନାରେ ଶ୍ୟାମ ପାଦରେ
ମଦନ ରଜା ନହିଁ ଜାଣି ହେଲାନି । ୩

ପ୍ରାଣ ମିତଣି ତନସ୍ତ ବାଣୀ
ଆଉ ଉହାଡରେ ରହି ଶୁଣା ଗଲାନ । ୪
ଆଗ ଜରଗି ସ୍ତୁତିଁ ଟଁଟର
ଗୋପାଳ କୃଷ୍ଣ ବୋଲଇ ହୁଅ ତୁନି । ୫

—*—

## ରାଗ ଖମାଚ—ଏକତାଳି

(ନଖଙ୍କରେ ଶୁଣ୍ଡଙ୍କି ଖାରଣ୍ଡି ହୁଅ ସାଦା—ବୃତ୍ତେ)

ଏଣୀ ଈକ୍ଷଣି ସ୍ୱଧେ ଏଣିକ ଆରେ
ଚନ୍ଦ୍ରବ ଅଧର ରଜ ଶ୍ରୀମୁଖ ଲୁଆଁ ରେ । ପଦ

ମନମଥ ସଜ ହୋଇଛନ୍ତି ଆଜ
ଅନା ଲୁଆଁ ମାଳ ଜଳଧର ଟଁଳଆରେ । ୧

ଫୁଲ ଧନୁକର ଘଟେଛ ସୁମଣର
ଖୋସି ଚରଣେ ଲମ୍ବଇ ନବ ରଙ୍ଗି ଆରେ । ୨

ମୁରଲୀ ରଖିଣେ ଭୃନ୍ଦ ବନ୍ଧ ବାସେ
ଅନାଉଛନ୍ତି କଟାକ୍ଷ କର ଭୃଷିଆ ରେ । ୩

ଫଗୁ ମୁଠାକରୁ ଫିଟିଲା ଉମ୍ଭୋରୁ
ଉପର ଉପୁରାଣରେ ମଥା ଘୋଡ଼ିଆରେ । ୪

ଗୋପାଳକୃଷ୍ଣ ସେ ସମସ୍ତରେ ଭଷେ
ଆସ ଭଖେ ଆସିଲେ ସେ କୁଂଜ ଲୁଟିଆରେ । ୫



## ଲୀଳସା

## ରାଗ କାଫି—ମିଶ୍ରରୂପ

( ମୂହାଁ ମୂର୍ଦ୍ଧ କଣୋର ଚନ୍ଦ୍ରମାଙ୍କର ମୋର ପ୍ରଶ୍ନ—ବୃତ୍ତେ )

ଗଲାବେଳେ ମୋ ଜୀବ । ସ୍ୱାସ୍ଥେ ଝଙ୍କା ଯିବ

ରହୁ ଶ୍ରୀ ଗୋସ୍ୱାମୀ ଚନ୍ଦ୍ର କୋଳରେ । ପଦ ।

ଦଶନେ ବଂଶୀଭୂଷଣ ଜଣାଉଛି ଜଣାଣ

ଶ୍ରୀ ବୃନ୍ଦା ବନେଶ୍ୱରୀ ପଦ ତଳରେ । ୧

ସବ ଅବସାନରେ ଆଉ ଜାଇ ହୃଦରେ

ମୋହନ ବଂଶୀ ଥିବେ ପଦ ତଳରେ । ୨

କୋଟି କୋଟି ଜନ୍ମର ସୁକୃତ ଫଳ ମୋର

ତସ୍ମାମସ୍ତି ବଂଶୀଅ କୃପା ବଳରେ । ୩

ଦୀନ ହୀନ ପାମର କୋଲି ହେବେ ଉଦ୍ଧାର

ରାଧେଶ୍ୱରୀ ଅଲୋକ ନେତ୍ରାଞ୍ଚଳରେ । ୪

ମୋ ମତେ ମୁଁ କିଂକରୀ ହେବାକୁ ଆଶାକରି

ରହିଛି ତରକାକୁ ମୁଁ ଆକୁଳରେ । ୫

ପ୍ରାର୍ଥନା ବାର ବାର ଏ ଗୋପାଳକୃଷ୍ଣର

କହୁ ହେଲେ ପ୍ରାଣେଶ ଶ୍ରୀ ଶ୍ରୀ ମୂଳରେ । ୬



## ରାଗ ମାୟା ମାଳବ ଗୌଡ଼ା—ମିଶ୍ରତାପ ତାଳ

( ନାହିଁ କଣଦେରେ—ବୃତ୍ତେ )

ଲେଖିଅଛନ୍ତି ଗୋ ତୋ ଲୁଣ କୁଂଜ ଭିତିରେ

ଭୁଲୁ ଅନାଇବାର ପ୍ରାଣ ମିତଣି ବ୍ରଜେନ୍ଦ୍ର ରସବକ୍ଷରେ । ପଦ

ଦଶି ନ ଦଶିଲା ପରି ଲଜ୍ଜା ହୋଇ ଦୁଆର ବନ୍ଧ କରତରେ

ନବ ବଧୂପରି ବଡାଇ ଦେବାର ବେଜ୍ୟ ବେଣୀ ହାତରେ ୧

ଖସି ଯାଇଛି ମଥାରୁ ଉପୁରଣ ସ୍ୱେଦ ବିନ୍ଦୁ ଶ୍ରୀମୁଖରେ

ଜନନ ହୋଇଛି ଲାଳପାତ ଅଙ୍ଗି ବେଣୀ ଲମ୍ବି ଛି ପୃଷ୍ଠରେ । ୨

ଗଣ୍ଡ ମଣ୍ଡଳର ଲୋମ କଣ୍ଟକର ସିଂଦୂର ବିନ୍ଦୁ ତ ଝଳ
ଚିବୁକର ନବ ମୃଗମଦ ବିନ୍ଦୁ ଶୋଭା ପଡ଼ୁଛି ଉଜ୍ଜ୍ୱଳ । ୩
ଚୂରିଛନ୍ତି ପ୍ରତି ଅଙ୍ଗରେ ଅଳଂକାର ଜୁଡ଼ାର ମୟୂଖ ମୁଖି
ପିନ୍ଧାଇଛନ୍ତି କଳାଶାଢ଼ୀ ସତେ ମୁଁ ଭୁଲୁ ବୋଲି ବେଲ ଦେଖି । ୪
କୁହସି ତରଳ ଡୋଳା ଡାଳିବାର ଭଙ୍ଗୀଯା ହୋଇଛି ସଙ୍ଗ
ସକଳ କଳା ପ୍ରେମ ଗୁଣ ବସୁଛି ବ୍ରଜ ବଧୂଙ୍କର ଚର୍ଚ୍ଚି । ୫ ।
ପଦରେ ଯାଚକ ରଂଜୁଥିଲେ ମୁର୍ଚ୍ଛି ପ୍ରମୁକୁ ଗଲା ବେଳକୁ
ବୋଲୁ ସ୍ୱାମିନୀ ହସିଲେ ଏଣେ ଖୁର୍ଚ୍ଚି ଗୋପାଳକୃଷ୍ଣ ମୁଦ୍ଦିକୁ । ୬



## ରାଗ ହରିକାମୋଦ—ରୂପକ ତାଳ

( ପାପୋର ଦେଲୁ ନା ଜଦରେ ନୟାନା—ବୃତ୍ତେ )

କୁଞ୍ଜବନ ଯାକ ଖୋଜି ଥିବେ ପ୍ରଭୁ
ଯୋଗେ ମୋ ଜୀବ ଜୀବନ
ଧିକ ନାରୀ ଜନ୍ମ କି ଦେଲୁ ଦଇବ
ସଦାକଲୁ ପରାଧୀନ । ୧
ସଙ୍କେତ କୁଞ୍ଜକୁ ଶୂନ୍ୟ ଦେଖି ନେତ୍ରେ
ଝର ଜର ଥନ ଥନ
ବୃନ୍ଦା ପଣ୍ଟୁ ନନ୍ଦଜର କଣ୍ଠେ
ରଖିଯିବ ସେ ବଚନ । ୨
ପରିହାସ କରି ଲୁଚିଛି ମୁଁ ବୋଲି
ସଧୀରେ କରିଗମନ
କୁଞ୍ଜକୁ ହେଲେ ଦେଖିଲେ ଆସି ବୋଲି
ପଛେ ହୋଇବେ ସେ ମ୍ଳାନ । ୩
ତାଙ୍କୁ ଦେଖି ମୋ ନାଁ ଡାକିଲେ ସାରିକା
ଉଲ୍ଲସାଇ ଅଚନକ
ବନପକ୍ଷୀଙ୍କି ପଠିଆଇ ପଥକୁ
କରୁଥିବେ ଆଲୋକନ । ୪

ପଡ଼ ଯାଉଥିବ କରରୁ ମୁରଲୀ
ନଥିବାରୁ ସାବଧାନ
ଶତ ଶୀତ କର ନଉସ୍ତୁଭ ବାର
ମୁଖ ଝଷୁଥିବ ମ୍ଲାନ ।୫
ସ୍ୱ ଈଶ୍ୱରୀ ପଦ ଭୁଲା କୋଟି ଦ୍ୱନ୍ଦ
ବାହାର କର ସଘନ
ଗୋପାଳକୃଷ୍ଣ ଭୂନକଶ କହିଲ
ଜଟିଳା କଲେ ଶପୂନ ।୬

—*—

## ରାଗ ପନ୍ତୁବରାଡ଼ି—ମିଶ୍ର ଚାପତାଳ

( ଭଜମନ ବ୍ରଜବନ ବିଜରାଜ—ବୃତ୍ତେ )

ଧନ୍ୟ ସଜନୀ ଧନ୍ୟ ତୋ ଡୋଳା ତଳାରେ
ବୃନ୍ଦାରଣ୍ୟ ମଞ୍ଜ କଖନ୍ଦ୍ର ଶୃଙ୍ଖଳା ରେ ।ପଦ।
ଯା ଏକ ଅଙ୍ଗରେ ସ୍ଥିତି ଅଖିଳ ଇନ୍ଦ୍ରିୟ ବୃତ୍ତି
ଆହା ସେ ଝବେକ କାହ୍ନୁଁ ହ୍ରଜ ଗଳରେ ।୧
ସୁମନ ପୁଟିକା ଭୁଲେ ବଂଶୀଦେଉ ତୋ ଅଞ୍ଚଳେ
କର ଡ଼ର ଅଧରକ ଥରୁଥିଲ ରେ ।୨
ନ ପାରନ୍ତ କେହ୍ନିରୁଛି ଯା ବଂଶୀକି ଥିଲେ ଚୋର
ପଣ୍ୟ ତୋହର ସାଦୃଶ ପରି ହେଲରେ ।୩
ମଥାର ମଣି ଦର୍ପଣ ଛବି ଗଣ୍ଡେ ସ୍ୱେଦ କଣ
ଗୃହୁଁ କାହ୍ନୁଁ ବନାଶ୍ରମେ ଜନମିଲ ରେ ।୪
ସୁଧା ସହୋଦର ଗର ଜଳପୁ ଥରକୁ ଥର
ପୁଣି ସେ ବର୍ଣ୍ଣ ଲୁପ୍ତଦସା ଆସିଲ ରେ ।୫
ଗୋପାଳକୃଷ୍ଣ ଭାଷଣ ଗଢ଼ଲକ୍ଷଣି ଈ ଷଣ
ଗ୍ରହା ବେଶ ପରି ତନୁ ପୁଲକଲା ରେ ।୬

—*—

## ରାଗ ଝିଞ୍ଜୋଟି—ଆଦତାଳ

ଆଜ ଆସିବେ ଶ୍ୟାମ କହ୍ନାଇ ରେ
ଚନ୍ଦ୍ରାବଳୀ ପୁରକୁ ଥିବେ ଯାଇ ରେ
ସେତ ରଖିଥିବ ହୃଦେ ଲଗାଇ ରେ । ୧
ଥିବ ମନୋରଥ ଯାକ ପୂରାଇ ରେ
ବସିଥିବେ ଅଙ୍ଗ ଅଙ୍ଗେ ମିଶାଇ ରେ
ଘନ ବିଦ୍ୟୁତ ଦ୍ୟୁତିକି ଲସାଇ ରେ ।୨
ସର୍ବେ କସ୍ୱାଇଲ ମୋତେ ରୁଷାଇ ରେ
କେଣୁ ଆଣିଲ ନାହିଁ ଲେଉଟାଇ ରେ
ଏବେ କହୁଛ କେଣେ ବଟିଆଇ ରେ ।୩
ଇଚ୍ଛୁଥାଅ ସବୁ କୁଶଳ ହୋଇ ରେ
ମୁଁ ଯମୁନାକୁ ଯାଉଛି ଗାଧୋଇ ରେ
ବିଧି ଲେଖନ କେ ଦେବ ଲିଭାଇ ରେ ।୪
ଛନ୍ଦ ଘଟ ହେଲେ ଧଅ ଅଣାଇ ରେ
ବୋଲୁ ଲଳିତା ମୁଖକୁ ଅନାଇ ରେ
ନେଲେ କୋଳକୁ ଲୁହ ପୋଛି ଦେଇ ରେ ।୫
ବୃନ୍ଦା ଆଣିଲେ କୋଳ ବାହୁଡ଼ାଇ ରେ
କର ଗୋପାଳ କୃଷ୍ଣ ବଡ଼ାଇ ରେ
ଦେଲା ଶ୍ରୀ ଗଜେଶ୍ୱରଙ୍କି ଦେଖାଇ ରେ ।୬

—*—

## ରାଗ ଶଙ୍କରା ଭରଣ—ମିଶ୍ରଚାପ ତାଳ

ମୋହନ ଦେଖିଲେ ତୋତେ ରେ କହୁଥିଲେ ତ ମୋତେ ।ପଦ।
ଅରବିନ୍ଦ ବନ୍ଧୁ ସୁତାକୁ ଆସୁ ସଖୀ ସଙ୍ଗତେ
ତୁ ପୁଣି ଭାନସୁର ବେଳ ଗୁନ୍ଦିଲୁ ପଙ୍କଆଡ଼କୁ କି ସତେରେ । ୧
ଉଡ଼ୁଥିଲେ ଲୁଣି ଚକୋର ତୋ ଲପନ ପୁରତେ
ଖେଳନ୍ତି ନକୁଳୁମ୍ବକୁ ନବାରୁଣୀଲୁ ସରୋରୁହ ଥିଲ ହାତେରେ ।୨

ତୋ ହରଣୀଠାକୁ ବେଶ କୃଷ୍ଣ କୃଷ୍ଣସାର ଆସନ୍ତେ
ଚମକିଲି ହୋଇ ଯାଣକୁ ଡାକିଲୁ ଲଳିତାଙ୍କୁ ପୁଣି କେତେ ରେ ।୩
ଯାଇ ତଟେ ତୋ ମଲ୍ଲୀ କଣ୍ଠମାଳା ବାନ୍ଧ ବାସାନ୍ତେ
ରଖିଛନ୍ତି ତନୁ ସୁରଭ ତୋହର ପ୍ରସରୁଛୁ ଅବିରତେ ରେ ।୪
ଗୋପାଳକୃଷ୍ଣଙ୍କୁ ନେ କୋଳ ନାଗେଶ୍ୱର ବଅନ୍ତେ
ଆଣିଲି ସେ ଅଳି ନ ବସା ସୁମନ ଦେବାପାଇଁ ତୋ ପୁରତେ ରେ ।୫



## ରାଗ କୀରବାଣୀ—ମିଶ୍ରଚାପତାଳ

( ରାଧା ସୁରତକୁ ଯାନା ଶଠ ଲମ୍ପଟ କାନା ବୁଝେ )

ଧଣ୍ଣୁଛି ତ ଭନ୍ନେପର କ ରେ ନବ କିଶୋର ।ପଦ।

ବସିଛୁ ଗୁମାନେ      କ ଯାଈ ନର୍ତ୍ତନେ
ଯଣ୍ଡ ହୋଇ ଯାହୁର ।୧
ସାଜବ ତ ସଜ      କୋଳ ମୁହିଁ ଆଜ
ଭାବଥିଲି ନୂଆ କର ।୨
ଧେନୁ ଅଡ଼ାଇ ଆସୁ      ଦେଲେ ବଡ଼ାଇ
ଏ ଝଂଗ ଆଣିଛୁ ଧରି ।୩
ଶ୍ୟାମ ପ୍ରେମ ସୁଧା      ରସନିଧି ରାଧା
କୋଳ ଥାଏ ମୁଁ ବସୁର ।୪
କହଇ ଗୋପାଳ      କୃଷ୍ଣ ତନୁଁ କୋଳ
ଯାଇ ଶୋଇଲେ ଯାସୋର ।୫



## ରାଗ ନୀଳାମ୍ବରୀ—ମିଶ୍ରଚାପତାଳ

କି ପଢ଼ାଇଲୁ ଶ୍ୟାମ ଆୟୁଷ୍ମେ ଆହା ଆଜନମ ସୁକୁମାର ।ପଦ।
କ୍ଷୀଣ ହେଲାଚନ୍ଦ୍ର ଚନ୍ଦ୍ରି ହେଉନାହିଁ କି ମନ୍ତ୍ର ଦେଲା ମୁରାର
ତେଜିଲୁ ଶୟନ ବିଭୂଷଣ ଭୋଜନ ଜପିଲୁ ନାମ ତାହାର ।୧
ଧୂର୍ତ୍ତ ଗୁରୁ ଶଠଶିଖାମଣି ନଷ୍ଟ ହୁଏ କି ତା ଶାନ୍ତିବାଣ
ପୟପାନ କର ଶିଶୁ ବୟସେ ଯେ ଜାଣିଛୁ କାଣିଛୁ କାଶ ।୨
ତା ଅପରାଧେ ମୋତେ ନଦେଉ ଉତ୍ତର ଯେତେ କହିଲେ ଭିଆଣ
କାନନ କୁରଙ୍ଗ ଠାରୁ ବଳଗଲୁ ଏକାଇ ତାକୁ ହିଆର ।୩
ତଳପ କଲୁ ତଳକୁ ଅହ ଫଣି ନେନେ ନରବ୍ଧିଲ କାଶ
ଅପସାନେ ଘର କଲାସ୍ୱର ଜ୍ୱର ନିତ ହୋଇଲୁ ଧିକ୍କାର ।୪
ନନ୍ଦନପ୍ରୂନ ଇନ୍ଦୀବର ଚନ୍ଦ୍ରମା ରବି ଶୁଣି ତେଣି ପାର
ଦେଖି ଗୋପାଳ କୃଷ୍ଣ ଏଣେ ସଖୀଙ୍କି କହିଦେଲା ଆଖିଠାର ।୫



## ରାଗ ମାୟାମାଳବ ଗୌଡ଼ା ମିଶ୍ରଚାପତାଳ

( ନାହିଁ ମୋର ପୀରତି ସମକାର—ବୃତ୍ତେ )

ତୋ ପୀରତି ଲାଗିରେ ହୋଇବ ଯୋଗୀ ।ପଦ।
ଧରି ଜପାମାଳୀ ତୋ ଗୁଣ ଆବଳୀ
ନିରନ୍ତେ ଜପିବ ଜୀବ ସଙ୍ଗୀରେ ।୧
ଅଙ୍କେ ସୁରତାନ୍ତେ ପଢୁଡ଼ାଇ ମୋତେ
ନଶିଯାକ ବସିଥାଉ ଜଗିରେ ।୨
ଦୁରୁ ମୋତେ ଚାହିଁ ହସୁ ଚନ୍ଦ୍ର ମୁହିଁ
ମୁଖ ନାଗବଲ୍ଲୀ ଦେଉ ଫିଙ୍ଗିରେ ।୩
ଭାଷଇ ଗୋପାଳ— କୃଷ୍ଣ ବଂଶୀକୁଳ
ହେଲେ ଓମୋହପାରେ ଭୁରୁ ଭଙ୍ଗୀରେ ।୪



## ରାଗ ପୁନ୍ନାଗ—ତ୍ରିପୁଟ ତାଳ

କେ ମୁଁ କି ଜାଣଇ ମା । ଗୋଷ୍ଠ ଚନ୍ଦ୍ରମା ।
ତୋ ମୁଖରୁ ଯିବା ଏବେ ଶୁଣୁଛି ମା । ପଦ ।

ଜାଣିନାହିଁ ଦେଉଳ ସବୁ ଆଜକୁ କୋଳ
କୁଟିଳା କୁଟିଳାଙ୍କୁ ଡ଼ର ।
ଗବାକ୍ଷର ମାର୍ଗର ସେ ନୀଳ ପୁରନ୍ଦର
ଝଲକ ଦେଇଛୁ ଥରେ ଅନାଇ ମା । ୧ ।

କଳିନ୍ଦ କି ମନ୍ଦର ପଦ୍ମହ୍ରଦେ ମୋହର
ରହି ଦିଶୁଛି ଦଶେ ଦଶେ
ପଳାଇଲେ ଆଗର ପଥ ଓଗାଳେ ମୋର
ଶ୍ୟାମ ସୁନ୍ଦର ଭୁଜ ପ୍ରସାରି ଦେଇ । ୨ ।

କଳନ୍ଦ ତନୟାକୁ କାଲି ଗାଧୋଇବାକୁ
ଗଲାବେଳେ ଏକା ହୋଇ
ପ୍ରତିଚ୍ଛନ୍ଦ ମୂରତି ପରହେଲା ପ୍ରତୀତି
ଦିଶୁଥିଲା ତ୍ରିଭଙ୍ଗ ଭଙ୍ଗିମା ହୋଇ । ୩ ।

କେଉଁଠାରେ ସଦନ ସେ କାହାର ନନ୍ଦନ
ଶୁଣୁଁଥିଲା ବେଣୁ ବଜାଇ
ଗୋପାଳ କୃଷ୍ଣ ଭଣେ ପ୍ରାଣନାଥ ହେବେ ସେ
ଲୋଡ଼ା ଲାଗିଲାନି ଦୂତି ତୁମ୍ଭ ପାଇଁ । ୪ ।



## ରାଗ କାମୋଦୀ—ତ୍ରିପୁଟତାଳ

ଶୁଣୁଁ ନାହିଁ ସରକର କହୁଛି କି କଥା ହେଲେ
ମୋତେ ସବୁ ଦିନ ପର । ପଦ ।

କ୍ଷଣେ ନପାଇ ଦେମା ଭେଟ ବାହାରେ ରହିଲେ ଘଟ
ଉରଜା ଜଗୁଛି କାଠ କବାଟରେ ଅପସର । ୧ ।

କେବେ ମୁଁ ମନ ମିଶାଇ ଡ଼ାକିଲେ ଗୁଣ ପକାଇ
ରହି ନରହିଲା ହୋଇ ଆଣୁଛି ନପୂରୁ ବାର । ୨ ।

ସୁମନ ଗୁଚ୍ଛି ସ୍ତବକରେ                    ବାନ୍ଧିଥିଲ ପଣନ୍ତରେ
    ସଖୀକି ନେଇ ରହରେ ଦେଇ ପଠାଇଲ ଠାଇଁ । ୩ ।
ଗୁରୁଜନ ପାଶେ ଜାଣି                    କରଜା ପଦ୍ମବନ୍ଧ ଘାତି
    ଯାକ ରହିଥିଲ ଚେତି ମୋ ଗୃହ ଶେଜ ସୁନ୍ଦରି । ୪ ।
ଗୋପାଳକୃଷ୍ଣ କଥନ                    ସେ ଜୀବନର ଜୀବନ
    ସେ ଲୁଆଁଇଲେ ଲପନ କେବ୍ଲ ରହେ ଧନ୍ତ ଧରି । ୫ ।



## ରାଗ ଖଂଜୋଟି—ରୂପକ ତାଳ

        ପ୍ରାଣ ସଙ୍ଗିନ ରେ ଦେଖିଆ ।
ବ୍ରଜ ରାଜ ତନୁଜ ଭଙ୍ଗୀକି ନଚ୍ଛଇବାର ଭ୍ରୂ ଭୁଜଙ୍ଗୀ କି ।
ରୁନ୍ଧି ନ ରୁନ୍ଧିଲ—                    ପରି ଖେଳାଇ ଡୋଳା
    ଶ୍ରୁତି ପଥରେ ଥକାଇ ଦେଉଛି ନବରଂଗିଆ । ୧
ଅଧରେ ନବେଶି                    ରମଣୀସ୍ତ କରି ବଂଶୀ
    ବଜାଇ ଆସୁଛି ସେ ଶିଖଣ୍ଡ ଉତ୍ତମାଙ୍ଗିଆ । ୨
ପୀତବାସ କାନ୍ତି                    ପିନ୍ଧିବାର ନୁହଇ ମୁରୁଛି
    ନାଗ୍ରମନ ନଳନର ସୁନ୍ଦର ମଦ ଭୃଙ୍ଗିଆ । ୩
ଆହା କି ମଧୁର                    ମନ୍ଦହା କି ସୁଧାର ଧାର
    ସ୍ମରଶାଣ—ରସାଣିତ—କରୁଛି ଅପାଙ୍ଗିଆ । ୪
ଗୋପାଳ କୃଷ୍ଣ ସେ                    ସୁଖ ସୁଧାବ୍ଧିରେ ଭାସେ
    ଆସି ଭେଟହେଉ ଶ୍ରୀରାଧା ସେ କଷ ଶୃଙ୍ଗିଆ । ୫



## ରାଗ ଆନନ୍ଦ ଭୈରବୀ—ମିଶ୍ରରୂପ ତାଳ

(ମୋହନଙ୍କୁ ରୁଷିକି କି ହେ ରାଧା ଭୁନାଏ—ବୁଝେ)

ତାକୁ କେ କି କହି ଦେଲା ମୋ ନାରେ ଲଗାଇ । ପଦ

ମୋ ନେଳକନକୁ ସୁମନା          ହେଲା କି ଯୋଗୁ ବିମନା

ଦୂତକ ପ୍ରାଙ୍ଗଣରେ ଯେ ଥାଇ ଜଗାଇ । ୧

ମୋ ଲାଗି କୁସୁମ ମାଳା          ଦେଖି ଆଳୀ କରେ ଢାଳା

ମଉଳ ଗଲାନ ବୋଲି ଦେଲା ଫିଙ୍ଗାଇ । ୨

ମୁଁ ଜଗିଛୁ ବୋଲି ସଖୀ          ତାରେ କହନ୍ତେ ସୁମୁଖୀ

ମଥା କଂପାଇ କଂପାଇ ଦେଲା ଫିଙ୍ଗାଇଁ । ୩

କି ଗୁଢ଼ ଗଲା ସନ୍ଧରେ          ତା ଛନ୍ଦ ଚୀନ ଚେଳରେ

ପ୍ରେମ ମଞ୍ଜିଷ୍ଠା ରଙ୍ଗ ମୁଁ ଥିଲି ରଂଗାଇ । ୪

ଗୋପାଳ କୃଷ୍ଣ ଭଣଇ          ଆସ ସଜନ ଜଣାଇ

ଯୋଗୀ ହୋଇ ବୁଲୁଥିବ ତା ଗୁଣ ଗାଇ । ୫



## ରାଗଆନନ୍ଦ ଭୈରବୀ—ଏକତାଳ

ରସ ସରସି ଦଶା ଦେ ରେ ଥରେ । ପଦ

ପ୍ରାଚୀର ପ୍ରାଚୀ ଅଚଳେ          ଶ୍ରୀମୁଖ ଚନ୍ଦ୍ରମା

ପୂର୍ବ ପରି କରଅ ଉଦେ ରେ । ୧

କଥା ଶିଖାଇଲା ପରି          ସାରିକ ସୁଧୀରା

ଶୁଭ୍ର ହେଲେ କରନ ପଦେରେ । ୨

ମାଗୁଣି ମାଗୁଛି ଏତେ          ଉଡ଼ାଇଲ ଶ୍ରୀମୁଖୁ

ଲେଖା ହେଲେ ଯାଚକ ପଦେରେ । ୩

ଦେଖିଲା ଉତ୍ତରୁ ତୋତେ          ଯାଉ ପଛେ ପ୍ରାଣ

ଦାରୁଣ ମଦନ ବିପଦରେ । ୪

କହଇ ଗୋପାଳ          ପଞ୍ଚନାସୁକ ଧନ

ଅନା ଆସି କରୁଣା ହୃଦରେ । ୫



## ରାଗ ବସନ୍ତ—ମିଶ୍ର ଚାପତାଳ

ମଜ୍ଜା ମଜ୍ଜାଇଲ ନ ଯାଇ ହଜାଇଲି ଲଜ୍ଜାନ୍ତ ଜାଣୁ ମଣିକ ରେ । ପଦ

ଏ ମଧୁର ନଶାରେ ବିରହ ଦଶାରେ
ପ୍ରାଣ ଧଇବ କେହି ବାଣ ସ୍ମରର ସହି
କ୍ଷାଣ ନ ହବେ ଚେଣିକରେ । ୧

ତେଜୁ ନେହ୍ କାରି ହେବନି ଧିକ୍‌କାରି
କ୍ଷମା ତ ହଉଥିବ ଯାମକ ଯୁଗ ହେବ
ତାମରସ ଈକ୍ଷଣୀକ ରେ । ୨

ଅରଜିଲି ନିନ୍ଦା ବରଜିଲି ଫନ୍ଦା
ଆଶୀବିଷ ପୋଷିଲି ନାଶି ସୁମନ ବଲ୍ଲୀ
ଆସି ରହିଲି ଏଣିକ ରେ । ୩

ମନେ ମନେ ମୋତେ ଲେଉଟୁଥିବ କେତେ
ଆଜ ଦେଖିବ ମୁହିଁ ଦାଉ ମାରଇ ସହି
ଆଜ ପ୍ରାତଃ ସ୍ମରଣୀ କ ରେ । ୪

ଗୋପାଳ କୃଷ୍ଣର ବାଞ୍ଛା କରିବାର
ସୁକୃତର ଫଳ କି ଯତେ ଲଭ୍ୟ ହେବ କି
ଦେଖି ସୁରୁରୁ ବେଣୀ କ । ୫



## ରାଗ ସାବେରୀ—ମିଶ୍ର ଚାପତାଳ

( ଗଳ୍ପଣିତ ଗଳ୍ପ କଥାରେ ସଂଗୀତ—କୃତ୍ତେ )

କାହି ଲୁଚେଇଁ ନାଶି ମନରେ ନାଗର !
ଅସାଧାରଣ ତାଙ୍କ ପ୍ରେମା ଚରଣ
କ୍ଷଣକୁ କ୍ଷଣ ନୂତନ ରେ । ପଦ

ପୁରୁଷଙ୍କୁ ବପୁ ପ୍ରାଣ ସମର୍ପଣ
କରିଥାନ୍ତି ରଜନୀରେ
ବାସରେ ମଦନ ଦହିଦେଲେ ହେଲେ
ଅନାନ୍ତି ନାହିଁ ହେଳାରେ । ୧

ପାଶେ ରହି ଜନେ ଡାକଲେ ନ ଶୁଣନ୍ତେ
ଯା ପ୍ରେମ ଭକ୍ତ ମାନସେ
ତାକୁ ପୁରତରେ ଦେଖିଲେ ପଳାନ୍ତି
କାହିଁ ପାଇଁ ଏନା ଦୋଷେ । ୨
ଲକ୍ଷା ଲେଖି ଦେବ ବୋଇଲେ ଓଲଗି
ପକାନ୍ତି ଆପଣା ଆନ
ମାନ କଲ କାଳେ ଚରଣେ ପଡ଼ିଲେ
ନୁହନ୍ତି ଲବେ ପ୍ରସନ୍ନ ।୩
ପୁରୁଷାର୍ଥିତେ ଅବାସନକୁ ଶୋଭ
କରନ୍ତି ଦରଶନକୁ
ଏଥୁ ଆନ ବେଳେ ନ ଦେଖାନ୍ତି ପଦ
ଅଙ୍ଗୁଷ୍ଠି ଅଗ୍ର ଭାଗକୁ ।୪
ହୃଦେ ଥାନ୍ତି ଜଡ଼ ନାଶି ବେନ ପକ୍ଷ
ଥାଉ ଚଳନ୍ତି ଉଠିବସି
ଗୋପାଳ କୃଷ୍ଣ ଭାବଇ ଯିବା ବେଳେ
କହନ୍ତି ମାଧ ଆଶ୍ୱାସି । ୫



## ଅଭିଷ୍ଟ ଲାଳସା

### ରାଗ କଲ୍ୟାଣୀ—ରୂପକତାଳ

( ଘଣ୍ଟ ପାଇଗଲା ସେ ଦାଣ୍ଡ ବୁଲେ )

ବ୍ରଜ ଜନ ନେତ୍ର ସଂପତ୍ତି । ହା ନିଭୃତ କୁଂଜ ଗୃହ ଦମ୍ପତି । ପଦ
ଦିବ୍ୟ ରତ୍ନ ପୀଠ ପକାଇ ।
ଗୋଷ୍ଠେନ୍ଦ୍ରଙ୍କୁ ବସେ କରାଇ ।
ନେଇ ବାଢ଼ିବା ସୁବର୍ଣ୍ଣ ପାତ୍ରରେ
ସୁଧା ସ୍ୱାଦୁ ଭୋଜ୍ୟ ହା ରସବତୀ । ୧

କରୁ ଜୀବ ବଂଧୁ ଅଶନ
ହା ହା ସେ କାଳର ପ୍ରସନ୍ନ
ରସବତୀ ଦ୍ୱାର ପାଶୁ ଚଳବାର
ଭେଟ କରିବାକୁ ସ୍ୱାମୁର ବଣି । ୨
ଦେଖୁ ଏକା ଘୂରି ନୟନ
ଲାଜ ହାସ ଭ୍ରୂକୁ କୁଂଚନ
କେନ ବଦନ ହା ହା କି ସେ ଶୋଭନ
ଦେଖୁ କୁହା କୁହି ଧୀର ଗାରଣି । ୩
ପରି ବେଷଣ ବଡ ଚମତ୍କାର
ଯହିଁ ରମା ଉମା ବଧୂର
ହାରିଯିବ ସେହିକ୍ଷଣି ପୁରାତନ
କୁଟୁମ୍ବିନୀ ନିପୁଣତା ଉନ୍ନତ । ୪
ଅଶାନାନ୍ତରେ ଆଗମନ
ଦେଇ ପୋଛୁବାକୁ ବଦନ
ନିଜ ଚେଳାଞ୍ଚଳ ବଢ଼ାଇ ଦେବାର
ତ୍ରିଭୁବନ ଶୂନ୍ୟ ପ୍ରଣୟ ଗୀତ । ୫
ପଲଙ୍କରେ ପ୍ରିୟ ଅଂକରେ
ବସି ତାମ୍ବୁଲ ସେବନ କରେ
ଚାହିଁ ପ୍ରାଣନାଥ ମୁଖେ ଦେବା ଶୋଭା
ଆହା ସେ ସଂକଳ୍ପ କିଛି ମୂରତି । ୬
ଆସି ଆପଣାର ଆଳୀଙ୍କି
ଡାକି ବସାଇ ମଣୋହିକି
ଦାନ୍ତ ଅବଶିଷ୍ଟ ଅଶନକୁ ଜାତ
ହରଷ ଧରିବ କି ବସୁମତୀ । ୭
କେତେ ଦିନର ମନୋରଥ
ଆଜ ହୋଇଲା ଯେ ଭେ ସାର୍ଥ
ବୋଲୁ ଲଳିତା ହୃଦେ ରାଧା ଆଉଜି
ଲାଜେ ହସିବାର ଲଭନ ପୋତି । ୮

ଅବିଶ୍ରାନ୍ତ ପରମ ତତ୍ତ୍ୱ
ପରମାନନ୍ଦ ସାରସତ୍ତ୍ୱ
ନିତ୍ୟ ସନାତନ ସର୍ବଦା ନୂତନ
ବୃନ୍ଦାଟବୀ ପ୍ରାଣ ପ୍ରେମ ବସନ୍ତ । ୯
ଆଳୀ ସଙ୍ଗ ସ୍ୱାଦୁ ଭୋଜନେ
ଆଚମନ ତାମ୍ବୁଳାଶନେ
ଶ୍ୟାମ ସୁମୁଖରୁ ଶ୍ରୀମତୀ ଚଳନ୍ତି
ସ୍ୱ ସ୍ୱ କୁଞ୍ଜକୁ ସିବାର ସଖୀ ସଂହତି । ୧୦
ତା ଯାକ ଗୋପାଳ କୃଷ୍ଣର
କେବେ ହେବ ଦୃଷ୍ଟି ଗୋଚର
ଶ୍ରୀ ରୂପ ମଞ୍ଜରୀ ଦେବେ କୃପାକର
ସେ ଅବଶେଷ ଲଭି ହେବ ତୃପ୍ତ । ୧୧

—*—

## ରାଗ ପୁନ୍ନାଗ ବରାଡ଼ି—ମିଶ୍ରରୂପକ ତାଳ

(ଆହା କି ଗଳ୍ପରେ କି ସ୍ନେହ କେତେ ଦୂରକୁ—ବୃତ୍ତେ)

ପ୍ରାଣ ମିତଣୀରେ ଫିଟାଇ କହନ୍ତୁ ମଜା ।
ତୋତେ ମୋହନଙ୍କୁ ବନ୍ଦ କରିଥିଲୁ କୁଞ୍ଜେ କେଉଁ ସୁନ୍ଦର ରାଜା । ପଦ
ଚଳପାଙ୍ଗି ପ୍ରଚଳାକ ମୁକୁଟ କୁ ଭେଟ ହେଲୁ କେଉଁଠାରେ
କି ଲମ୍ପଟରୁ ତାଙ୍କ ଉତ୍ତରୀୟ ପୀତବସ୍ତ୍ର ବନ୍ଧିଛୁ ଅଙ୍ଗରେ । ୧
ଫୁଲ ତୋଳୁଥିଲୁ ପଲ୍ଲବ ଅଧର ଏବେ ଆଳୀ ହେନୋହରେ
କେ କହିଲୁ ଗଣ୍ଡ ମଣ୍ଡଳେ ତାମ୍ବୁଳ ବୋଳ ମକର ଉପରେ । ୨
ଲବ ମିଥିଲ ନୋହିଥିଲୁ ସଜାଡ଼ି ଥିବାର ସଜ ଯାବତ
ମଦ କୁଞ୍ଜର କରଙ୍କଜ ପରି ଏ ହୋଇଛୁ କି ଅସ୍ତବ୍ୟସ୍ତ । ୩
କଣୋଶି ମୁକୁଟ ମଣି ମୋ ମୁହଁକୁ ରହିଁକନା ସରିକରି
ଲାଗକୁ ଆସ ବିନ୍ଦୁ ବିନ୍ଦୁ ମୁଖରେ ଝରିଛୁ କି ଶ୍ରମବାରି । ୪
କୁଞ୍ଜ ଲତାକୁ ହସିଣ ଶ୍ରୀ ଲଳିତା ଭାଷନ୍ତି କେ କହିଲନ୍ତି
ଗୋପାଳ କୃଷ୍ଣ ଭଜେ ରାଧା ପଦାବ୍ଜେ କୁସୁମ ବ୍ୟଜନ ଘେନି । ୫

—*—

## ରାଗ ଭୈରବୀ—ମିଶ୍ର ଝୁମ୍ପତାଳ

ଛଳିଲ୍ କର ଘୁମୁଟରେ ପଡ଼ିଲି
ଛଢ ହେଲି ପଦ ତୋତେ ଲେଢ଼ିଲି । ପଦ ।

ଆଗେ ଗଲା ଇନ୍ଦୁଲେଖା — ପଛେ ରହିଲା ବିଶାଖା
ଏକାଲିକ ଜଳଧିରେ ବୁଡ଼ିଲି । ୧ ।

ତମ ଦମ ହେଲି ଛାତି — ଝସିଗଲା ଗୋ ମୋ ଧୃତି
କହିବାର ଧାରଣା ମୁଁ ଭୁଲିଲି । ୨ ।

ରୋମାଞ୍ଚିତ ହୋଇଗଲି — ଛୁଆଇଁ ଦେଇ ମୁରଲୀ
ହସି ଦନ୍ତେ ଦନ୍ତ ଚାପ ଉଢ଼ିଲି । ୩ ।

ଥର ଥର ପ୍ରାଣମିତ — ପାଣିକ କୋଉଙ୍କା କୃତ
କର କେତେଥର ଶିରେ ଯୋଡ଼ିଲି । ୪ ।

ଗୋପାଳକୃଷ୍ଣ ଭଣିଲ — ଦେଖି କୁଟିଳା ଆସିଲା
ବୋଲି ଗଲେ ଏଣିକି କାନ୍ଦୁଡ଼ିଲି । ୫ ।



## ସ୍ୱାନୁଭୂତି

## ରାଗ ଝିଙ୍କୋଟୀ—ତାଳ ମିଶ୍ରରୂପ

( ମୋହନ ନୟନାଞ୍ଜନ ନାଚଲାରେ—ବୃତ୍ତେ )

ମାନସରୁ ପିବକ ସେ ଭାବନା । ପଦ ।

ବ୍ରଜେନ୍ଦ୍ର ଅଗେ କଣୋଖ । ଉଶ୍ୱାଦେବାର ମାଟେଖ
ମଧ୍ୟାହ୍ନରେ ମାଧବୀ ମଣ୍ଡପର ଘଟନା । ୧ ।

ଦରବୃତ ଉପବଣେ । ଚନ୍ଦ୍ରାତପ ଆବରଣେ
ପଦାଙ୍ଗୁଳି କି ଘସି ବୁଲିର ବଞ୍ଚନା । ୨ ।

ସୁମନ ପିନ୍ଧାଇବାକୁ । ପ୍ରିୟପାଶୁ ଶ୍ରୀମୁଖକୁ
ଲୁହିଁ ଲକେ ବଂଶୀଲର ଦଶନେ ରଦନା । ୩ ।

କଉସ୍ତୁଭ ସୀମନ୍ତକ । ଯୋଗ ହେଉ ଦୁଇଯାକ
ଯେ ବିଲୋକନ୍ତି ସେ ଶୋଭା ଜାଣିବ ସେ ସିନା । ୪ ।
ସଦନା ନନ୍ଦନା କୁଞ୍ଜ କାନ୍ତ ପାଖୁଡ଼ାର ସେଜ
ଗୋପାଳ କୃଷ୍ଣ ସଧୀରେ କଲାର ରଚନା । ୫ ।



## ରାଗମୋହନା—ରୂପକ ତାଳ

ଯିବ ପରା ପରାଣ ସଙ୍ଗିନି ଉଠିଆରେ
ବଣୁଥିବ ଶ୍ୟାମ ବାମ ପାଣ ପଡ଼ିଆରେ । ପଦ ।
ବ୍ରଜ ହାଟ ବାଟ ହେଲଣି ନସ୍ପଟ
ଜଗିଥିବେ ବ୍ରଜବଧୂ ନିକୁଞ୍ଜ ଦୁଆରେ । ୧ ।
ପବନେ ପଲ୍ଲବ ଚଳିଲେ ମାଧବ
ପଥ ଝୁହୁଁଛନ୍ତି ଧରି କେଶର ପୁଆରେ । ୨ ।
ଆଜ ହେବା ସଜ ପରିଧ ଚଉଜ
ନହୁଁଥିଲ ହେବେ ହୋଇ ପଦ ଚଳିଆରେ । ୩ ।
ଅନା ଊଷଧୀଶ ହେଲାନ ପ୍ରକାଶ
ଶୁଣୁନାହୁଁ ଅଳନ୍ତି କୁଞ୍ଜେ ଏକୁଟିଆ ରେ । ୪ ।
ଯାମ ହେଲା ଆସି ଛପାଉଛି ବସି
ଭାଜୁ ଭାଜୁ ଡାକିବ ତ କୁକ୍‌କୁଟ ଲୁଆରେ । ୫ ।
ଆଲୀ କର ଧରି ବୁହୁଁ ଶ୍ରୀ କଶୋଷା
ଗୋପାଳକୃଷ୍ଣ ଭାଷେ ହେଟି ସେ ବଲ୍ଲିସ୍ପାରେ । ୬ ।



## ରାଗ କୀରବାଣୀ—ରୂପକ ତାଳ

( ଶ୍ୟାମ ପ୍ରୀତିରେ ରସାଇ—ବୃତ୍ତେ )

ଏତେ ଦୁଃଖ କାହିଁକ ? ପ୍ରାଣ ସଙ୍ଗିନୀ ମୋ ଘୁରୁ ପାଇଁକ । ପଦ ।
ବ୍ରଜରେ ସଜପଙ୍କଜ ମୁଖୀ ବ୍ରଜ ନାହାନ୍ତି ମୋ ତର୍ତ୍ତି ବଳକ
ମାରଜବନ୍ଧୁଜା ତୀର କୁଞ୍ଜବନ ଦୂରରୁ ଦିଶିଗଲା କ ? ୧ ।
ଅଳକାବୃତ ନିଟିଳ ତିଳକକୁ ଗୋରଚନା ନ ମିଳିଲା କ
କଳାପି କଳାପ ଅପୂର୍ବ ହେଲନା ବଂଶୀ କେ ଘେନିଗଲା କ ? ୨
ଶାଖୋଟ କାନନ ସନ୍ଧ୍ୟା ଘଡ଼ୁ । ଆଜ ଆସିନାହିଁ ପରାଲୁକ
ପରାଣର ସମ ଚନ୍ଦ୍ରାବଳୀ ପ୍ରେମ ଏଡ଼େ କେବଣି ଭାଜିଗଲା କ । ୩ ।
ଗାଇଣିକ ମାପମଞ୍ଜୁଶ୍ରୀ କୃଷ୍ଣଲୀଳାମାଳା ହେଲେ କେ ନ ଦେଲେ କ
ନଟବର ବେଶ ଧେନୁ ପଞ୍ଚଲକ୍ଷ୍ୟ ମନରେ ନ ପଡ଼ିଲା କି ? ୪ ।
ବ୍ରଜରେ ଅଚ୍ଛୁତ ଆଜ କେବଣେ ଲୋକାଶ୍ରିତ ହୋଇ ଭାଣିଗଲା କ
କେବେ କେତେବେଳେ ଅରେକେଉଁଠାରେଭଲୋକିଲେ ନୋହିଲକି ୫
କୋଟିଏ କୋଟି ମଦନ ନମିଞ୍ଜନ ହୋଇବେ ପଦ ସରିକ
ରମାଦ୍ଧି ଅଖିଳ ରମଣୀ ଦେଖିଲେ ଲୋଭାଇବେ ଶ୍ରୀମୂର୍ତ୍ତିକ । ୬ ।
ଆସି ଲଳିତା ଭାଷିଲେ ବ୍ରଜ ଦୁଃଖ ଶୁଣିବାକୁ ଆଉ ଥିଲାକ
କୋଲୁ ଗୋପାଳକୃଷ୍ଣ ଫେଣ୍ଟ ଧରିଲା ପଦ ନୂପୁର ଦୁହିଁକ । ୭ ।

—*—

## ରାଗ କାମୋଦ—ମିଶ୍ରରୂପ—ତାଳ

( ନାଗରବର ପ୍ରେମ ନିରେଖି କର—ବୃତ୍ତେ )

କେତେ କହିଲେ ତୋତେ କିଶୋରୀ ମଣି
ପ୍ରତେ ନକର ବୋଇଲୁ ଯେ କେ ଜାଣି ।ପଦ।
ସର୍ବଦା ସୁପ୍ରସନ୍ନ ସଜ କଞ୍ଜ ଲପନ
ଶୁଖାଇ ନୟନରୁ ପୋଛିଲୁ ପାଣି ।୧
ସୁନ୍ଦର ପୁରନ୍ଦର ମୁକୁଟ ଅଲଙ୍କାର
ହେଲେ କି ସବେ ସତ ନାହିଁ ତା ବାଣୀ ।୨

ଅହିଶିଖାସୁ ବନ୍ଧଗନ୍ଧ   ଧୀର ଶୀଳ ସୁସ୍ନିଗ୍ଧ
ହୋଇ କି ହେବ ଜାର-ବର ଅଗ୍ରଣୀ । ୩
ସାଜ ସେ ପରସଙ୍ଗ   ବୋଲି ଦମ୍ଭରେ ଅଙ୍ଗ
ଭଙ୍ଗି ହେଲୁ ନାହିଁ କି ଜ୍ୟୋସ୍ନାକୁ ଆଣି । ୪ ।
ମନକୁ ନ ଆସିଲେ   ଅସାର ଭଲହେଲେ
ବୋଲି ଉଠିଗଲୁ ରେ ପ୍ରାଣମିତଣି । ୫ ।
ଆସ ଆସ ଉଚ୍ଛୁର   ହେଲାଣି ଅଭିସାର
ବାଳ ଆଗ ସଜାଡ଼ ଦେବା ମୁଁ ବେଣୀ ୬ ।
ହେଲାନ ହେଲାକଥା   ହୋଇବ କି ଅନ୍ୟଥା
ଗୋପାଳକୃଷ୍ଣ ଶ୍ରୀ ଲଳିତାଙ୍କୁ ଭଣି । ୭ ।



## ରାଗ ଖମାଚ—ରୂପକ ତାଳ

ମୋହନ ପ୍ରସଙ୍ଗ ସଙ୍ଗିନ ରେ ଆଜ କହନା
ଅଭିଲହ ଅନଳରେ ସମିଧ ଦେଇ ଦହନା । ପଦ ।
ପୁଣି ମୁଁ ଆଶା କରିବ   ବୋଲି କି କହୁଛୁ ସବ
ଶୁଖିଗଲା ଅଗାଧ ତରଙ୍ଗି-ସୁଧା ପ୍ରବାହନା । ୧ ।
ଶାଶୁ ନଣନ୍ଦ ଭର୍ତ୍ସନା   ସ୍ୱବନ୍ଧୁ ଜନ ତର୍ଜନା
କେତେ ସୁହାଇବ ତନୁ ଶିଳା ମୁଁ ମହାଲୁହ ନା । ୨ ।
କୁମୁଦିନୀ ଗୋପିବ୍ରଜ   ବ୍ରଜବଧୂ ସେ ସହଜ
ସେ କି ତୃଷିତ ଚାତକ ମୁଁ ନବ ବାରିବାହନା । ୩ ।
ଲୁଚିଲ ଜାତି ନାଶିଲି   ଅଲଂଘ୍ୟ ସୀମା ଲଂଘିଲି
ବାସ ପ୍ରସାରି ମାଗୁଛି ସରି ଗୋ ମାସେ ସ୍ନେହନା । ୪ ।
ଗୋପାଳକୃଷ୍ଣ ଭାଷିତ   ଶ୍ୟାମ ଲଳିତା ଏକାନ୍ତ
ହେଉଛନ୍ତି ପ୍ରାଙ୍ଗଣରେ ମାନସରେ ସମ୍ବେଦନା । ୫ ।



## ରାଗ ଝଂକୋଟି—ମିଶ୍ରରୂପ ତାଳ

( ମୋହନ ନୟନାଞ୍ଚଳ ନାଚନ୍ତ—ବୃତ୍ତେ )

କହ ସହଚରୀ କରନାହିଁ କ । ଘୋଷା ।

ଉଷ୍ଣ ଶ୍ୱାସରୁ ଅଧର ରଙ୍ଗ ହୋଇଲା ବଦୁର

ପୋଡମଥା ନେଲୁ ମୁଁ ଚେ ଢାବକ । ୧ ।

ଧଗ ଭୂଷାର ସେବକ ବୋଲ ମୁଁ ଯେ ଯଡ଼େ ଡ଼ାକ

କଣି କ୍ରୁଦ୍ଧଲୋକ ଚେଣି ପାରକ । ୨ ।

କଣା ଜନରେ ଦ୍ୱେଷକୁ କଲେ କ ଲଭ ଯଶକୁ

ଚରକଦ୍ୟା ଥରେ ନଯତ୍ନରକ । ୩ ।

ଯେ ପିନା ଦେଲା ବଶୋଣ ପାଗୋରବ ମୁଁ କ କର

ମୋ ନାମ ପଡ଼ାଇବାର ପାଶ୍ୱକ । ୪ ।

କଲଚ ଯେବେ ଦୋଷକୁ ଅଛୁକିସ ପାଂଚିବାକୁ

ମାତ୍ର ଅଙ୍ଗେ କରକ କଂଟାଶ୍ୱକି । ୫ ।

କନ୍ଧିବୁ ଏଦ୍ଧ ଉଦନ୍ତ ଥାଉ ନୟନାନ୍ତ କୂନ୍ତ

ସମର୍ପିଲୁ କିମ୍ବା ଶମ୍ବରବୁକି । ୬ ।

ଗୋପାଳକୃଷ୍ଣ କହଇ ମଣ୍ଡିରେ ତା ବନା ହୋଇ

କେ ଶୁଣିବା ଅଛୁ ମୋ ଗୁହାରକି । ୭ ।



## ରାଗ ମୁଖାରି—ମିଶ୍ରଚାପତାଳ

କୋପାଇଲା ନଯ ଯେ କ ପାଇଲ ମା ।ପଦା

ଆନ ମାନଙ୍କ ପଶ ରାଧାକୁଞ୍ଜ ବହାଶ୍ୱ

ପୀରଭ ବୋଲ ପଶ ମଣିଲାରେ,

ପରମାନନ୍ଦ ରୂପରୁ ଜାତ ପରମ ପ୍ରେମ

ସୁଧାବ୍ଧି ପଶେ ଭୃଣ ଜାଳଲାରେ ।୧

ଶୁଣି ସା ନାମଲପି ନୟନେ ଲୁହବ୍ୟାପି

ସାର ହିବଳୀ ବୋଳ ହୋଇଲରେ,

ତା ଆଳୀ ଅଳନ୍ଦର ତଳେ ମାଳମଣିର
ଯଷ୍ଟି ପଶ ମୋହନ ଗଡ଼ିଲରେ ।୨
ପୂଟ ପୁରଟ ପଶ ଉଚ୍ଛୁରିତ ଆଭାର
ନରଭ-ଗନ୍ଧ-ସ୍ପନ୍ଦ ବଢ଼ିଲା ରେ,
କୂଟ କପଟ ଯାକ ସରସ ସୁବିବେକ
ପଣ କ୍ଷଣକେ ଜଣା ପଡ଼ିଲାରେ ।୩
ଦେଖିବ ଅସିଥାଉ ଆଉ ଘଡ଼ିଏ ଯାଉ
ସଖୀବସାନେ ହଂସଗତା ଚଳାରେ,
କିଶୋର ଚନ୍ଦ୍ରମାର ବୃଷଭାନୁ କୁମାର
ଅପଡ଼ ହୋଇବାର ତା ଡୋଳାରେ ।୪
ଗୋପାଳକୃଷ୍ଣ ଭଣେ ଲଳିତା ଶ୍ରୁତି ପାଶେ
କି କହିଲେଟି ହେଲେ ହସିଲାରେ,
ବଢ଼ାଇ ଫୁଲଡୋଳା ବଇଜୟନ୍ତୀ ମାଳା
ଗୁନ୍ଥିବାର ଉଦ୍ୟମ ଲଗିଲାରେ ।୫



## ରାଗ ନାଟ କୁରଙ୍ଗୀ—ରୂପକତାଳ

( ସଖି ଏଇଟି ପଶୁପି ଲମ୍ପଟିଆ—ବୃତ୍ତେ )

ଦୁଃଖ ସିନ୍ଧୁରେ କାନ୍ଧୁ ଯାଉଛି ରେ ଭାସି ।ପଦ।
କହ୍ନାଇ ଶିରୀଷ ଦେହା ପଙ୍କେ ବୋଲବୁଟି ଆହା
ମଦନ କୁମ୍ଭୀର ଦେଲେ ଗ୍ରାସି ।୧
ନିଜକରେ ଉପୁଡ଼ାଇ ବଣନାରେ ଫୋପଡ଼ାଇ
ପାଳି ପ୍ରେମ ଅମର ପଲାଶୀ ।୨
ତୋର କୋଲି ଏକଗତେ ନଚିନ୍ତି ବେକ ଅଛିମୋତେ
ନନ୍ଦା ଫଡ଼ସିବୁ ପିକଭାଷି ।୩
ଖାବସିବାର ଆଖର ହେଲାନି ରସିକାବର
ଦଶା ମୁଖଶଶୀ ଅଟରେ ଆସି ।୪
ଗୋପାଳକୃଷ୍ଣ ନା ଲୁକା- ନାରେ ତୋ କୃପାନଉକା
ପକାଇ ଉଦ୍ଧର ଦରହାସି ।୫



## ରାଗ ସାବେରୀ—ମିଶ୍ର ରୂପତାଳ

( ଜଣା ପଡ଼ିଲାରେ ବଣାମୃଗାକ୍ଷି ତୋ ଛଳ—ବୃତ୍ତେ )

ଆହା କି ଗଳ୍ପରେ କି ସ୍ୱପ୍ନହ କେତେ ଦୂରକୁ
ଦାରୁଣ ଦଇବ ବଶେ ଅଦୃଷ୍ଟବ ହେଲେ ଥରେ ବୁହିଁବାକୁ ।ପଦ।
ଗ୍ରୀଷମ ଋତୁ ଦିବସ ଦ୍ୱିଯାମରେ ଦ୍ୱିମଣି ତପ୍ତ କିରଣେ
ପଦ ତଳେ ରଖି ପଣନ୍ତ ମୋ ଖାଇ ବଳେଲୁ ଥାଉ ପ୍ରାଙ୍ଗଣେ ।୧
ଠାର ଦୃଷ୍ଟିକ ପଶ୍ଚରୁ ମୋ ସମସ୍ତ ଦେଖିନାହିଁ ସେ ଭାଷିଲେ
ଆଣି ନେବେ ପାଣି ଯାହା ହେଉଥାଉ କେ ଜାଣିବ ତା କହିଲେ ।୨
ବଚ୍ଛେଦ ନୋହିବାକୁ ଯେତେ ବରତ କରୁଛୁ ସୁଜାଣମଣି
ଥାଉ ଆଉ ନାସ୍ତି ପ୍ରତି ପାଳିବାର କର୍ଣ୍ଣରେ ନଥିବ ଶୁଣି ।୩
ନତ ପୁରୁଷ ନାସ୍ତି ଋଷି ବସିବା ପ୍ରସଙ୍ଗ ଯବ ପଡ଼ଇ
ଧଇର୍ଯ୍ୟ କେମନ୍ତ ଧରନ୍ତ ଗୋ କୋଲି ଆଳଙ୍କ ପଶ୍ଚରୁ ଥାଇ ।୪
ମାରଜକୁ ଯବ ନଶିରେ ବଲୋକେ ମାର ନୟନୁ ବୁହାଇ
ଶତ୍ରୁକୁ ତୋ ଦଣ୍ଡ ନୋହୁ ବୋଲି ଗାଏ ଗୋପାଳକୃଷ୍ଣ ଚୁମ୍ବଇ ।

—*—

## ଶ୍ରୀକୃଷ୍ଣ ଉକ୍ତି

ରାଗ—ଯୁଖାବତୀ—ଆଦିତାଳ

( କି କହିବ ସେ ଘନ ଜଘନା ବେଦନା—ବୃତ୍ତେ )

କହରେ ସଙ୍ଗିନ କେ ସେ ନୂଆଁ ଲଳନା, ମୋତେ
କାନ୍ତି କୁଳ ଦେବତା କି କରି କଳନା । ପଦ
ଦଶ ଦଶ କାଞ୍ଚନାଭ ଦଶୁଛି ଏ କି ଦୁର୍ଲ୍ଲଭ
ଦଶାର୍ଦ୍ଧଶର କରୁଛି ଏ କି ରଚନା ।୧
ଶୁଣ ନୂପୁର ସୁରତ ମଣି ଭୂଷାର ସିଂଜିତ
ଭୁଜର ଲକ୍ଷୀ ପରାଏ କର ବରନା । ୨
ପରମ ଧାମର ଅଦ୍ଭୁତ କିବା ମୋ ନେଷ ସମ୍ପତ୍ତି
ମୂର୍ତ୍ତିବନ୍ତ ହୋଇ ବଳସୃଷ୍ଟ କ-ଅନା । ୩

ବୃନ୍ଦାରଣ୍ୟ ଜନଙ୍କର  କୋଟିଏ କୋଟି ଜନ୍ମର
ଭାଗ୍ୟରାଶି ଫଳ ହୋଇଛନ୍ତି ମୋ ସ୍ୱଜନା । ୪
ଗୋପାଳକୃଷ୍ଣ ଭୂଷଣ  ଯେ ନୂତନ ଉଣଉଣ
ରହି ଅଳସ ବଦନରେ ଚନ୍ଦ୍ରିକ ସିନା । ୫



## ଗ୍ରାମ୍ୟ ରସ

ରାଗ ଝିଂଝୋଟୀ—ମିଶ୍ର ରୂପତାଳ

ବନ୍ଧୁ ନାରୀ କଲ ମୋତେ କାହିଁ ପାଇଁ ଗଢ଼ିଲ ରେ । ପଦ ।
ବଧୂ ନିଶି ମଧୁକାଳ  ବହୁତ ଦକ୍ଷିଣା ନିଳ
ଏକାକିନୀ ନାରୀ ନାଶ ଦଶା ଆସି ପଡ଼ିଲା ରେ । ୧
ଏ ବୟସ ଅକାରଣ  ଗଲାରେ ସଜନ ଜାଣ
ବନର ମାଳତୀ ପରି ବନେ ଫୁଟି ଝଡ଼ିଲାରେ । ୨
ନିତଦିନ ଭଙ୍ଗି ସନ୍ଧି  ଖାନ୍ତୁ ଗଲା କାଳ ବହି
ମନର କଥା ମନରେ ରହି ଦେହ ସଢ଼ିଲାରେ । ୩
ମୁଁ ହେଲି ପର ଆୟତ  ସ୍ୱାଧୀନ ନୋହିଲା ଚିତ୍ତ
ମଦନ ହନ୍ତକ ଶୋକ ଅନୁବ୍ରତେ ପୀଡ଼ିଲା ରେ । ୪
ଗୋପାଳକୃଷ୍ଣଙ୍କୁ ବେଳେ  ଦେଖିବି ବୋଇଲେ ଡୋଳେ
କୁଳ ଭୟ ଲାଜ କ୍ଷଣେ ଚିତ୍ତରୁ ନ ଛାଡ଼ିଲା ରେ । ୫



## ରାଗ ମାୟାମାଳବ ଗୌଡ଼ା—ମିଶ୍ର ରୂପତାଳ

( ଏକ ପରମାଦ ଆସି ପଡ଼ିଲା ମା—ବୃତ୍ତେ )

ନୂଆ ସ୍ନେହେ ଯା ମୋ ଗୁଣ ଗୁଣି କରେ
କି ଛାଡ଼ି ଅଇଲି ମୁହିଁ ଏଣିକି ରେ । ପଦ ।
ନଆସେ ନିଦ୍ରା ପଲକେ  ମୋ ହୃଦ ବନା ପଲଙ୍କେ
କରିଥିବ ଶଯ୍ୟା ସେ ଧରଣୀକି ରେ । ୧
ଲୋଟୁଥିବ କାଶ ଶେଷ  ଫିଟୁ ଖୋସୁ ଖୋସୁ କେଶ
ଆସି ଲୁହୁଁଥିବ ମୋ ସରଣୀକି ରେ । ୨

ଚିନ୍ତି ମୋତେ ମନେ ମନ          ଚକାଇ ନିଶ୍ୱାସ ଧନ
ପୋଛୁଥିବ ପଦ୍ମ ନେତ୍ର ପାଣିକ ରେ । ୩
କି ଧରିବ ଧୃତି ବାଳା          ସହଜେ ପ୍ରୀତି ବଇଳା
ମୁଁ ବସୁଥିବ ବୃନ୍ଦେଁଲେ ସେଣିକ ରେ । ୪
ଅବଧି ଦିନ ଚଉଠାଇ          ଭକ୍ତି ନିକଟକୁ ଯାଇ
ଗଣୁଥିବ ପଦ୍ମ ଗାର ଶ୍ରେଣୀକ ରେ । ୫
ଗୋପାଳକୃଷ୍ଣ କହଇ          ବିଦେଶୁ ମୁଁ ଫିବାପାଇଁ
ସହିଥିବ ଚମ୍ପା ଶୂଳ ପାଣିକ ରେ । ୬



## ରାଗ ଖମାଚ—ଆଦିତାଳ

( ନବରଙ୍ଗରେ ଶୁଭଙ୍ଗି ଭରଣ ହୁଅ ଯାହା—ବୁଢେ )

ମୋ ଦିନ ଯିବପରି ଏକା ଏହିପରି ଯେ
ପୁଣି ପଦ ସେବା ମୋତେ ଦେବେ କି କିଶୋରୀ ଯେ ?
ବୃନ୍ଦାରଣ୍ୟରାଜ୍ୟ ରାଣୀ କୀର୍ତ୍ତିଦା କୁମାରୀ
ପରାନନ୍ଦ ଶ୍ରୀ ମୂର୍ତ୍ତିଙ୍କି ସୁନ୍ଦରୁ ସୁନ୍ଦରି ଯେ । ୧
ଆହା ଶ୍ରୀରାଧିକେ ହା ସ୍ୱାମିନି ରାସେଶ୍ୱରି ।
ବୋଲି ବୋଲି ଯାଉନାହିଁ ଜୀବନ କାହାରି ଯେ । ୨
ବିନୋଦିନୀ ଶୋଭି ପ୍ରିୟ ହୃଦେ ଅପସରି
ଦିଶେ ଦିଶେ ଦିଶି ହୃଦ ହେଉଛି ବିଦାରି ଯେ । ୩
ଆହା କରୁଣା ବାରିଧି ନିକୁଂଜ ବିହାରି ହେ
ହା କଳ୍ପଲତା ଲଳିତେ ଶ୍ରୀ ରୂପମଞ୍ଜରି ଯେ । ୪
ଜଗତେ ଚିହ୍ନିଲେ ନ ବୋଲି ଯାହା କିଂକରୀ
ଜନ୍ମିବ ସ୍ୱାମିନି ଆଉ କାହାକୁ ଗୁହାରି ଯେ । ୫
ଗୋପାଳ କୃଷ୍ଣକୁ ଚୂର୍ଣ୍ଣ ମସ୍ତକରେ ଠାରି
ଡାକିଲେ ଭଜି ହେବ କି ଶ୍ରୀମୁଖରେ ଗୁହାରି ଯେ । ୬



## ସାଧକର ଦେହୋତ୍ତର ଲାଳସା

### ରାଗ ଆନନ୍ଦ ଭୈରବୀ—ଆଦିତାଳ

( ଅଳି ! କେଶର କୁଞ୍ଜରୁ—ବୃନ୍ଦେ )

କେବେ ବେଳକୁ ଶ୍ରୀପଦାବ୍ଜ ଦର୍ଶିବ ସେ ।
ଝଙ୍କ ଅଳି ଯାଇ ସୁଖେ ବସିବ ସେ ।ପଦ।

ଶ୍ରୀ ଗୋବନ୍ଦ ବକ୍ଷସ୍ଥଳ　　ସଂଯୋଗର ପରିମଳ
ତହିଁ ଲଭି ଲୋଭେ ମଜ୍ଜି ରହିବ ସେ ।୧

ଗୋବିନ୍ଦ ନୟନ ଭୃଙ୍ଗ　　ସଙ୍ଗତରେ କରିରଙ୍ଗ
ପ୍ରେମ ମକରନ୍ଦ କ୍ଷୋଦ ପିଇବ ସେ ।୨

ସୂକ୍ଷ୍ମ ଧୂଳି ପରାଗରେ　　ଲୋଟିବ ଅନୁରାଗରେ
ସୁରମ୍ୟ ମଧୁର ନାଦ କରିବ ସେ ।୩

ବ୍ରଜ ନବ ଯୁବା କର　　ଶ୍ରୀ କରେ ରଚ କଳର
ଯାବକ ପରିଧି ଯାକ ବୁଲିବ ସେ । ୪ ।

ସୌଭାଗ୍ୟ ରେଖାଙ୍କିତାଙ୍କ　　ଚିହ୍ନିବ କରି ଦର୍ଶନ
ଭାବ ସୁଧା ବାରିଧିରେ ଭାସିବସେ । ୫ ।

ଅଶୋକ କଳିକା ବଳ　　ସୁସ୍ନିଗ୍ଧ କୋମଳାଙ୍ଗୁଳି
ବିକସିବ ବୋଲି ଆଶା କରିବ ସେ । ୬ ।

ଊର୍ଦ୍ଧ୍ୱରେ କେତକୀ କାନ୍ତି　　ତଳେ କୋକନଦ ଦ୍ୟୁତି
ବିଲୋକି ଅତି ପ୍ରମୋଦ ମାତିବ ସେ । ୭ ।

ସୁମନ କମ ରହର　　ଭୂଷାରେ ନୂପୁରାଦିର
ପୁଷ୍ପ ଭ୍ରମେ ଉଡ଼ିତ ସ୍ପରଶିବ ସେ । ୯ ।

ଶ୍ରୀ ରୂପ ମଞ୍ଜରୀ କର　　ଲାଳିତ ମଧୁର ତର
ପରମାନନ୍ଦ ଆସ୍ୱାଦ ପାଇବ ସେ । ୧୦ ।

ଗୋପାଳକୃଷ୍ଣ ଏ ଭାଗ୍ୟ　　ଭୋଗକୁ ହୋଇବ ଯୋଗ୍ୟ
ଶ୍ରୀ ସ୍ୱାମିନୀ ଦୟା ଦୃଷ୍ଟି ପଡ଼ିବ ସେ । ୧୧ ।

—*—*--

## ରାଗ ଭୈରବୀ—ରୂପକ ତାଳ

( ହୋଇଥାରେ କେଶ କୁଞ୍ଜକୁ ଯିବା ପରା—ବୃତ୍ତେ )

ଦେଖିଲେ ପରାଣ ଯିବ ଛାଡ଼ି ମୋହନ । ପଦ ।

ବାସ ବରଜ ହେଲେ କହୁଛି    କେଶ ଖସିଲା ଖୋସୁଛି
କେଶୀ ମଥନ ଜୁହାରୁଛି କେ ସେଟି ଏଣିକି ଆସୁଛି । ୧ ।
ସାହସ ଏତେ କେ କରିବ    ଅଧରେ ନାସା ଧରିବ
ସହଚରୀ ଅଛୁ ଜାଣିବ ରହ ମୋ ସଂସାର ସରିବ । ୨ ।
ଜଟିଳା ଦେବଟି କଷଣ    ନାଟି ଏବେ ମୋ ବାଣ
କୋଟିବାର କୃଷ୍ଣ ଶରଣ ହେଟି ଜନ ଭୂଷଣ ଶୁଣ । ୩ ।
ଧନକର ପୂଜାର ଫୁଲ    ବନଜାକ୍ଷ ସ୍ପରଶିଲ
ବନ ଯାକ ବୁଲି ଅଇଲ ସ୍ନାନ କରିଥିଲ ଛୁଇଁଲ । ୪ ।
କେଳିକୁଞ୍ଜି ଫୁଲ ସେଜେ    କଲେ ରାଧା କୃଷ୍ଣ ବଜେ
ଶୁଣି ଗୋପାଳକୃଷ୍ଣ ଭଜେ ମିଳି ସେ ଚରଣ ସରୋଜେ । ୫ ।



## ରାଗ ଝିଂଜୋଟୀ—ତ୍ରିପୁଟ ଏକତାଳ

ଗୁଣ୍ଠି ଚଳନ୍ତି ଭଙ୍ଗୀରେ ଛଇଲା ଅଳସ ଭଙ୍ଗିରେ । ପଦ ।

ଚମ୍ପାକୃତି କରି ଭୁଜ ଲତିକା    ବୋଲି ଉର୍ଦ୍ଧ୍ୱକୁ ସେ ନବରସିକା
ମଦନ ମୁଠାରୁ ଫିଟିଲା ବାଣଛି ପରି କଟାକ୍ଷ ଦେଲା ଫିଙ୍ଗିରେ । ୧ ।
ହୋଇଲା କ୍ଷଣି ଏକା ବୁରିଆଖି    ଚେଲାଞ୍ଚଳ ଗଣ୍ଡ ପାଶରେ ରଖି
ଜର ଜର ହୋଇ ହରଷ ଲାଜରେ ନଚାଇ ଭ୍ରୂଲତା ଭୁଜଙ୍ଗୀରେ । ୨ ।
ଡାକିଲା ସା ଶ୍ରୁତି ସୀମାରେ ଡୋଳା    ଚନ୍ଦ୍ରମଣ୍ଡଳକୁ ଇନ୍ଦୀବର ମାଳା
ଚପଳା ଚଳିଲା ପରି ଖସି ଆସି ହେଲା ମୋ ହୃଦୟ ସଙ୍ଗୀରେ । ୩ ।
ଲାବଣ୍ୟ ଲତାରୁ ସୁନା ନଳିନ    ବୁଲିଗଲା ପରି ବାଜ ପବନ
ଦଶିଲା ମୁଖ ପାଲଟାଇ ପଙ୍କଜକୁ ହସି ହସି ରସରଙ୍ଗୀରେ । ୪ ।
ତର୍ଜ୍ଜନୀ ଚିବୁକ ମଧ୍ୟରେ ରଖି    ଘୁମାଇଲା ପରି ମୋଦରେ ଆଖି
ମେଲାଣି ମାଗିଲା ଗୋପାଳ କୃଷ୍ଣଙ୍କୁ ଆଳୀ ଚକ୍ଷରେ ଶୋଭାଙ୍ଗିରେ । ୫ ।



## ଶଙ୍କରା—ତାଳ ମିଶ୍ରରୂପ

( ମୁହିଁ । ମୁହିଁ କିଶୋର ଚନ୍ଦ୍ରମାଙ୍କର ମୋର—ବୃନ୍ଦେ )

କେତେ ପଣ ଡ଼ାକିଲେ କାହିଁକି ବୋଲି ବେଖେଳ
ଆଜ ସଖିକି ଶୁଣା ଗଲା ନାହିଁ ଯେ । ପଦ ।
ଶ୍ରୀ ବ୍ରଜେନ୍ଦ୍ର କୁମାର ସାଧକ ଲେଖିବାର
ପଦାବ୍ଜର କଙ୍କଣଜନ ମୁହିଁ ଯେ । ୧ ।
ଚିଦ୍‌ଘନ ରୂପିଣୀ ପରମ ଠାକୁରାଣୀ
ତୋ ପ୍ରଭୁ ବୋଲି ଗୁରୁ ଦେଲେ କହି ଯେ । ୨ ।
ଶଶୀ ପରି କଳଙ୍କୀ ସ୍ୱାମିନୀ ହୋଇବେ କି
ଚରଣେ ଚନ୍ଦ୍ରପରି ମିଳି ରହି ଯେ । ୩ ।
ମଲୟ ପୀୟୂଷର ବଚନ ଶ୍ରୀ ମୁଖର
ଶୁଭ୍ର ଲଭିବ ତାପାଦ କରହି ଯେ । ୪ ।
ଦସ୍ୟାକୃତି ପଣ ଶନ୍ତ ପ୍ରଭୁ ଆଶାରେ ନତ
ଗୋପାଳ କୃଷ୍ଣ ଅଶ୍ରୁ ଗୋଟିଏ କହି ଯେ । ୫ ।



## ରାଗ ମାଧୁମାଳବ ଗୌଡ଼ା—ମିଶ୍ରରୂପତାଳ

କେବଣ ବରଷ୍ଟା । ବାଳା ବଞ୍ଚେଇ ବଳହି
ସନ୍ତାପରେ ଶୀର୍ଣ୍ଣ ହୋଇକରେ ଚନ୍ଦ୍ରା ଅରବାହେ ରହି । ୧
ଏ ମଧୁ ନଶିକ ଶୁଭ୍ର ସଂପୂର୍ଣ୍ଣ ଶଶୀକ
କି ବଢ଼ୁଥିବ କି ଗୁଡ଼ ଅଇଲ ପୀୟୂଷଦାୟୀ କି । ୨
ଗଜ ଗମନାକ ରଖିଥିବ କାମ ନକ
ଯାଇ ଏଥିରୁ ମୁଁ ଆଜ କି ସର୍ବ୍ବ ଦୁଃଖ ଶମନାକ । ୩
ଦେଖି ନଆଳୀକ ଯାଅ ମଧୁପ ଆଳୀକ
କି ପଢ଼ୁଥିବ ଲହୁଲ ବୟସୀ ଅନାଇ ଆଳୀକ । ୪
ମୋ ଦୁଃଖୀ ଦରବ ଶୁଣି ବନପ୍ରିୟ ରବ
ବରଜବନ ମନକୁ ମଦନକୁ ଜଣିବା ଗରବ । ୫

ଏ ମନ୍ଦ ପବନ                    ନଷ୍ଟେ ସେଜନର ଜୀବନ
ପଣତେ ଶରଣ ପଶି ପୋଛୁଥିଲ ନୟନରୁ ଜଳ । ୬
ଥିବ କି ରସାରେ                    ତାହାର ସୁରସାରେ
ବୋଲେ ଗୋପାଳକୃଷ୍ଣ ବନ୍ଧୁ ଭାଙ୍ଗିଲୁ କେଉଁ ଭରସାରେ । ୭



## ରାଗ ଝଂକୋଟି—ତାଳ ମିଶ୍ରଚାପ

( କୃଷ୍ଣ ପଦ ଚିହ୍ନ ଦେଖ ଗୋ—ବୃତ୍ତେ )

ଅନୁଗତ କଲ୍ପ ଫଳ ସୁଶୀଳା ଏତିକି ରେ । ପଦ
ଆପଣା ଜନକୁ ଦୂର                    କରିବାର ଅବେଗର
ଦୁଃଖ କଲେ ହେଲେ ତା ମୁଖକୁ ନ ଚାହିଁ କିରେ । ୧
ଦେଇ ଅଧରୁ ପୀୟୂଷ                    ପୋଷି ଯାକୁ ସମାଇଶ
ଜାଣି ସେ ନଜାଣି ଦୋଷ କଲେ ନ ସହ୍ନି କି ରେ । ୨
ପ୍ରାଣ ଭର ଯେ ଯାହାର                    ଭଷିଲେ ସେ ଯୋଡ଼ କର
ଥାଉ ଦୟା କରିବାର କଥା ନ କହି କି ରେ । ୩
ସୁଖଦ କଟାକ୍ଷ ଶର                    ଥାଉ ତୋ ରସିକା ବର
ଦଣ୍ଡ ଦିଆଉଛୁ ପର ହାତରେ କାହିଁକି ରେ । ୪
ମଦନ ଖେଦ ବାରଣ                    ଅରୁଣା ରୁଣ ଚରଣ
ଦେଇ ଶିରେ ଏ ମୋ ପ୍ରାଣ ରଷା ନ ବଞ୍ଚିକିରେ । ୫
ଗୋପାଳକୃଷ୍ଣ କହଇ                    ଛଳ ପନ୍ଥରେ ପକାଇ
କରୁ ନାହୁଁ ଅନୁଗ୍ରହ ଚାହୁଁଛୁ ମଧ୍ୟକି ରେ । ୬



## ରାଗ ଝଂକୋଟି—ମିଶ୍ରରୂପତାଳ

( କା ମନେ ଥିଲା ଏକଥା—ବୃତ୍ତେ )

କେ କଷ୍ଟ କଳ୍ପନା ତାକୁରେ
ଟେକି ମଥା ଚାହୁଁ ନାହିଁ ମୁହଁକୁରେ । ପଦ
ପଲକ ପତନ କାଳ ଅନ୍ତର
କୋଟିଯୁଗ ହେଉଥାଇ ଯାହାକୁରେ । ୧

ରଖିଲା ନାହିଁ ଦେଲେ ହେଲେ ସଖୀ
ଲେଖି ପ୍ରେମ ବନସ୍ତ ଜଣାଣକୁ ରେ । ୨
ଜାଣିଛୁ ତ ତତ୍ତ୍ୱ ମୁଁ କି ବୋଲିବି
ପୀୟୁଷ ବିଷ ହେଲା କରମକୁ ରେ । ୩
ଶୁଣିଲେ ବାଣୀ କ୍ଷଣପ୍ରଭା ପରି
ଝଲକୁ ଥାଇ ଆସି ଅଗଣାକୁ ରେ । ୪
ଗୋପାଳକୃଷ୍ଣ କହଇ ଧୀରରେ
କଥା ରହିଗଲା କାଳ କାଳକୁ ରେ । ୫



## ରାଗ ମାଳ୍ୱା ମାଳବ ଗୌଡ଼ା—ମିଶ୍ର ରୂପତାଳ

(ଆନେ ନକର ପ୍ରୀତି—ବୃନ୍ଦେ)

ବାଜୁଛି ସତ୍ୱ ବାଜାରେ, ତୋନାରେ ବ୍ରଜ ବଜାରେ ।ପଦ।

ଅଞ୍ଚଳରେ ଭୁ ଥିବାର　　　　କାନକୁ ସେ ଆସିବାର
ଅନା ଅନ ଚମତ୍କାର ଶୁଣିବା ତୋର ଡାହାର ।୧।

ଭୁଜ ବନ୍ଧୁ ପୀତ ପଟ　　　　ତୋମାଲ ଶାଢ଼ୀ ପାଲଟ
ହୋଇବାର ବାଟ ଘାଟ ଯାକରେ ହେଲାନି ସ୍ଫୁଟ ।୨।

ଯାଇ ଯମୁନା ପାଣିକି　　　　ଭୁ ନବୁଡ଼ାଇ ଘଡ଼ିକି
ମାପରୁ ଶ୍ୟାମ ଗୁରିକି ଅନାଇଥିଲୁ ନାହିଁ କି ?

କହୁଥିଲୁ ଚନ୍ଦ୍ରାବଳୀ　　　　ଶେଜେ ଶିଖଣ୍ଡ ମଞ୍ଜଳ
ହେଉଥିବାର ବାଜୁଳ ଜୟ ରାଧେ ଶ୍ରୀ ରାଧେ ବୋଲି ।୪।

ଗୋପାଳ କୃଷ୍ଣ କହଇ　　　　ଗୋପୀଙ୍କି ସବୁ ଆସଇ
ଆପଣାର ଦୋଷ ନେଇ ପରେ ବଅନ୍ତି ଲଗାଇ ।୫।



## ରାଗ ପରଜ—ଆଦତାଳ

ବୃନ୍ଦାଁରେ ନିକୁଂଜ ଶେଜକୁ
ଖାବନର ବନ୍ଧୁ ରାଧା-ଗୋବିନ୍ଦ ସଜକୁ ।ପଦ।
କେତେ କାଳରୁ ବିରହ ବାଞ୍ଛି ରଖିଥିଲା ସଂଚ
ସଂସାର ସାର ସୁଷମା ସଂଚୟି ବ୍ରଜକୁ ।୧।
ସୁମନ ଚନ୍ଦ୍ର ସରରେ କସି ପରମ ତୋଷରେ
ଧଇଲା ପଣ ଦିଶୁଛି ସୁନା ପଙ୍କଜକୁ ।୨।
ହେଉ ଗୁରୁ ଆଖି ଏକା ହସ ପ୍ରିୟ ଶ୍ରୀରାଧିକା
କାନ୍ତକରେ ଲୁଚାଉଛି ଲୋଚନ ଲାଜକୁ ।୩।
ଅଚଳ ଚପଳା ହୃଦେ ବନ୍ଧୁ ଘନ ହେଲ ଉଦେ
ଉଚ୍ଚନ ଦଶା ପଡ଼ିବ ମକର ଧ୍ୱଜକୁ ।୪।
ଏ ବ୍ରଜକେ ଆଖି ବନ୍ଧୁ ଥିବ ଜନଙ୍କର ସନ୍ଧୁ
ଜନ୍ମାନ୍ତର ପୂଣ୍ୟ ଫଳ ଘଟିଛି ଆଜକୁ ।୫।
ଗୋପାଳକୃଷ୍ଣ କାତାଧି କବାଟକଲା ନନ୍ଦିକ
ଆଳୀ ଏ ସିକା ଉତ୍ତରୁ କଡାଇ ଭୁଜକୁ ।୬।

—*—

## ରାଗ ଆଷାଢ଼ ଶୁକ୍ଳ

କୁମ୍ଭଜ ପଶିଏ ବିପକ୍ଷ ହୋଇ
କେ ପ୍ରେମ କାଧି ଦେଲା ଶୁଖାଇ
କର ଚିନ୍ତାମଣି ପଥର ହେଲା
କରୁଣା ବୃକ୍ଷେ କାଷ୍ଠଣ ଫଳଲା
କାହ୍ନୁଁକ ଶୁଣିଲ, କଥା ନକହ୍ନ ମଥା ପୋଡ଼ି ଦେଲ । ୧
କୂର୍ମ କୁଷ୍ଟରୁ ଧରଣୀ ଖସନ୍ତା
କୂଳକୁ ପଛେ ସାଗର ଲଙ୍ଘନ୍ତା
କଇମାଳୀ ବଧୂ ହେଲେ ଭୁଗତ
କଂଶକେ ବରସି କୁବଜା ଚିତ୍ତ
କାହ୍ନୁଁକି ଶୁଣିଲ କଥା ନ କହ୍ନ ମଥା ପୋଡ଼ି ଦେଲା । ୨

—*—

## ରାଗ ଶଙ୍କର ଭରଣ—ରୂପକ ତାଳ

(ଯୋଡ଼ି ଘର ଅନୁରାଗ—ବୃନ୍ଦେ)

ଅନୁ ପରିବାର ପାର

ଏହି ଏକାକି ସହି ପଞ୍ଜର ଗୋ । ପଦ

ଅପାର କରୁଣା ଅକୂପାରବୋଲି

ଅନୁ ଦିନ ଆଶା କରିଗୋ

କାଳ କଟିଗଲା ଦୁଃଖ ନ ସରିଲା

ଯୋଡ଼ୁ ନୟନରୁ ବାରିଗୋ

ଯା ତସ୍ୟା ଦୃଷ୍ଟି ପ୍ରାନ୍ତ ଲବ ଲେଶକୁ

ଭିକ୍ଷୁକ ସରିଏ ହୋଇ ଗୋ

ଖୁଣ୍ଟିଁବା ଜନକୁ ହୃଦେ ହୃଦ ଦେଇ

କର ମାଣିକ ପଳାଇଗୋ ।୨।

ମାର ମାରଣରେ ପରାଣ ଆଖିର

ହୋଇଲାନ ବୋଲି ଶୁଣି ଗୋ

ଘୁମୁକୁ ଡକାଇ ମୁଖକୁ ଅନାଇ

ପଦେ ନ କହି କି ବାଣୀ ଗୋ ।୩।

ଅଧରୁ ଅମୃତ ପାନ କରିବାକୁ

ଅରହି ଯେ ପୀରତିରେ ଗୋ

ସ୍ନେହ କୟାଳାପଣେ ହେଲେ ତାକୁ

ନମଙ୍ଗୁଳି କି ଶୁପତରେ ଗୋ ।୪।

ଯେମନ୍ତ ହେଲା କୁରଂଗ ସୁଧାକର

ପକ୍ଷରେ ବଳାଇ ଆଶା ଗୋ

ଶ୍ରୀ ଜଗନ୍ନାଥ ଗଜପତି *

ଭଣିଲେ ହେଲ ମୋ ସେହି ଦଶାଗୋ ।୫।

—*—

* ଶ୍ରୀ ଜଗନ୍ନାଥ ଗଜପତି—ପାରଳା ଖେମୁଣ୍ଡୀ ରାଜ୍ୟର ତତ୍କାଳୀନ ରାଜା ।

## ରାଗ ଧନାଶ୍ରୀ—ମିଶ୍ରରୂପତାଳ

(କେତେ ବୋଲି ମୋ ଦୁଃଖ—ବୃତ୍ତେ)

ତୋ ରୂପ ପ୍ରତି ଦଣେ ବଢ଼ୁଛି ରେ
ତୋ ପରି ଲକେ ଉଦ୍ଧ ହସୁଛି ରେ ।ପଦ।

ପ୍ରସାରି ମୁଁ ପଣନ୍ତ ଡ଼ାକଲେ ପ୍ରାଣମିତ
ଭସ୍ନେ ଦନ୍ତେ ରସନା ଦଂଶୁଛିରେ ।୧।

ଦୁରୁ ଦେଲଜଟି ବୃନ୍ଦେ ମୋତେ ପରାଣ ପନ୍ଧ
ନଶୁଭୁ ଧୀରେ ଗିର ଭାଷୁଛିରେ ।୨।

ଫିଟି ଯାଇଛି କେଶ ନବଦଣ୍ଡ ମାନ ବାସ
ଆତୁର ହୋଇ କେତେ ଖୋସୁଛିରେ ।୩।

ପ୍ରଭଞ୍ଜନ ଶପ୍ନେ ଚଳନ୍ତି ତଳେ ସଦନେ
ସୁରତ ସଜେ ଆସି ଖାପୁଛି ରେ ।୪।

ଗୋପାଳ କୃଷ୍ଣ ଭଣେ ତୋର ଗୁଣସ୍ମରଣେ
ମାନସ ଅନୁକ୍ଷଣେ ରସୁଛି ରେ ।୫।

—*—

## ରାଗ ଖମାଚ—ଆଦତାଳ

( ଭଜମନ ହରପ୍ରାଣ ପ୍ରେମ୍ସପୀ ଶ୍ରୀମନ୍ତକ—ବୃତ୍ତେ )

* ଜୀବନ ବନ୍ଧୁ ମାଗୁଣି ମାଗୁଛି ରେ ଏତନ
ନାହିଁ କରିବୁ ନାହିଁଟି କହିଲି ବନନ୍ତକ । ପଦ ।

ନଚୁଇ ଚରମେ ବେଣୀ ବଜାଇ କଟି କିଙ୍କିଣୀ । ପଦ ।
ଝୁଲିଇବୁ ବପସିତେ ଭୁଲିକର ମୋତକ । ୧ ।

---

* ଏହି ପ୍ରେମ କବିତାଟିକୁ ଭକ୍ତକବି ଗୋପାଳକୃଷ୍ଣ ତାଙ୍କର ଶିଶୁଅବସ୍ଥାରେ ରଚନା କରିଥିଲେ । ତାଳପତ୍ର ଖେଦାରେ ଲେଖି ବ୍ୟାକରଣ ବହି ଭିତରେ ରଖି ଥିବା ବେଳେ ସହାଧ୍ୟାୟୀ ପଣ୍ଡିତ ଶ୍ରୀ ଚନ୍ଦ୍ର ପଟ୍ଟନାୟକ ନେଇଯାଇ ତାଙ୍କର ଗୁରୁଦେବ ପଣ୍ଡିତ ଶ୍ରୀ ଦିନବନ୍ଧୁ ପଟ୍ଟନାୟକଙ୍କୁ ଦେଖାଇବାରେ ଭକ୍ତପ୍ରବର ଗୁରୁଦେବ-ହସି ହସି କହିଥିଲେ “ ଆହ୍ଵର ଆମ୍ଭ ଗୋପାଳର ଶିଶୁବୁଦ୍ଧି ଛାଡ଼ ନାହିଁ !”

ସ୍ୱନ ଭୁଲେ ତୋଷ ହାସ ତାଟଙ୍କ ଝଲକା ଝଷ

ଚଳାଇବୁ ସ୍ୱହିଁ ମୋତେ ନଲସ୍ଭାଇ ବନ୍ତଜ । ୨ ।

ବିଲୋକନ୍ତ ଦନ୍ତଧର ଭଡ଼ା ମୁଖ ସୁଧାକର

ସ୍ୱେଦ ଜରଜର ଅନମ୍ବର ଦେହ ଦ୍ୟୁତଜ । ୩ ।

ଲତା ମଧ୍ୟରେ ନେଇ ଖଞ୍ଜନ ଡୋଳା ଖେଳାଇ

ଯାହା ବୋଲୁଥିବୁ ଶୁଭୁଥିବଟି ମୋ ଶ୍ରୁତିକ । ୪ ।

ଦୁଃଖରୁ ଉଦ୍ଧରିବାକୁ ଥିଲେ ଗୋପାଳ କୃଷ୍ଣଙ୍କୁ

ଅଙ୍ଗୀକାର କରି ଥରେ ପଠିଆଅ ଦୂତୀକ । ୫ ।

—*—

## ସଖୀମାନଙ୍କ ପ୍ରତି ଶ୍ରୀରାଧା

ତାଳତାଳ—ଏକ

(ବାଟ ଛାଡ଼ ଦେରେ—ବୃନ୍ଦେ)

ଆଗୋ ସହଚରୀ

କି ନ କଲେ ସେ ବେଣୁଧାରୀ ।

ଦଗା ଦେଲେ ମନକୁ କି ବସୁରି ।ପଦ ।

କଣ୍ଠ ଦେଇ କୁଂଜକୁ ଡକାଇଲେ

ଠକ ପଣ ଧରିଣ ଠକାଇଲେ

ଚନ୍ଦ୍ରାବଳୀ କୁଂଜେ ମିଳ ରଂଗ ସଂଗେ

ପକାଇଲେ ମୋତେଟି ପାଶୋରି ।୧।

ଭାଗ୍ୟ ବନ୍ତ ହେଲା ସେ ଗୋପିନୀ

ମୁଁ ସିନା ହୋଇଲି ଅଭାଗିନୀ

ସାଜ ବାର ଶେଯ ବୃଥା ହେଲା ଆଜ

ନଇଲେ ଯେଣୁ କୁଞ୍ଜବିହାରୀ ।୨।

ନବ କଦଳପତ୍ରେ ସାଜ ଶେଯ

ସିଞ୍ଚିଲି ରଜନୀକର ରଜ

ଗୋଳି ଏଣୀ ମଦ ଚନ୍ଦନ କୁଙ୍କୁମ

ରଖିଥିଲି ଅଙ୍ଗ ସତ୍କରି ।୩।

ଖଣ୍ଡି ନାଗବଲ୍ଲୀ ସଜତନେ
ଶ୍ରୀ ମୁଖ ପଙ୍କଜ ପଶାଇ ଝଟକି
ଢାଙ୍କି ରଖି ଥିଲି ମୋଦେଉଳ ।୩।
ଧୂପ ଦୀପ ଗଂଧ ପୁଷ୍ପହାର
ସବୁ ହେଲା ମୋର ଛାର ଖାର
ନଇଲେ ନାଗର କରି ହରବର
ଉତ୍କଣ୍ଠିବା ଶତ୍ରୁ ଗଲି ଝୁରି ।୪।
କି ଦୋଷ କଲି ମୁଁ ଆଗୋଆଳ
ପର କଲେ ମୋତେ ବନମାଳ
ଅଭି ସାରିକାର ଉଦରରେ ପଦର
ଛେଳିବାର କେଉଁ ବାହାଦୁରି ।୫।
ଯାତ୍ରା କଲେ ଆଜି ସେ ମାଧବ
କେଉଁ ନାରୀ ଏହା ପାଶୋରିବ
ଭଣଇ ଗୋପାଳ କୃଷ୍ଣ ରାଧାଭାବ
ପାଶୋରିଲେ ବିରହ ବଢ଼ାଇ ।୬।



## ରାଗ ଚକ୍ରବାକ—ମିଶ୍ରଝମ୍ପତାଳ

( ସଖି ଛାଡ଼ି ନପାରେ ମୁଁ ସେ ପ୍ରୀତିକି—ବୃତ୍ତେ )

ପ୍ରେମ ଶଲ୍ୟା ମଣ୍ଡିକି କେ ଛୁଆଇଲା ମର
ହୃଦରେ ଏଣିକି ଭରସାଇଲାରେ । ପଦ ।
ସେ କଲା ଏ ବସ୍ତୁର କି ତତ୍ତ୍ୱ ମୁଁ ତାହାର
ଭଙ୍ଗାଇ ମୋ ଆଶ ଲଭିବ କି ଯଶ
କ୍ଷୀରରେ କ୍ଷାର କେ ମିଶାଇଲା ରେ । ୧
ପୁରାତନ ବେଶରେ ବସି କେଳି ବାସରେ
ଗୁଞ୍ଜୁଥିଲା ଜାର ଶୁଣି ମୋର ଗିର
ନେତ୍ର ମାରି କରଷାଇଲା ରେ । ୨

ସେହ୍ନ ଧନ ମାତର          ମୁଁ ତାକୁ ଦେଖିବାର
ହେଲି କେତେ ଦୋଷୀ, ଲଜ୍ଜିଲି କପୂସୀ
ମୁଖ ଆଉ ନ ଦଶାଇଲା ରେ । ୩
ଦୁଃଖ ମୋ ଶୁଣି ବ୍ୟଥା          ଲଭୁ ବା ଆଉ କଥା
କୁସଙ୍ଗରେ ହେଲେ ମୋର ନାମ ଥରେ
ବଦନରେ ନ ବସାଇଲା ରେ । ୪
ଗୋପାଳକୃଷ୍ଣ କହେ          ମୁଁ ଛୁଟି କାର ନୁହେଁ
କାହାକୁ ବୋଲିବ କି କରି ବୁଝିବ
ବଂଧୂ ଉଗାର ହସାଇଲା ରେ । ୫



## ରାଗ ବସନ୍ତ—ମିଶ୍ର ରୂପତାଳ

ଊଠ ନ କର ମଠ ତୋ ଦରଶନକୁ
ମୋହନ ଆସିଛନ୍ତି ପଲ୍ଲୀ ରେ । ପଦ ।
ପଲଙ୍କ ତଳରେ          ପ୍ରଦୀପ ପାଶରେ
ଉଭା ହୋଇଛନ୍ତି ଧୀରିଧୀରି ରେ । ୧
ହେବୁ ବୋଲି ବେଣ          କରି କେତେ ଆଶ
ଆଣିଛନ୍ତି ସୁମନସ ଝଁପିରେ । ୨
ଦୁଃଖ ଅପହୃତ          ତଳପ ସଜାଡ଼
ପ୍ରାଣନାଥ ମନୋରଥ ପୂରିରେ । ୩
ସର୍ଖୀକର ଧର          ଶ୍ରୀନନ୍ଦ କିଶୋର
ଚେତ ଉଭା ହେଲେ କସୁନ୍ଦରରେ । ୪
ସଖୀ ଗଲେ କହି          ସମସ୍ତଙ୍କୁ ରହି
ଗୋପାଳକୃଷ୍ଣ ବୋଲଇ ଭସ ରେ । ୫



## ରାଗ ମାସ୍ଥା ମାଳବ ଗୌଡ଼ା—ମିଶ୍ରରୂପ—ତାଳ

( ଯେ ପୀରତି କରିଛି ତାର ମନ ଜାଣେ—ବୃତ୍ତେ )

ମନରଖା ପୀରତି କେ କଳନ ମନା
ଭିନ୍ନ କଲେ କରଇ ଦଇବ ସିନା । ପଦ

ଜାତି ମାତି ଧନ ମହତ୍ତ୍ୱ ଗୁମାନ
ତେଜିବାକୁ ଅଛି ଯାର ଆଲୋଚନା । ୧

ସ୍ୱର କି ସ୍ୱକର ସ୍ୱିନ୍ଧିଁଲେ ତାହାର
କରଇ ସେ ପ୍ରଭୁ ସମ ସମ୍ଭାବନା । ୨

ଯା ଲାଗି ଯା ପ୍ରାଣ ଯିବ ଏପ୍ରମାଣ
ଦେଲେ ଛାଡ଼ଦ କି ତା କୁଳ ରେ ସୁନା । ୩

ନୟନ ଅୟନେ ଶୟନେ ସ୍ୱପନେ
ନଦିଶଇ ଆନ ତା ମୂରତି ବିନା । ୪

ଯିବା ଯାଏ ଶିର ଯାର ଅଙ୍ଗୀକାର
କଥା ପଦକୁ ଥାଇ କି ତା ଶୋଚନା । ୫

କହଇ ଗୋପାଳ- କୃଷ୍ଣ ସ୍ନେହଜଳ
ନିଧି କରିବେ କି ଜନେ ଅକଳନା । ୬

—*—

## ତାଳ—ଝିପଟା

( ଜାଣିଛି ମୁଁ ଏତେ ମାନ୍ତଗୋ—ବୃତ୍ତେ )

ତରଣୀ ଯା ତଟେ ବାଜୁଛି ବାଂଶରୀ
ଚଉ ମନ ଚୋରି କରିବାକୁ
ଧରଣୀ ହୋଇବେ ସମ୍ଭାଳିବ ଛାତି
ମନମୃତ ଶରେ ମରିବାକୁ । ପଦ ।

ଆଖି ତାଳ ଗୁହେଁ ସେ ପୀତ ପଟିଆ
ଉଗାଳ ଖଙ୍ଗିକ ଗୋପୀଙ୍କ ମାଠିଆ
ଘାଟ ମାଗି ହଟ ଲଗାଇବ ନଟ—
ଲୁଟିଆ ମହତ ସାରିବାକୁ । ୧ ।



ତରଣୀ ଯା ତଟେ ବାଜୁଛି ବାଂଶରୀ

ଚିତ୍ତ ମନ ଚୋରି କରିବାକୁ

ତରୁଣୀହୋଇ କେ ସମ୍ଭାଳିବ ଚିତ୍ତ

ମନସୁତ ଶରେ ମରିବାକୁ ॥

( ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ୨୭୨ ପୃଷ୍ଠା )

କଳା କଳାହକ ଜିଣି ଅଙ୍ଗକାନ୍ତି ସାଜେ
ବରହା ମୁକୁଟ ଶିର ପରେ ରାଜେ
ଜଳୁଟିଛୁ ସିନ୍ଥ ଅର୍ଦ୍ଧଚନ୍ଦ୍ରାଧରେ
ସାରଙ୍ଗିଣୀ ପ୍ରାଣ ଘାରିବାକୁ । ୨ ।
ଦମ୍ଭ ଧରି କେହ୍ନେ ଏ ବ୍ରଜ କଟକେ ।
ମୋହନ ମୋହିନୀ ମୋହିନୁ ଛଟକେ
ଭିନ୍ନ ପାରିବକ ଆଣି ଟାଣି ମିଳ
ଗୋକବକ, ଲୁହ ଝରିବାକୁ । ୩ ।
ଜକରିବା ଏବେ କହିଲେ ମିତଣୀ
କେମନ୍ତେ ଲଙ୍ଘିବା ମଦନ ସରଣୀ
ଏହ୍ଲାଦ ଚନ୍ଦନ
ସେ ନନ୍ଦ ନନ୍ଦନ
ସାର ହେବ ଗୁଣ ଝୁରିବାକୁ । ୪ ।
ହେଉ ଯା ହେବାର ଆଗୋ ପ୍ରାଣସଖି
ଆସ ଥରେ ଯିବା ନାଗରଙ୍କୁ ଦେଖି
କହଇ ଗୋପାଳ କୃଷ୍ଣ ହୋଇ ଦୁଃଖୀ
ପଦଚନ୍ତ୍ର ଅଘ ତରିବାକୁ । ୫ ।

—*—

## ସଖୀମାନଙ୍କପ୍ରତି ଶ୍ରୀରାଧା

ତାଳ—ଏକତାଳ

( ହେନାଇ ଆମ୍ଭେ ଯେତେ—ବୃନ୍ଦେ )

ନୟନେ ଦେଖିଲି ମୁଁ ଶ୍ୟାମକୁ ଗୋ
ମୂରତି ଜଣେ କୋଟି କାମକୁ ଗୋ । ପଦ ।
କାମ କମାଣ ଜିଣି
ସାଜେ ଭ୍ରୂଲତା ଠାଣି
ଚୂଳେ ଖଞ୍ଜିଛୁ ଫୁଲ ଦାମକୁ ଗୋ । ୧ ।

ଉଳ ଗୁଲଇ ରଙ୍ଗେ
ବ୍ରଜବାଳକ ସଙ୍ଗେ
ବାମରେ ରଖି ବଳରାମଙ୍କୁ ଗୋ । ୨ ।
କୋଳ ନନ୍ଦ ନନ୍ଦନ
କରୁ କେତେ ଯତନ
ଗଢ଼ିଲା ତନୁ ଦେଖି କାମଙ୍କୁ ଗୋ । ୩ ।
ନାଗରୀ ମରାଳଛବି
ଯେନ ବରଜ ରବି
ଆସି ମଣ୍ଡିଛି ଧରା ଧାମକୁ ଗୋ । ୪ ।
ଗୋପାଳ କୃଷ୍ଣ କହି
ସାନ ନୁହେ ଗୋ ସହି
ସୁହାର କଳାକହ୍ନୁ ପ୍ରେମକୁ ଗୋ । ୫ ।



## ରାଗ ମୋହନା—ମିଶ୍ର ରୂପକତାଳ

( ଜଣାଥିଲା କି ମୋତେ ଏ ଶାନ୍ତରେ—ବୃତ୍ତେ )
କି କର କିକଲୁ ପାପ ବନ୍ଧରେ ।
କି ଦୋଷ କରିଥିଲି ମୋର କପାଳେ
ଏହି ଏକା ଥିଲୁ ଲହିଲେ । ପଦ ।
ଏ ନାରଦ ନଶିକ ଅନାଇଁ
ଏକାମନେ ମନେ ମୋତେ ଧିଆଇ
ଲେଝୁଥିବ ପଣ ଅବନୀ ଶେଯରେ
ବାର ବାନ ସ୍ବର୍ଣ୍ଣ ଦେହୀ ରେ । ୧
କେଶରୀ ମଧ୍ୟାକୁ ଅଛିକେ ସର
ଆଜ୍ଞ ଗଢ଼ିବ କ ନାସା ତା ପର
ଯା ଠାରୁ ଅବନ ଶିଖି ସରିଯିବ
ତାଙ୍କୁ କ ଏ ଦଣ୍ଡ ବନ୍ଧରେ । ୨

ଆସି ଦେଖିଲି କୁଆର ମାସରେ
　　　　ବସିଥିବ ପଦ୍ମ ବଣି ବାସରେ
ମୋ ପଥକୁ ଲକ୍ଷ୍ୟ କରିଥିବ ଥିବ
　　　　ଶରଦ ଚନ୍ଦ୍ରମା ମୂର୍ତ୍ତିରେ । ୩
ମୁଁ ଯେ ଅଇଲି ବେଳରେ ଏଣିକି
　　　　ଲୁହ ପୋଛୁ ଥିଲି ଧରି ପାଣିକି
ସୁମନା ସ୍ତୁତି ନୋଇ ଲେଉଟିବାକୁ
　　　　ପ୍ରବୋଧି ଆସିଲି କଣ୍ଠ ଭେ । ୪
ଆଜ ଗୋପାଳକୃଷ୍ଣ ଙ୍କ ଲଭିବ
　　　　ଯାକୁ ଦେଖି ପଶୁ ବଶୀ ହୋଇବ
ତାକୁ ସ୍ୱରେ ଦୁଃଖ ଜଣାଇବାକୁ ନତା
　　　　ମାନସ ବଳଲି କେହ୍ନରେ । ୫

---

## ରାଗ ରୀତିଗୌଡ଼ା—ରୂପକ ତାଳି

( ରାଧେ ଶ୍ରୀ ପଦାବ୍ଜ ଦଣ୍ଡ ଦରଶନ—କୃତେ )

ଆରେ ଫୁଲ ତୋଳି ଯିବା ବୃନ୍ଦାବନ
ଆସି ଲେଲି ଆଲୀ ନିକର । ପଦ

ତମାଳ ବନଟି ଘନ　　　　ପରିଦରେ ଶୋଭାବନ
　　　　ବନ୍ଧୁପର ଫୁଟିଅଛି ସୁମନ । ୧
ନୀଳ ଶାଢ଼ୀକି ତୋ ତନୁ　　　　ବସିଜୁ ଅଛି ସୁତନୁ
　　　　ଦେଖି ଡ଼ରି ପଳାଇବ ମଦନ । ୨
ପୁଣି ଯମୁନାରେ ପଶି　　　　ସ୍ନାନ କରିବା ସୁକେଶି
　　　　ମାଳା ଲାଗି କରିଦେବ ବନ୍ଧନ । ୩
କଳା ଡୋଳାକୁ ଟଳାଇ　　　　ହେଲା କରି ଦେବୁ ଭୃଙ୍ଗ
　　　　ହେଲା ମାନଙ୍କ ମୋହ ହେବେ ମୋହନ । ୪
ତାକୁ ଲଳିତାଙ୍କ ଗୀତେ　　　　ଶୁଣି ଚକ୍ଷେ ସନ୍ତରେ
　　　　ଭବ ଗୋପାଳକୃଷ୍ଣର କଟନ । ୫

---

## ରାଗ ଭୈରବୀ—ମିଶ୍ରରୂପତାଳ

( ଶ୍ୟାମ କମନୀୟକୁ ସମ ନାହିଁ ଆଉ—ବୃନ୍ଦେ )

କ ସୁକୃତ କରିଥିଲ ସେ ଶ୍ରୀ ଜଶୋଦା
ଅନ୍ୟ ଜନମରେ କହ ସହଚରି । ପଦ
ଯେ ନେହାନ୍ତ କୋଣରେ ଅନାଇଁ ଦେଲେ ଅରେ
ବ୍ରଜବଧୂ ହେଉଛନ୍ତ ଦାସୀ ପରି । ୧
ଆଉ ଗୋ ଆଉ ଯାକ ଯୁବାବୃନ୍ଦ ତିଳକ
ତା ଦାସୀ କ ରହିଛନ୍ତ ଅନୁସରି । ୨
ଜାଣିଲେ ଯେତେ ରସ ହୋଇଲେ କେତେ କେଶ
ତା ଗୁଣ ଛଡିକ ହୋଇବ କେ ସରି । ୩
ନୋହିବା ଯାକ ସ୍ଫୂର୍ତ୍ତି ତା ସୁଗୁଣ ଶ୍ରୀ ମୂର୍ତ୍ତି
ଯାହା ମତେ ଉତ୍ତମ ସେ ବ୍ରଜନାରୀ । ୪
ଗୋପାଳ କୃଷ୍ଣ ଜାଣ ସେ ଶ୍ରୀପଦ ଶରଣ
ହେଲ କ କହନ୍ତି ସେ ରାସେଶ୍ୱରୀ । ୫

—*—

## ଶ୍ରୀରାଧାପ୍ରତ—ଲଳିତା

ଶୁଣ ଗୋ ଜଶୋଦା ମଣି । ଯାହା କରିଛନ୍ତ ମୁରଲୀ ପାଣି
ନାରୀମଣି ଗୋ
ଦେଖି ହୃଦ ହେଲ ହାଣି । ୧ ।
କୁଞ୍ଜେ ଡକାଇ ତୁମ୍ଭଙ୍କୁ । ରମିଲେ ଯାଇ ସେ ଚନ୍ଦ୍ରାବଳୀକୁ
ନାରୀମଣି ଗୋ
କହିଲେ ଫାଟଇ ବୁକୁ । ୨ ।
କୁଞ୍ଜେ କୁଞ୍ଜେ ଖୋଜ ଧୀରୀ । କାହିଁ ନ ଦେଖିଲ ମୁରଲୀ ଧରୀ
ନାରୀ ମଣି ଗୋ
ହେଉଥିଲ ଧୈର୍ଯ୍ୟହରୀ । ୩ ।

ଦ୍ୱାଦଶ ବନ ବୁଲିଲି । ଗୋକୁଳକୁଞ୍ଜ ଖୋଜି ନ ପାଇଣେ ଗଲି
ନାଗରମଣି ଗୋ
ଚନ୍ଦ୍ରାବଳୀ କୁଞ୍ଜେ ବୋଲି । ୪ ।

ଦେଖିଲି ତହିଁ ମୋହନ । ଚନ୍ଦ୍ରାବଳୀ ବାହୁପାଶେ ବନ୍ଧନ
ନାଗରମଣି ଗୋ
ବନ୍ଧ ହୋଇଛନ୍ତି ମନ । ୫ ।

ଦୁରଂବଶା ଚନ୍ଦ୍ରାବଳୀ । ପଡ଼ିଅଛି କାହ୍ନୁ କୋଳରେ ଢଳି
ନାଗର ମଣି ଗୋ
ଲାଗି ଅଛି ରତି କେଳି । ୬ ।

ଭଙ୍ଗି ଭ୍ରୂଭଙ୍ଗେ ଯାନ । କହିଲି ପାଶୋରି ନ ଦେବ କାହ୍ନ
ଏ-କଣା ଦାସୀଙ୍କ
ହୃଦରେ ଦେବ ଆସନ । ୭ ।

ଅଙ୍ଗୀକାର କଲେ ହରି । କେତେ ଗେଲ କଲେ କୋଳରେ ଧରି
ସ୍ୱସ ରଙ୍ଗୀରେ
ଦେଖି-ଚକ୍ଷୁ ଜୁଡ଼ିଲା ମୋ ଥରି । ୮ ।

ନୟନୁ କଜ୍ଜଳ ନେଇ । କରଜ ମୂନରେ ଲେଖ ଲେଖାଇ
କେତକୀ ଦଳେ
ଗବାକ୍ଷେ ଦେଲି ଗଳାଇ । ୯ ।

ଦଣ୍ଡାଦାର ବେଣୁଧର । ଯାହା କଲ ଆଜ ସଖୀଙ୍କ ମୋର
କଳା କାହ୍ନୁ ହେ
ପ୍ରତିଶୋଧ ନେବ ତାର । ୧୦ ।

ମୋ ନାମ ଯେବେ ଲଳିତା । ଘେନେ ନଚେଷ୍ଟ ରାଧା ପାଦ ଅଳତା
କଳା କାହ୍ନୁ ହେ
ମଣ୍ଡାଇବ ତୁମ ମଥା । ୧୧ ।

ଲଳିତା ମୁଖରୁ ଶୁଣି । ଜ୍ଞାନ ହୀନା ହେଲେ ଯାଦୁ ଦୁଲଣୀ
ମୀନ ନୟନୁ
ଝରି ଝରି ଗଲେ ପାଣି । ୧୨ ।

ହା ହା ଶ୍ୟାମବନ୍ଧୁ ମୋର । କବା ଦୋଷେ ମୋତେ କଲ ଅନ୍ତର
ଲୀଳା କଥି ହେ
ଗୋପାଳ କୃଷ୍ଣ କବ୍ବର । ୧୩ ।



## ସଖୀମାନଙ୍କ ପ୍ରତି—ଶ୍ରୀରାଧା

ତାଳ—ଆଠତାଳି

ଯେବେ ନ ଆସିଲେ ଆଭେଶ ବାନ୍ଧବ ବାସକ ଶେଯେ ଭଣ୍ଡାଇ
ତେବେ ଗୋ ସଙ୍ଗିନୀ—ତାଙ୍କଠାରୁ ମୋର ସମ୍ବନ୍ଧ ଦଅଛୁଣ୍ଡାଇରେ
ସଙ୍ଗିନୀ
ସେ ଚନ୍ଦ୍ରାବଳୀର ନାଥ
ବୃଷଭାନୁ ସୁତା ଶ୍ୟାମ ଉପେକ୍ଷିତା
ଜୀବନଟା ତାର ବ୍ୟର୍ଥରେ । ୧ ।
କରୁଛି ଦୁର୍ଜ୍ଜୟ ପଣ ମୁହିଁ ଆଜ ଶୁଣ ଗୋ ସଜନୀ ମାନେ
ନଦେଖିବି କଳା ପଦାର୍ଥ ଶୁଣିବି ନାହିଁ କୃଷ୍ଣ ନାମ କାନେରେ
ସଙ୍ଗିନୀ
କୃଷ୍ଣ ଦ୍ରବ୍ୟ ମୋ ବଇରି
କଳା ମରକତ ଚୂଡ଼ କାଢ଼ି ହେମ
କାଚ ଦିଅ କରେ ଭରିରେ । ୨ ।
ଆଖିରେ କଜ୍ଜ୍ୱଳ, ନରଞ୍ଜିବି ଆଉ, ନପିନ୍ଧିବି ନୀଳପାଟ
ଶ୍ୟାମା ସଖୀଏ ମୋ, ପାଶେ ନରହିବେ, କଳସୀକୁ ଭାଙ୍ଗିଦିଅରେ
ସଙ୍ଗିନୀ
ଶୁଆ ସାରୀଙ୍କୁ ସତ୍ୱର
ଦିଅ ଉଡ଼ାଇଣ ପିଞ୍ଜରାଟି ଖୋଲି
ଆଖିରୁ ହେଲୁ ଅନ୍ତରରେ । ୩ ।
ତମାଳ ବୃକ୍ଷଟି ଉପାଡ଼ିଣ ଦିଅ
ଫୁଲ ତାର ଦିଅ ଦଳି

ସର୍ଜି ଦିଅ ଯେବେ ଇଚ୍ଛା ହେଲେ ଅଛୁ
ଶ୍ୟାମଳ କୁସୁମ କଢ଼ିରେ
ସଜନି
କଳାରଙ୍ଗ ନଦେଖିବ
ଯମଭଗ୍ନୀ କଳା ଜଳ ଆଣିବାକୁ
କଳସୀ ଯେବ ନଯିବରେ । ୪ ।
କଳାଆକାଶକୁ ନଚୁମ୍ବିବ ଆଉ କଳାଭୃଙ୍ଗ ମୋ ଅଭିତ
ତେଣୁ ବୃକ୍ଷଲତା ଓଙ୍କ ମୋଡ଼ିଦିଅ ସବୁଯାଉ ପୁଷ୍ପ ପ୍ରୀତ ଗୋ
ସଜନି
କଳାକୁ କଲି ବର୍ଜ୍ଜନ
ନ ଦେଖା କେ କଳା ନଶୁଣାଅ କଳା
ଗୋପାଳକୃଷ୍ଣ ଉଚନରେ । ୫ ।



## ସଖୀଗଣଙ୍କ ପ୍ରବୋଧ

ତାଳ ରୂପକ

ଗୁମାନ କର ରାଧିକେ ରହିପାରିବୁ କରେ
ସତେ ଶ୍ୟାମବନ୍ଧୁ କଥା ମନୁ ପାଶୋରିବୁ କରେ । ପଦ ।
କାନକେ ବାଜିଲେ ବଂଶୀ ତନୁ ଉଠିବ ଉଲ୍ଲସି
କଳସୀ କାଖେ ଜ୍ଞ ନାସ୍ତ ପାଇଁ ନବାହାରିବୁ କରେ । ୧
ଗୋଧନ ବାହୁଡ଼ାବେଳେ ଗୋପାଳ ବାଳକ ମେଳେ
ଆସିବାର ଦେଖି ତୋକେ ନେତ୍ର ନଠାରିବୁ କରେ । ୨
ସେ ନଟ ନାଗର ବର ନୟନରେ ଭରିନାର
ଚିଆ ହୋଇଲେ ସମ୍ମୁଖ ନରାଶ କରିବୁ କରେ । ୩
ଚରଣେ କହିଲେ ସେହି ଛନ୍ଦି ପାରିବୁ କ ସହି !
କରଧରିଲେ ତୋର ତୁ କର ନ ଧରିବୁ କରେ । ୪
ସେ ନାଟୁଆ ଶିରୋମଣି ଜାଣେ ବହୁତ କାଟେଣୀ
କାକୁ କହିଲେ ବଚନ ଆଣ୍ଟକ ବା ମରିବୁରେ । ୫

ଗୋପାଳ କୃଷ୍ଣ ଉଚନ ଆଗୁ ହୁଅ ସାବଧାନ
ନହେଲେ ମହତ ମାନ ଏକ ସଙ୍ଗେ ସାରିବୁରେ । ୭

—*—

## ଶ୍ରୀକୃଷ୍ଣଙ୍କ ପ୍ରତି ଚନ୍ଦ୍ରାବଳୀ

ଚାଲ ଖେମଟା

ଶ୍ୟାମବନ୍ଧୁ ମୋ ବନ୍ଧୁପରି
ବହୁ ଦିନାନ୍ତରେ ଦେଇଛ ଧରିହେ । ପଦ ।
କିମନ୍ତ୍ର କରିଛୁ କୃଷଭାନୁ ଜେମା ଦେବାଇଛ ତାର
ପ୍ରୀତି ପସରି
ଚନ୍ଦ୍ରାବଳୀ କିବା ନହେବାକୁ ଯୋଗ୍ୟ ପରକଲ ତାକୁ
ମୂରଲୀ ଧରି ।
(ହେ) ନାଟୁଆ କିଶୋର ସଖାଧିକ ଯେର ଭୁମ୍ଭଲାଗି ଯେତେ
ନନ୍ଦାଟାପରି । ୧
ଏ ବ୍ରଜ ବଜାରେ ସ୍ନେହେ ମଥା ପୋତି କହୁଥିଲେ କଥା
ହେବ ଅପରି ।
କେତେ ରଙ୍ଗ ସଙ୍ଗେ ବଂଶୀ ଶୂନ୍ୟ କୁଂଜେ ବସାଦେଉଥିଲୁ
ପରଗ ତରି । ୨
ଆଖି ପାଣି ଆଖି କୋଣେ ଶୁଖାଇଛୁ ପ୍ରୀତିକି କରାଇ
ବିଷାଦ ଭରି ।
କଣ୍ଠ ଦେଇ ଖଣ୍ଡେ ପଣ ଆଚରିଛ ଶୁଖାଇ ମୋହର
କୁସୁମ ଝରି । ୩
ବିରାଣ ଗୀତିକା ଗାଇ କଳକଣ୍ଠ ହସି ଅଛୁ କେତେ
ହୋଇ ପ୍ରେମପରି ।
ଶୁଭ ଯୋଗେ ଆଜ ପାଇଥିଲା ବଂଶୀ ରେଣୁ ବଜେଇକଲ
ରଙ୍ଗ ଅଧରି । ୪
ଚନ୍ଦ୍ରାବଳୀ କୁଂଜ ହେଲା ଆଜ ଉଜ୍ଜ୍ୱ ହୃଦପୁଟି ହେଲା
ଆନନ୍ଦ ଭରି ।

ବନ୍ଧୁବନାନ୍ତରେ ପାଇଛୁ ବନ୍ଧୁ ହେ ନ ଛାଡ଼ିବ କେବେ
ପାଶରୁ ଙ୍ଗସ୍ଥ । ୫
କାତୁପାଶେ ବାଂଧି ରଖିବ କାଳକୁ ହେଲେ ହେବ ଭୁଜେ
ମଦତ ସସ୍ଥ ।
ତୁମେ ଶ୍ୟାମ ବନ୍ଧୁ ଚନ୍ଦ୍ରାବଳୀ ବନ୍ଧୁ ବୋଲ ଜାଣନ୍ତୁ ଏ
ଜଗତ ସାସ୍ଥ
ଗୋପାଳ କୃଷ୍ଣକୁ ଗଣ୍ଡ ବଅ ପ୍ରଭୁ ପଦ କଂଜକୁ
କରଛୁ ଆସସ୍ଥ । ୬



## ଚନ୍ଦ୍ରାବଳୀ ପ୍ରତି ଶ୍ରୀକୃଷ୍ଣ

ତାଳ ଖେମଟା

'ଚନ୍ଦ୍ରାବଳୀ ଗୋ । ଚନ୍ଦ୍ରାନନା ମୋ ଗଳାମାଳ ଗୋ
ତୋବନା ଭୁବନ ଲଗେ ମୋତେ ଶୂନ୍ୟ
ମୁଖ ନଦେଖି ମରେ ଜ୍ୱଳ ଗୋ । ପଦ ।
ପ୍ରାଣ ବାନ୍ଧବୀ ତୁ ମୋର ମୁଁ ତୋ ବାନ୍ଧବ
ସାକ୍ଷୀରଖି କହୁ ଅଛୁ ଚଣ୍ଡିକା ଧବ
ରଣ ପଙ୍କଜ ପରି
ପ୍ରୀତି ତୋର ମୋହର
'ରହକ ଶର ଜନ କେବେ ନ ସିଦ୍ଧ ସରି
ତୁମୋ ପୀୟୂଷ ଭରୁ ଥାଳ ଗୋ । ୧
କଣି ରଖିଲୁ ମିତଣୀ ସେନହେ ମୋତେ
କଦାପି ମୁରୁଛୁ ଆଜ ନୋହୁକ ତୋତେ
କୋକନଦ ଅଧରୁ
ମଧୁ ଦେଇ ଉମ୍ପୋଛୁ
ତେରଙ୍ଗେ ଗୁହିଁଥରେ ଖେଳାଇ ବଅ ଭୁଛୁ
ମଦନ ହାସ ସାଜ ଜଳ ଗୋ । ୨

ଆସ ଆସ ସଙ୍ଗୀତରେ ଗାଳ କୁନ୍ତଳା
ସାର୍ଥକ କର ରଜନୀ ଖେଳାଇ ଢ଼ୋଲା
ମାର ମାର୍ଗଣ ବାଛ
ପରଶେ ଦୂରେଁ ସାଜ
ତୋର ମୋର ମିଳନ କଥା କାଳକୁ ଥାଉ
ଗୋପାଳକୃଷ୍ଣ ଗୀତେ ଭଳ ଟେ । ୪



## ଲଳିତାର—ଶ୍ରୀକୃଷ୍ଣଙ୍କ ପ୍ରତି

ଦୋଧାକ୍ଷ
ତାଳ—ଝିପ୍ତା

ଦଗାଦାର ଶ୍ୟାମବନ୍ଧୁ ବଟାଳିଆ ହେଲେ ହେ
ଦୁର୍ଦ୍ଦିବୁର କଲ ବନ୍ଧୁ !
ମୁକୁଳତା ମାଳଣ୍ଡିକ ପାଦରେ ଦଳିଲ ହେ
ସ୍ନେହ ଲତା ମୂଳ କାଟି ଝଡ଼ରେ ଆପିଲ ହେ । ୧
କ ଅମଳ ଖାଇ ଭୁନ୍ନେ ବିବେକ ହାରିଲ ହେ
ରାଧି କୁଂଜ ବାଟ ଛଡ଼ି ବପଥେ ଅଇଲ ହେ । ୨
ନବ ବଣଲସ୍ନ ଶେଯେ ପାହାଡ଼ା ପଡ଼ିଲ ହେ
ବୃଥା ହେଲା ଫୁଲ ଶେଯ ଟିକେ ନ ଗଳିଲ ହେ । ୩
ଊଡୁକାନ୍ତ ମୁଖୀ କଥା ଟିକେ ନ ଶୋଇଲ ହେ ।
ଉନ୍ନଦ୍ରେ ବସାଇ କୁଞ୍ଜେ ଆଜ୍ଞାଦଗା ଦେଲ ହେ । ୪ ।
ଆଶା କରଥିଲା ସବୁ ଅସିବେ ଛଇଳ ହେ
ଗୁନ୍ଥୁଥିଲା ପ୍ରୀତହାର ମଣ୍ଡିବାକୁ ଗଳ ହେ । ୫ ।
ବୃଥା ହେଲା ସବୁ ଶ୍ୟାମ ଏକି କରାଇଲ ହେ
ଏଣୀ ନୟନା ନୟନୁ ଅଶ୍ରୁ ଝରାଇଲ ହେ । ୬ ।
ଚନ୍ଦ୍ରାବଳୀ କୁଞ୍ଜେ ମାତ୍ତ ରାତ୍ରି ପୁହାଇଲ ହେ
ଲଢ଼ୁଲା ରାଧିକ କଥା କେମନ୍ତେ ପାଶୋରିଲ ହେ । ।୭।

ସଂକେତ ଦେଇ କୁଞ୍ଜକୁ ଡକାଇଣ ଥିଲ ହେ
ବାସକ ହୋଇଲା ଶଯ୍ୟା ଚଳେ ନ ସ୍ୱଭଲହେ । ୮ ।
କିଣା ଜନେ ନାଶ କରୁ କି ଯଶ ପାଇଲ ହେ
ନିରବଧି ନୟନରୁ ନୀର ବୁହାଇଲ ହେ । ୯ ।
ମନେରଖ ବନ୍ଧୁ ଆଜ ଯାହା କରି ଦେଲ ହେ
ସେଥିପାଇଁ ହେବ ପଛେ ନିଷ୍ଟେ କଲବଲ ହେ । ୧୦ ।
ମୋ ନାମ ଲଳିତା ବୋଲି ଜାଣ ନନ୍ଦଲାଲହେ
ଛଡ଼ାଇ ଦେବ ଦଣ୍ଡକେ ଏ ସବୁ ଖିଆଲ ହେ । ୧୧ ।
ଆଜ ସଖୀଙ୍କ ଯେପରି ଦୁଃଖୀ କରାଇଲ ହେ
ସେହି ପରି ଦୁଃଖୀ ହେବ ଯଶୋଦା ଦୁଲାଳ ହେ । ୧୨ ।
ଯାଉଛି ମୁଁ ସଖୀ ପାଶେ କହିବ ଏ ହାଲ ହେ
ଥାଅ ଚନ୍ଦ୍ରାବଳୀ ପ୍ରିୟ କହଇ ଗୋପାଳ ହେ । ୧୩ ।



## ରାଗ ଆନନ୍ଦ ଭୈରବୀ—ହିପଟା ତାଳ

( ଶେଜ ସୁଟଉଛି ଗୋ—ବୃତ୍ତେ )

କାହା ବତ୍ସ ତାହା ସ୍ୱପ୍ନେ ନ କଳବ ଯାହା ଦେଖିଲି ଗୋ ମା
ଆହା ନବତାରୁଣ୍ୟ ଆହା ସେ କି ଲାବଣ୍ୟ
ଆହା ବ୍ରଜେନ୍ଦ୍ର ପୁଣ୍ୟପୁଞ୍ଜ ଗୋଷ୍ଠ ଚନ୍ଦ୍ରମା ।ପଦା
କଳାହକ ନିବହ କଳାରୁ କଳ ଦେହ
ଦୋଳାରେ ନାଚୁଛି ଗୋ ମା,
ତାଳାତୁଳ ଧ୍ୱଜକୁ ଭୁଲା କୋଟି ଚଳକୁ
ବଳାଉ ଦୃଷ୍ଟି ଯାଉଗଲା ସବୁ ଗାରିମା ।୧
ନଟିଳାଳକ ଅଧ କୁଟିଳ ଭ୍ରୁନ୍ତ ମଧ
ପଟୀର ତିଳକ ଗୋ ମା,
ନଟୀ ରତ୍ନ କୁଣ୍ଡଳ ଘୋଟିଛି ଗଣ୍ଡସ୍ଥଳ
କଟୀ ପୀତ ଦୁକୁଳହା ତ୍ରିଭଙ୍ଗ ଭଙ୍ଗିମା

ଖଞ୍ଜନ ଯୁଗମଦ ଗଞ୍ଜନ ନେତ୍ର ଦ୍ୱନ୍ଦ
କି ଅନୁରଞ୍ଜନ ଗୋ ମା,
କଞ୍ଜ ସଂଯୋଗଅଳି ପ୍ରଭଞ୍ଜନେ ଆନ୍ଦୋଳି
ହେଲା ପରାଏ ଚଳ ମଣ୍ଡୁଛି ଶ୍ରୁତି ସୀମା ।୩
ଯୁବା ହକର ବର ନବାବତାର ମାର
ହବା ସେ ହୋଇଛି ଗୋ ମା,
ନିବାସ ମୁରଲୀର ଶୀବାଭୁ ସୁବଶୀର
ଜବା ଗର୍ବାପହର ଅଧର ଅରୁଣି ମା ।୪
ଗୋପାଳ କୃଷ୍ଣ ଭାଷେ ଅପାର ଦନରୁ ସେ
ଉପାୟ କଲେନ ଗୋ ମା,
ନପାଇ ଅବସର କୃପାମୟୀ ଭୁନର
ସ୍ୱରୂପ ହୋଇଲାଣି ଶ୍ୟାମ ନେତ୍ର ପ୍ରତିମା ।୫



## ଶ୍ରୀରାଧା—ବିରହିଣୀ

ବହନାରେ ମଲୟ ବାଆ
ଦହନା ବିରହେ ଭନୁ··ବେଗେ ଫେରି ଯାଆ । ପଦ ।
ଶ୍ୟାମ ବିଚ୍ଛେଦନା ମୁର୍ଚ୍ଛି ଲୁଟାଇଛି ମାୟା
ଏ ଭବ ଭବନେ ମୋର କେହି ନାହିଁ ସାହା । ୧
ରେ କଳା କୋକିଳ ବୃଥା ହେବୁ ଯେବେ ବାୟା
ଏ ସଂସାରୁ ପୋଛି ଦେବି ମୁଁ ତୋହର ନାଆଁ । ୨
କଳା କଳା ମେଘ ଘୋଟି ଦେଲେ ଉପଚ୍ଛାୟା
ମୋର ଅଭିଶାପେ ପୋଡ଼ି ହୋଇ ଯିବ ଧୂଆଁ । ୩
କଳା ଭୃଙ୍ଗ ଦେଖି ବଡ଼ ଲାଗୁଛି ଘୃନଆଁ ।
ତେଣୁ ତରୁ ଲତାରେ ମୁଁ ଜଳାଇଛି ନିଆଁ । ୪
କଳା ପ୍ରଭୁ ମୋ ଅନ୍ତରେ ନାହିଁ ଟଳେ ଦୟା
ଗୋପାଳକୃଷ୍ଣ ଭାଷଇ ହୋଇ ଅମାନିଆ । ୫



## ଶ୍ରୀକୃଷ୍ଣଙ୍କ ଅନୁଚିନ୍ତା

ତାଳ—ଏକତାଳି

କି କଲି ମୁଁ—ସିଆଣେ ବୁଦ୍ଧି ହରାଇଲି
ମନ୍ଦ ମଦନ ମାଦକେ ପଥ ହୁଡ଼ିଲିରେ । ପଦ ।

କାଳା ବଳାହକ କେଶୀ ଗର୍ବ ଖର୍ବକାରୀ ହାସୀ
ଗରବ ଦଳାଇ କିବା ଖ୍ୟାତି ଅର୍ଜିଲିରେ । ୧

ଅଭିସାରିକା ସେବାଳା କୁଂଜେ ବସି ପୁହାଇଲା
ସଙ୍କେତ ଦେଇଣ ତାକୁ ନିରାଶ କଲିରେ । ୨

ସେ ନବ ଲାବଣ୍ୟ ବଶି କେମନ୍ତେ ଧରିବ ଧୃତି
ଅମୃତ ବୋଲି ଜହର ଖଣ୍ଡ ଗୋଳିଲିରେ । ୩

ସେ ଯେବେ କରିବ ରୋଷ ଟାଣି ଦେବି କି ମୁଁ ଉଦାସ
କହିବ ଘୋର ଅଂଧାରେ ପଥ ହୁଡ଼ିଲିରେ । ୪

ନମାନିଲେ ଯୋଷାବର ଢନସ୍ୱେ ଧରିବ କର
ଗୋପାଳକୃଷ୍ଣ ଚତୁର ହାତର ଗଲି ମୁଁ ଗଲିରେ । ୫



## ବିଶାଖା ଏବଂ ଶ୍ରୀରାଧାଙ୍କ

ଉକ୍ତି—ପ୍ରତ୍ୟୁକ୍ତି

( ଗଳଣିତ ଗଳ୍ପ କଥା—ଭୃଙ୍ଗେ )

ବିଶାଖା—ହେଲା କଥା ଅଘଟନ ଗୋ କିଶୋରି !···
ଶ୍ରୀରାଧା—ସେ ଧୂର୍ତ୍ତ ଲମ୍ପଟ ପୀତପଟ୍ଟଠାରେ କରିଲି ଦୁର୍ଜ୍ଜୟ ମାନ । ୧
ବିଶାଖା—ଏ ଆଣ୍ଠୁ ରହିବ ଟିକି ଗୋ କିଶୋରି !
ଶ୍ରୀରାଧା—ଘୋଳ ଜହରକୁ ପିଇବି ବିଶାଖେ
ଯେବେ ନପାରିବି ରଖି । ୨
ବିଶାଖା—ପ୍ରାଣଥିଲେ ମିଳେ କୃଷ୍ଣ ଗୋ କିଶୋରି !
ଶ୍ରୀରାଧା—କୃଷ୍ଣ ନାମ କହି ଆଉ ଗୋ ବିଶାଖେ !
ଦିଅନା ମୋ ପ୍ରାଣେ କଷ୍ଟ । ୩

ବଣାଖା—ଏ ଜଗତ କୃଷ୍ଣ ମୟ ଗୋ କଶୋର !
ଶ୍ରୀରାଧା—କଳା ବୋଲି ସେହ୍ନ ତେଜଲ ବଣାଖେ
ପୁଚ୍ଛୁଣି କପାଇଁ କହ ।୬।

ବଣାଖା—ଧଳା ପାଖେ ଥାଏ କଳା ଗୋ କଶୋର !
ଶ୍ରୀରାଧା—କଳାକୁ ତେଜ ମୁଁ ଆଦର ନେଇଛୁ
ଅନ୍ୟରଙ୍ଗ ଭୁଲେ ଧଳା ।୫।

ବଣାଖା—କଳା ତ ଅଟେ ରଜନୀ ଗୋ କଶୋର !
ଶ୍ରୀରାଧା—ଆଲୋକ ଜଳାଇ କଳାକୁ ମୁଁ ଧଳା
କରବ ପ୍ରାଣ ସଜନୀ ।୬।

ବଣାଖା—କଳା ଯମୁନାର ନୀର ଗୋ କଶୋର !
ଶ୍ରୀରାଧା—ସେ ଜଳେ କେବେ ମୁଁ ସ୍ନାନ
ନକରିବ କହିଲ କରୁଛି ଗିର ।୭।

ବଣାଖା—ଆକାଶ କଳା ଅଟଇ ଗୋ କଶୋର !
ଶ୍ରୀରାଧା—ପ୍ରାଣେ ଥିବାଯାଏ ଭୁଲିବ ବଣାଖେ
କେବଳ ତଳକୁ ଦୃଷ୍ଟି ।୮।

ବଣାଖା—ତଳେ କଳା ଦୂର୍ବାଦଳ ଗୋ କଶୋର !
ଶ୍ରୀରାଧା—କେଦାର ପ୍ରାନ୍ତରେ ନଯାଇ
ଉଆସେ କାଟିବ ଜୀବନ କାଳ ।୯।

ବଣାଖା—ତୋ ମସ୍ତକେ କଳା କେଶ ଗୋ କଶୋର !
ଶ୍ରୀରାଧା—ଗୋଟି ଗୋଟି କର ଓପଡ଼ାଇ ଦେବ
ଲଗାଇ ଷଡ଼ି ପାଉଁଶ ।୧୦।

ବଣାଖା—ଭ୍ରୂଲତା କସ କରବୁ ଗୋ କଶୋର !
ଶ୍ରୀରାଧା—କ୍ଷୌରକାର ଡାକ ତାଆଇ ଦେଇ ମୁଁ
ପୋଡ଼ ପକାଇବ ସବୁ ।୧୧।

ବଣାଖା—ଆଖି ପତାକୁ ଭୁ ଅନା ଗୋ କଶୋର !
ଶ୍ରୀରାଧା—ଦେଖି ନକୁଏ ଯେ ତେଣୁ ତା ପାଇଁକ
ନାହିଁ ମୋ ମନେ ଶୋଚନା ୧୨।

ବିଶାଖା—ଆଖି ଡୋଳା ସବୁ କଲା ଚେ଼ା କିଶୋରି !
ଶ୍ରୀରାଧା—ଜୁଷ୍ଣ ଧରି ତାକୁ ତାଡ଼ିତ ବିଶାଖେ !
ଛିଣ୍ଡି ଯିବ ସବୁ ଜ୍ଵାଳା ।୧୩।
ବିଶାଖା—ଏ ଦୁର୍ବୁଦ୍ଧି ଛାଡ଼ ଦିଅ ଗୋ କିଶୋରି !
ଶ୍ରୀରାଧା—କରଧରି ସଖି ବିନତି କରୁଛି
ଆଜ ମୋତେ ନଜଳାଅ ।୧୪।
ବିଶାଖା—ତୁ ଆମ୍ଭର ଗଳାମାଳ ଗୋ କିଶୋରି !
ଶ୍ରୀରାଧା—ଛାଡ଼ିଦିଅ ମୋର ଆଶା ଗୋ ବିଶାଖେ
ଭାଗ୍ୟ ମୋ ଯାଇଛି ଜଳ ।୧୫।
ବିଶାଖା—ନଦିଅ ଏ କଦର୍ଥନ ଗୋ କିଶୋରି !
ଶ୍ରୀରାଧା—କି ଲଭ ଆଜ ଏ ଅସାର ଜୀବନେ
ପର କଲେ ଶ୍ୟାମଘନ ।୧୬।
ବିଶାଖା—ସବୁ କଥା ଭୁଟି ଯିବ ଗୋ କିଶୋରି !
ଶ୍ରୀରାଧା—ଭୁଟିବା କଥା ତୁ କହନା ବିଶାଖେ !
ଗୋପାଳ କୃଷ୍ଣର ଭାବ ।୧୭।

—*—

## ସଖୀମାନଙ୍କପ୍ରତି ଚନ୍ଦ୍ରାବଳୀ

( ତାଳ—ଝମ୍ପକ )

ନୟନେ ଦେଖିଲି ନାହିଁ ତାରି
ଶୁଣିଛି ମୁରଲୀ ରେ
ମନପ୍ରାଣ ଯାଚିଲି ହୋଇ
ଦେଇଅଛି ତାଳରେ
ସଙ୍ଗୀତ । ପଦ ।
ପୀତ ପଟିଆ କାହ୍ନୁ
ଭୁଲି ନୁହେ ନୟନୁ

ଲାସ୍ୟ ରତା ମିଳନ ଭଙ୍ଗୀ
ମିଶିଛୁ ତା ସ୍ୱଳନରେ
ସଙ୍ଗୀତ । ୧ ।

ହାଣିଲେ ନେତ୍ର କୁନ୍ତ
ଛନକ ଉଠେ ଚିତ୍ତ
ଜଳି ଉଠେ ଛାତିରେ ନିଆଁ
ଯାଏ ମୁଁ ଚହଲରେ
ସଙ୍ଗୀତ । ୨ ।

ହସେ ସେ ବଂଶୀଧର
ପାଲେ ପଡ଼ିଲି ଧରା
ଭରମରେ ନରମି ଯାଇ
ସରମେ ସଲିଲରେ
ସଙ୍ଗୀତ । ୩ ।

ଅପାଙ୍ଗେ ଚାହିଁ ଥରେ
ଡାକିଲା ମଧୁ ସ୍ୱରେ
କୁଞ୍ଜପଟେ ଆସ ଗୋ ଧନି
ତୁ ନବ ଛଇଳଣିରେ
ସଙ୍ଗୀତ । ୪ ।

ତା ଅପରୂପ ଛବି
ଦେଖି ମୁଁ ଗଲି ଦ୍ରବି
ନପାରିଲି ମୁରୁଛି ତଳେ
ତା ବଚନେ ଭୁଲିଲିରେ
ସଙ୍ଗୀତ । ୫ ।

ମୋ କର ଧରି ଧୀରେ
ନେଲା କୁଞ୍ଜକୁ ଖରେ
କୋଳେଧରି ଚୁମ୍ବନ୍ତେ ଗଣ୍ଡ
ମୋହିତ ହୋଇଲିରେ
ସଙ୍ଗୀତ । ୬ ।

ପୀତ ପଛିଆ ଶ୍ରୀପତି
କେତେ ରଙ୍ଗେ କଲ୍ଲ ପ୍ରୀତି
ରସାଇଲ୍ଲ ମନକୁ ମୋର
ତା ତନୁରେ ଜଡ଼ଲେ
ସଙ୍ଗାତ । ୭ ।

ରଜନୀ ଗଲ୍ଲ ପାହି
ଜାଣି ପାରିଲ ତାହିଁ
ଭସିଗଲି ମଧୁ ମାଦକେ
କାହ୍ନରେ ଭିଡ଼ିଲରେ
ସଙ୍ଗାତ । ୮ ।

ଡ଼ାକନ୍ତେ କାକ ପୀକ
ମନେ ଲ୍ଲଗିଲ୍ଲ ଦକ
ଘର କଥା ପଡ଼ଲ୍ଲ ମନେ
ବନପ୍ରେ କହିଲରେ
ସଂଗାତ । ୯ ।

ଛାଡ ହେ ଆନନ୍ଦକନ୍ଦ
ମୋର ଶାଶୁ ନଣନ୍ଦ
ଧିଙ୍ଗାସରେ ଗଞ୍ଜିବେ ମୋତେ
ମୁଁ କ ଲଜେ ସଡ଼ିଲରେ ସଙ୍ଗାତ । ୧୦ ।

ସେ ନଟପଟଲ ରଜା
କହିଲେ ବେଗେ ଯା’ ଯା’
କଣା ଏଣୀ ପରିଏ କେଡ଼ି
ପଳାଇ ଅଇଲ ରେ ସଙ୍ଗାତ ।୧୧।

ସେଦନୁ ପ୍ରୀରତିତ
ଗ୍ରନ୍ଥରେ ହେଲ୍ଲ ଗୀତ
କହନ୍ତି ଶ୍ରୀ ଗୋପାଳକୃଷ୍ଣ
ସେ ମୋର ଗଳା ମାଳରେ ସଙ୍ଗାତ ।୧୨।

—*—

## ରାଗ ଖର ହରପ୍ରିୟା—ତାଳ ମିଶ୍ରରୂପ

ମାନସ ସ୍ତବ । ରାଧା ମାଧବ
ନୂତନ ଭେଟ ମହୋତ୍ସବ ମାଧୁରୀ ।ପଦ।
ଶ୍ୟାମ କୁଞ୍ଜରେ ରାଧା ଆଜରେ
ତାର ତରଳ ତୋଳା ଖେଳା ଝୁରୁଛି ।୧
ଆଳୀ ନକର କେଳ ମନ୍ଦର
ଦୁଆର ରୁନ୍ଧି ଦେବାର କର ଧରି ।୨
ସଙ୍ଗିନୀ ବାସ ନଟେଶ ରାସ-
ରଙ୍ଗିନୀ ଅଳକାର ଲାଜେ ହେରି ।୩
ସଖୀ ହସନ୍ତ ଅନ୍ତ ଶ୍ରୀମନ୍ତି
ଆସ୍ନ ନକଟକୁ ନିକୁଞ୍ଜ ବଢାଇ ।୪
ପ୍ରେମତରଙ୍ଗ ହେମ ପଙ୍କଜ
ନେଲପର ହେବାର ନବ କଣ୍ଠୋଷି ।୫
ହେଳା ସନ୍ତୁଷ୍ଟ ଗୋପାଳକୃଷ୍ଣ
ଧୀରେ କବାଟ ପୂଟ ଟାଣି ଓଟାଇ ।୬

—✳—

## ଶ୍ରୀକୃଷ୍ଣ ଦର୍ଶନେ ସଖୀଗଣ

ତାଳ—ଯତି

ଚଳ ଆସେ ମୋହନ ମୂରତି ଗୋ । ରସବତି
ବ୍ରଜ ପୁର ଶୋଭାର ସଂପତ୍ତି ଗୋ । ରସବତି । ପଦ ।
ତେଜ ଲଜ୍ଜା ଅଭିମାନ
ବନ୍ଧୁଙ୍କୁ କର ଦର୍ଶନ
ଏ ପରି ଅଖିଳ ଜନଭୁକ୍ତି ଗୋ । ୧
ଦୂରୁ ଭ୍ରୂରୁ ନାଚବାର
ମୃଦୁକୁ ହସିବା ସାର
ଦେଖି କହ ରହିବ କା ଧୃତି ଗୋ । ୨

ଗଳେ ମାଳୋତ୍ପଳ ମାଳ

କଟୀରେ ପୀତ ଦୁକୂଳ

ଚୂଡ଼ାରେ ଖଞ୍ଜିଛି ବାସ ଫୁଲ ନାନା ଜାତି ଗୋ । ୩

ଶିରେ ବରଣ୍ଡ ମୁକୁଟ

ଶ୍ରବଣେ କେତେ ଝୁଣ୍ଟ ଝୁଣ୍ଟ

ବଜେ ବଂଶୀ ବୀର କରେ ଜଗାଣ୍ଟ ଏମିତ ଗୋ । ୪

ଏ ବନ୍ଧ ଗୃହିଣୀ ତାର

ଦନ୍ତ ଚନ୍ଦ ଜ୍ୟୋତିକାର

ନନ୍ଦଙ୍କୁ ବାଣୀ ଯେମନ୍ତ ଛାଣ ଥିଲା ଦାଣ୍ଡ ଗୋ । ୫

ନୟନେ ତଣୀ ଜଳଣ

କଟାକ୍ଷେ ମାର ମାର୍ଗଣ

ନାଗରୀ ମାରିବା ପାଇଁ ରଖିଛନ୍ତି ସାଇତି ଗୋ । ୬

ଭଙ୍ଗୀତାର ଆନ ଆନ

କୋଟି କନ୍ଦର୍ପ ସମାନ

ଦେଖିଲେକେ ମୁ ଲୁଚିବି ଟାଣି ନଜ ଧୃତି ଗୋ । ୭

ଗୋପାଳ କୃଷ୍ଣ ଭାବେ

ଅଧ ଅଧେ ସବ ସନ୍ଧି

ମନ ମୋହନ ଛନ୍ଦରେ ମିଶାଇବା ଛନ୍ଦ ଗୋ ।।



## ରାଗ ଶଙ୍କରା ଭରଣ—ମିଶ୍ର ଏକ ତାଳ

( ହଟି ବସିଛି କଶୋଷ୍ୱ ପ୍ରଭ—ବୃନ୍ଦେ )

# ସାଧକ ଦେହୋଚିତ ଲାଲସା

( ଏହି ସଙ୍ଗୀତରେ କବି ତାଙ୍କ ନିଜ ମନର ବାସନାକୁ ବ୍ୟକ୍ତ କରିଛନ୍ତି । ସଂସାରର ଅଳୀକ ମାୟାପ୍ରତି ଆକୃଷ୍ଟ ନହୋଇ ରାଧାକୃଷ୍ଣଙ୍କ ଶରଣପଞ୍ଜରେ ଆଶ୍ରୟ ନେବାକୁ ତାଙ୍କ ମନ ପାଗଳ ହୋଇ ଉଠିଛି । ଭାଷା ସରଳ ଭାବ ଗମ୍ଭୀର ହୋଇଥିବାରୁ ପ୍ରତ୍ୟେକ ସଙ୍ଗୀତ ପ୍ରେମିଙ୍କ ଏହା ଆଦରଣୀୟ ହୋଇ ପାରିଛି ।

ସଂକଳୟିତା )

ଦୟାମୟି ହସିବ ଯିବାକାଳରେ ମୋ ଜୀବ ଯିବ—ସେ
ବ୍ରଜବଧୂଙ୍କ ଅଙ୍କରେ ଥିବ ସେ ।ପଦ।

ହନ୍ତେ ବଂଶୀଶୁଣି, କରୁଛି ଜଣାଣ, ଶୁଣ ଶୁଣ ଏହି ସ୍ତବ;
ଶରଣ ମୁଁ ହୋଇଥିଲି ଯାଁ ଚରଣ ହୃଦେ ମୋର ଉଦବେହେବ ସେ ।୧
ରମଣଙ୍କୁ ନାଗବଲ୍ଲୀ ଯାଉ ଯାଉ ମୋ ଆଡ଼େ ଡୋଳା ତାଳିବ
କୃପା କଟାକ୍ଷ ପୀୟୂଷ ପଡ଼ି ମୋର ଅପଘନ ଉଲ୍ଲସିବ ସେ ।୨
ଅକଳଙ୍କ ପୂର୍ଣ୍ଣଚନ୍ଦ୍ର ମୁଖ ହସନ୍ତ ଜେଉ କ୍ଷଣି ଆଖି ଦେଖିବ
କୋଟିଏ ଜନ୍ମର ଦୁଃଖ ଦୁର ହୋଇ ଆନନ୍ଦାଶ୍ରୁ ବର୍ଷିବସେ ।୩
ଜୟ ଶ୍ରୀରାଧା ଗୋବିନ୍ଦ ବୋଲି ନାମ ବଦନରୁ ଉଚ୍ଚରିବ
ମଥାରେ ଗ୍ରନ୍ଥକୁ ଡ଼ାକିଲା ପରାଏ ମାନସରେ ଆଶ୍ରୟିବ ସେ ।୪
ଗୋପାଳ କୃଷ୍ଣ ଭଣେ ଶ୍ରୀ-ଗୁରୁଦେବ ଦତ୍ତ ଦେହେ ପ୍ରବେଶିବ
ଅରୁଣ ଅମଳ କମଳ ଅଂଘ୍ରିର ସେବାରେ ନିଯୁକ୍ତ ହେବ ସେ ।୫



## ରାଗ କୀରବାଣୀ ଝିଣ୍ଡ୍ରପଣ୍ଡି ଏକ ତାଳ

କି ଶୁଣିଲ ଆଜ ନୂଆ କରିବେ
ସଙ୍ଗଟିକି କହ ସହଚରିରେ
ଲୁ ସୁଣି କିଶୋର ମଣିକ ବିଲୋକ
ମଥାପୋଛ ଗଲୁ ଅପସରିରେ ।ପଦ।

ସ୍ମରଣା କରୁଛି ଅଦୃଷ୍ଟକୁ
ଯାହା ମୂରତି କି ଦେଖିବାକୁ
ଯୋଡ଼ିଏ ନୟନ ଦେଲୁ ବୋଲି ଯେତେ
ନିନ୍ଦା କରୁଥାଉ ବିଧାତାକୁ ।୧

କ୍ଷଣେ ନମୁ ଛୁଟୁଛି ଶଢପଟ
ବନକୁ ଯିବା ଆସିବା ବାଟ
ଜଗି ବସିଥାଉ ଶିଖଣ୍ଡି ମୁକୁଟ
ଭେଟିକୁ କେ କଲା ଏତେକୁଟ ।୨

ନିରେଖି ନଭରେ ଘନବଣକୁ
ପୁଲକାଇ ଦେଇ ଶ୍ରୀ ଅଙ୍ଗକୁ
ଯା ତନୁ କାନ୍ତିକି ଲକ୍ଷ ବୋଲି ପକ୍ଷ
ଲୋଡୁଥାଇ ପରିରମ୍ଭଣକୁ ।୩

ଗୋବର୍ଦ୍ଧନ ଶିଖରରେ ରହି
ଗୋଷ୍ଠେନ୍ଦ୍ର ସୁତ ପଥକୁ ଚାହିଁ
ବନ ବିଯାନରେ ଦ୍ୟୁମଣି ଶିଳାରେ
ଉଭାହେବା ଲୋଭ ଗଲା କାହିଁ ।୪

ଭାଷନ୍ତି ଶ୍ରୀମତୀ ହସି ଧୀରେ
ଗୁରୁଜନେ ଥିଲେ ପୁରତରେ
ଗୋପାଳକୃଷ୍ଣ କହିଲା ଠାରି କୃଷ୍ଣ
ଜଗିଛନ୍ତି ଗୃହ ବାଟିକାରେ ।୫



## ରାଗ ମାଳବ ଗୌଡ଼ା—ମିଶ୍ରଚାପ ତାଳ

( ଗଳଣିତ ଗଳ କଥାରେ—ବୃନ୍ଦେ )

କଣ୍ଟଲେ ବନ୍ଧୁ ବେଷରେ, ସଙ୍ଗାତ
ଭୁଞ୍ଜି ଯେନବାକୁ ଅନ୍ଥିକ ଆଜର ନିକୁଂଜ ବନ୍ଦାସ୍ତି ଦୋଷରେ ।ପଦ।
ବ୍ରଜ ପୁରନ୍ଦର ନନ୍ଦନ ସୁନ୍ଦର ବୃନ୍ଦ ଚଞ୍ଚ ବଲ୍ଲଭିକ
କର ଝୋଡରେ ନସ୍ଥିଲଲୁ ଇତର ଆଡ଼େ ନଡ଼ାକ୍ରୁ ଦୃଷ୍ଟିକ । ୧
ଥରକୁ ଥର ଚନ୍ଦ୍ରାବଳୀ ମନସ୍ତ ଲେଖୁ ଦନ ଅଙ୍ଗୁନାହିଁ
ଆଜ ଯେତେ ସେବା ଆଳୀ ଅଜଣାରେ ତୋତେ ଏକାସାକ୍ଷୀ ଭୁଞ୍ଜ ।୨
କ କରୁନାହାନ୍ତ ତୋର ନଞ୍ଜକର ଥୁଇ ପର ପାଶେ ଥାଇ
ତୁ ସିନା ନଷେଧ କରୁଛୁ ଅସିଲେ ସେ ଲକ୍ଷା ଲେଖିବା ପାଇଁ । ୩
ଘଡ଼ିଏ ଗ୍ରାମୁରୁ ହୋଇଲେ ଅନ୍ତର ତୋ ପାଦ ତନ୍ତ୍ରର ଧୂଳ
ବୋଲ ଦେଉଛନ୍ତ ଲୁହ ପୋଛି ପୋଛି ବୃନ୍ଦାବନ ଯାକ ବୁଲି । ୪
ଶୁଣି ସଖୀ ବାଣୀ ଶ୍ରୀ କିଶୋରମଣି ଶ୍ୟାମ ଗ୍ରାମରେ ମିଳିଲେ
ଗୋପାଳ କୃଷ୍ଣ ପଦାବ୍ଜ ପୋଛୁ ପୋଛୁ ମୋହନ କୋଳକୁ ନେଲେ । ୫



## ବୃନ୍ଦାପ୍ରତି—ଶ୍ରୀକୃଷ୍ଣ

ତାଳ—ଆଠତାଳ

ବୃନ୍ଦେ ଗୋ । ଅପରାଧ କ୍ଷମା ଲାଗି କହ ଯାଇଣକ
କାଣିକେ ମନ୍ଥ ଇ ରୋପି ଥିବା କନ୍ଦଳକ । ୧।

କଣାଜନ ଠାରେ ଜଣା
ପ୍ରଭୁ ନକରେ କରୁଣା
ଯାହା କରୁ ଉସବଶ
ଚଟେ ସ୍ଵା ଭ୍ରଳନ୍ଧ । ୧

ରସାଳସା ରସାଣାରେ
ଅବତାର ମୋ ରସାରେ

ସାକ୍ଷୀ କରି କହୁଅଛି
ମୁଁ ବର ମାଳକ । ୨

ବନ୍ଧୁ ହୋଇ କୁପିତ
କରୁ ଅଛ ହନ୍ତ ସନ୍ତ
ନିରବଧି ଚିତ୍ତକୁ ମୋ
ଦେଉଅଛ ଜାଳକ । ୩

ଜମ୍ବୁନଦ ଗୋସ୍ୱ • ଲଗି
ଜଗତେ ମୁଁ ଅନୁରାଗି
ଯୋଷାବର ଅଟେ ପିନା
ମୋ ଉତ୍ତନ ଥାଳକ । ୪

କରିବ ଯେବେ ନିର୍ଘଣ
ଭକ୍ଷି ଜାଳ କୂଟ ବିଷ
ନାଶ ହୋଇ ଛଡ଼ାଇବ
ପ୍ରାଣୁ ଦୁଃଖ ଜାଳକ । ୫

ଅନୁକଂପା ପରକାଶି
କୋପନା ମୋ ଦୁଃଖ ନାଶି
କ୍ଷମା ଦେଉ ଏଥିରକ
ସେନ ନଉ ଗ୍ଲାଳକ । ୬

ଗୋପାଳ କୃଷ୍ଣ ରଚନ
ତଳ ଗୋ ବୃନ୍ଦେ ବନ୍ଧନ
ଘେନାଇ ମୋ ଲଗି କନ୍ଧ
ନାଗଶ୍ରୀ ମଣ୍ଡଳ କ । ୭



## ରାଗ ଶ୍ରୀ—ଆଦତାଳ

ମୋହନ ଯା ଯା ଭୁ ତୁଅଁ ନା । ପଦ ।
ବାରଣ ପର ନ ଯେନ ବାରଣ ବାଳକ ପରି ଯୋନା
ବାର ଆଜ ଶ୍ରୀମିଶ୍ର ମୁଁ ପୂଜନ୍ତ ଅପସାରନ୍ତ ବନ୍ଦନା । ୧
ବାଟ ନିକଟ ନଟବର ନିପଟ ପାଟକ ଗୋପଜାତ
ହାଟ ଘାଟରେ ପଶୁପୀ ଲମ୍ପଟ ପାପ ହେବ ଅପଖ୍ୟାତ । ୨
ଅନ୍ତର ହୁଅ ଧ୍ୱାନ୍ତ ସହଚର କାନ୍ତ ଆସିବେଟି ମୋର
ସ୍ୱାନ୍ତରେ ରଖି ହନ୍ତକ କଂସକୁ କହି ପାରିବେ ସଂସାର । ୩
ଆଳୀ ଅଇଲେ ଗାଳ ଦେଇ କରତାଳ ମାରିବେଟି ଗୁଳ
ଶାଳୀ ଝାପର ସେ ଚନ୍ଦ୍ରାବଳୀଙ୍କ ଜରିବୁ ଯା ବନମାଳ । ୪
ପାଣି କୋରକୀକୃତ କରି ସେ ହରି ସେବକୀ ବୋଲ୍ ମୁହିଁ
ଜାଣି ସେବ ବୋଲ ସେବ୍ୟାନ୍ତରେ ଗୋପାଳକୃଷ୍ଣ କହଇ । ୫



## ରାଗ ଶ୍ରୀ—ଆଦତାଳ

(ନାହିଁ ମୋ ଗନ୍ତ ରୋ ବନାରେ କୁନ୍ଦରଦନା—ବୃତ୍ତେ)
କେ କି କହିକଲି ମନାରେ ଚନ୍ଦ୍ର ବଦନା । ପଦ ।

ଯାସୋର ଦେଲ୍ କେମନ୍ତେ    ଅଙ୍କେଧରି ସୁରତାନ୍ତେ
ବୋଲ୍ ମୋ ଗଣ୍ଡିର ସୁନାରେ । ୧ ।
ଆଗେ ପଠାଇ ଆଳୀଙ୍କ    ଆସିଥାଉ ଦେହଳୀକି
ପାଗ୍ଲେଣ୍ଟି ଘନଜଘନା ରେ । ୨ ।
ଚନ୍ଦୁ ମାସ ଫୁଲ ପରି    ହୋଇଥାଇ କବାଧରି
ଶୁଣିଲି ନକ୍ତି ମୋର ନାରେ । ୩ ।
ପ୍ରୀତି ବଢ଼ିଲା ପଣରେ    ନାସ୍ତି ଜଗତ ଯାକରେ
ଭଲେନଥିଲି ଭୁଲନାରେ । ୪ ।
ହସି ହସି କହେ କଥା    କହି ଯୋଡ଼ିବାର ମଥା
କାହିଁଗଲି ସେ ଛବନାରେ । ୫ ।

ଗୋପାଳ କୃଷ୍ଣ କହଇ ପର୍ବ ସର ବେଶ ହୋଇ
ଥରେ ଦଶା ହେଉ କ ନାରେ । ୬ ।



## ରାଗ ଶଙ୍କରାଭରଣ—ରୂପକ ତାଳ

ଲାଗି ଲାଗି ସଙ୍ଗିନ ମୋତେ ସରକ ପକାଇ ଦେଲୁ
ମୋହନ ହାତେ । ପଦ ।

ନାହିଁ ନାହିଁ କରୁଥିଲି ଫୁଲ ତୋଳସିବା ବୋଲି
ଘେନଗଲୁ ସେ ଭୁଲାଇ କୁଞ୍ଜବନକୁ ସଙ୍ଗତେ । ୧ ।

କେବେ ହେଲେ ସେ ବସ୍ୱର ସହି ତାଙ୍କର ତୋହର
ଅଲଙ୍ଘ୍ୟ ପଣ ବଗତା କ୍ରୁତ ନାଶିଲୁ ଇଷତେ । ୨

ବୃନ୍ଦାଜାଣିଗଲେ ଏତ ସଙ୍ଗତ ଯାକ ଯାବନ୍ତ
ହସି ହସି ମାଳା ଦେଲେ ଆଜ ବସି ମୋ ପୁରତେ । ୩

ବରଜ ଯାକ ଶୁଣିବେ ଶ୍ରୀ ପୌର୍ଣ୍ଣମାସୀ ଜାଣିବେ
ଚନ୍ଦ୍ରାବଳୀ ସର ରାଧା ହେଲା ବୋଲିବେ ଜଗତେ । ୪

ଗୋପାଳକୃଷ୍ଣ କହଇ ସେ ପଣରେ ମୁଁ ବୁଡ଼ିଇ
ସରିଛି ବଡ଼ାହ ସବୁ ଧୂଳିରେ ନାହିଁ କଥିତେ । ୫ ।



## ରାଗ କୀରବାଣୀ—ଆଦତାଳ

ସହି ତୋ ପର କେହି ଦଶୁନାହିଁ । ପଦ ।

ନାଗରୀ ଅଛିଗିରା ବହି ଦେଇଛି ପରା
ଶ୍ୟାମ ନୟନେ ତୋତେ ଲହି । ୧ ।

ପୁରତେ ଚନ୍ଦ୍ରାବଳୀ ପଦ୍ମା ସବ୍ୟାଦ ଆଦ
ଥାଉ ବୋଲନ୍ତି ରାଧେ ଚାହି । ୨ ।

ଧନ୍ୟରେ ଧନ୍ୟ ତନ ଭୁବନେ ଚନ୍ଦ୍ରାନନା
ମୋହନ ଙ୍କୁ ପାଇଲୁ ମୋହି । ୩ ।

କେଶର କକୁଞ୍ଜରେ କଣ୍ଟକମୂ ଶେଯରେ
କ ଦଶା ଆସିବଟି ସ୍ୱହିଁ । ୪ ।
ଗୋପାଳକୃଷ୍ଣ ବୋଲେ ସେହ୍ନ ସଙ୍ଗେ ମିଳଲେ
ବ୍ରଜବଧୂ ଅଛନ୍ତି ପଢ଼ି । ୫ ।



## ଶ୍ରୀକୃଷ୍ଣଙ୍କ ପ୍ରତି ସଖୀଗଣ

ନବ ନାଗର ବର ହେ
ବନା ଦୋଷେ ଗୋଇକ କଲଚ ପରହେ । ପଦ ।
ପଙ୍କ ପୁରୁଷ ତୁମେ ଉର୍ବୀ ପାଳକ
ଗରକ ଗଂଜା ବୋଲି କହନ୍ତି ଲୋକ ହେ । ୧ ।
ପୁଣି କହନ୍ତି ତୁମେ ଦୀନ ସୋଦର
ଆରତି ଆଉଁହରା ରଥାଙ୍ଗ ଧର ହେ । ୨ ।
ଆମ୍ଭେ ବରୁଛୁ ଅଛୁ ମିଛ ଏ କଥା
ନଷ୍ଟ କୁଟିଆ ତୁମ୍ଭେ ଖଣ୍ଡ ଦେବତା ହେ । ୩ ।
ରମଣୀ ମର ପ୍ରୀତି ଲମ୍ପଟ ଅତି
ପ୍ରୀତି ପାଇଁ ନବାଛ ଜାତି ଅଜାତି ହେ । ୪ ।
କନକ ଅଙ୍ଗୀ ଆମ ସ୍ୱାଇ କଣୋଗୀ
କୃଷ୍ଣ ପ୍ରାଣ ରାଧବୀ ରୂପ ଈଶ୍ୱରୀ ହେ । ୫ ।
କ ନାରଖାର ତାକୁ କଲ ମୋହନ
ଦୁଃଖୀ ନୁହ କ ଦେଖି ଦେଖି ତାର କଦନହେ । ୬ ।
କେତେ ଦୁଃଖ ପାଇଲା ତୁମର ଲାଗି
ଥରେ ହା ତୁଅ ତାର କଦନେ ଭାଗୀ ହେ । ୭ ।
ମାନ କରଛୁ ଧନୀ ଅତି ଦୁର୍ଜ୍ଜୟ
ପାର ଯେବେ ସାଇଣ କର ଆଳୟ ହେ । ୮ ।
ସବୁ ହୃଦର ଜାଣ ଚହ ନଟବର
ଛଟକେ ଭାଙ୍ଗ ସାଇ ମୀନ ପଞ୍ଜର ହେ । ୯ ।

ହେଳା କଲେ ଭେଳାଟି ଯିବ ବୁଡ଼ିଣ
ଶମନ ପୁରେ ଯିବ ତ୍ରାଣ ପରାଣ ହେ । ୧୦ ।
କେଉଁ ଉପାୟ କର ହଟାଅ କଷ୍ଟ
କରେ ଏତେ ମାଗୁଣୀ ଗୋପାଳ କୃଷ୍ଣ ହେ । ୧୧ ।



## ସଖୀମାନଙ୍କ ପ୍ରତି—ଶ୍ରୀକୃଷ୍ଣ

ଚାଳ—ଖେମଟା

ସଖୀଏ ମୋ ପାଇଁ ଥରେ କହଯା କିଶୋରୀଙ୍କ ଗୋ
କଣାଜନ ମୁହିଁ ମୋତେ ନଦେଉ ପାଶୋରି ଗୋ । ପଦ ।
ନଜାଣି କଲି ମୁଁ ଦୋଷ
କ୍ଷମା ନିଅ କଲି ରୋଷ
ଯେବେ ଦଣ୍ଡ ଦେବ ଦେଉ ସୁଚିତ୍ତେ ବଲ୍ଲରୀଙ୍କ ଗୋ । ୧ ।
ଭୁଲିଗଲି ମାଣ ଥରେ
କଣା ହୋଇ ଅନ୍ଧକାରେ
ଏଣିକି ଭୁଲିବ ନାହିଁ ଆସିବ ପଲ୍ଲିର କି ଗୋ । ୨ ।
ମୁଁ ଗଣ୍ଠିର ମୋର ତ୍ରାଣ
ବିନୁ ଅନ୍ୟ ଗତି ନାହିଁ
ପର କରିବ ସେ ଯେବେ ହେବ ବନ ଭୂରିଙ୍କ ଗୋ । ୩ ।
ନୋହିଲେ କାଳନ୍ଦୀ ନୀରେ
ଝାସ ଦେବ ବିରହରେ
ଗୋପାଳ କୃଷ୍ଣର ଗିର—ନଷ୍ଟ ଯିବ ସର କି ଗୋ । ୪ ।



## ଶ୍ରୀରାଧାଙ୍କ ପ୍ରତି—ସଖୀଗଣ

ତାଳ—ଏକତାଳି

ଗୁମାନ ତେଜ ଏଥର କିଶୋରୀମଣି
ଗୁଣ୍ଡ ନକର ପଥର । ପଦ ।
ବାରଣ ଗମନାରେ ଅକାରଣେ କମ୍ପାଇଁ
ମରଣ ଲୋଡ଼ୁ କିଛୁ ଶରଣ ତେଡ଼ି ଦେଇ
ବର ବରଣ ଦେହା
ତରଣୀ ସୁତନୟା
ମାର ମାର୍ଗଣା ଘାତେ ଉଣା ନକର ମାୟା
ଗୁଣା କର ତୋ ଲାଗି
ବଣେ ହେଲେଣି ବାୟା
ଠାଣ ପଣ ବରଜ ମଟିନେ ଆପଣାର । ୧ ।
ବଣା କୁରଙ୍ଗୀ ନୟନା—କିଶୋରୀମଣି
ନହୁଅ ଆଜ ମାନିନୀ
ଷଣ କୁସୁମ ଜଣା ତନୁକୁରେ ନସାନା
ଉଣା କନ୍ତୁ କ ଲାଗି କୃପା କାରଣ ବନା
ମେତୋ ଝଣ୍ଡିଲା ଜନ
ଭୁ'ତା ପ୍ରାଣର ପ୍ରାଣ
ଅରଣ୍ୟ ସାର ଦରେ ତୋ ଲାଗି ଶ୍ୟାମଘଣ
ଦାରୁଣ ହେଲେ ରାଣୀ !
କରଜ୍ଜିବ ସେ ପ୍ରାଣ
ଜାଣିବାର ହୋଇଛୁ ହାଣନା ସ୍ମରଣର । ୨ ।
ଜୀବନ ଯେଣ ମୋହନ କିଶୋରୀ ମଣି
ରହିବ ନାହିଁଟି ଯେନ
ବନକାନ୍ତି ଭୁ ମନୁ ନ ତେଜିଲେ ଗୁମାନ
ମନସୁତ ଜନକ ପିବ ଯମ ସଦନ
ମଦ ମଦନ ଶରେ
ଛୁଣ୍ଡି ସେ ନରନ୍ତରେ

ମାନ ମଯ୍ୟୀ ତୋ ଲଳିତ ନୟନକୁ ନିରଖିରେ
ଜୀବନ ବଲ୍ଲଭ
ଜଣ ଅଛି କବରେ । ୩ ।
ତୋ କଣା ଜନ ମୋହନା କଣୋଶ୍ରୀ ମଣି
ତାପ୍ରତି କୁହ ବମନା
କର ଧରି ତୋହର କହୁ ନାଗରୀବର
ନରକ ନାଶନର ଅରଜ ସେନା କର
ସରସିଜ ଲୋଚନା
ଦୂରକର ଶୋଚନା
ଧଣୀଧର ଖେଦ ହର ମାରି ମୋଚନ ।
ବଞ୍ଚନା କର ନାହିଁ
ଗୋପାଳକୃଷ୍ଣ ଗିର । ୪ ।



## ରାଗ କୀରବାଣୀ—ମିଶ୍ର ରୂପକତାଳ

ବୁଡ଼ିଗଲୁ ଶ୍ୟାମ ପ୍ରେମରେ । ପଡ଼ି ଭ୍ରମରେ
ଶ୍ରୀରାଧେ ରାଧେ । ପଦ ।
ବରଜ ପ୍ରାଙ୍ଗଣେ ସଖି ବରହି ନୃତ୍ୟ ନିରେଖି
ବରତନୁରୁ ଥିଲୁ ଧଇର୍ଯ୍ୟ ଉପେକ୍ଷି ରାଧେ । ୧ ।
ପଞ୍ଚବାଙ୍କି ସ୍ୱପନରେ କି ଦେଖିଲୁ ରାତ୍ରରେ
ଭାବ ଶୋକ କରୁଥିଲୁ ଧୀର ଧୀର ଧୀରେ ରାଧେ । ୨ ।
ଫୁଲପରି କଦମ୍ବର ଭୁଲି ବସିଲୁ ଶରୀର
ପୁଲକରେ ବକ୍ଷୁ ପଦେ ବଳେକୁ ମୁଦ୍ଧର ରାଧେ । ୩ ।
ସୁନାର ସୁନ୍ଦର ତନୁ ଚଳ୍ପା ନୋହେ କଲୁ ତନୁ
ଘନାବସ୍ଥା ହେଲୁ ଦଣ୍ଡେ ନ ପାସୋରି ମନୁରାଧେ । ୪ ।
ସହୀଙ୍କି ଲୁଚ୍ଛି ଦୁଃଖ ରହିଲୁ ଶୁଖାଇ ମୁଖ
ବହିକ ସୁମରି ହେଲୁ ସୁରି ଶର ଲକ୍ଷ ରାଧେ । ୫ ।

କହିଲେ ବେଶ କହିଲୁ  ନୋହିଲେ ନୋହୁ ବୋଇଲୁ
ମଧ୍ୟାକ ଦୃଷ୍ଟି ନୟନୁ ଲୁହ ବୁହାଇଲୁ ରାଧେ । ୬ ।
ଏ ପ୍ରାନ୍ତରେ ନମସ୍କରିଲେ  କୃପା ମୟୀ ଆଳୀ କୋଳେ
ଗୋପାଳ କୃଷ୍ଣ ସେବେ ସେ ଅମଳ ପଦ କମଳେ । ୭ ।



## ରାଗ ଭୈରବୀ—ମିଶ୍ରରୂପତାଳ

( ସରସିଜନ ଗୀଜନେ କଣୋଗ୍ନ—ବୃତ୍ତେ )

ଧନ କୃଷ୍ଣ ! ମାର ମୁଖଁ ଏ ବାରେକ ଦେଖରେ । ପଦ ।

ଜଳଦ ତଳେ ବସନା ରମାବର
ଜଳଦ ସୁଧାକରପ୍ରଭ ସୁନ୍ଦର ଗିର ।
କଳପ କୋଟି ସୁକୃତ ଫଳ ମୋର
ଅଳପ ଦୃଷ୍ଟିରେ ପଡ଼ୁରେ । ୧ ।

ବାରବାଣ ସୁନା ଜଡ ସୁବରଣ
କାର ଗିର ଦେନ ହୋଇଛୁ ମଣ୍ଡଣ
ସୁରସ ଦାନ ପଣକୁ ଦେବ ଦାନ
ଗଣ୍ଡ ଚେଲାଞ୍ଚଳ ଦୃଷ୍ଟିରେ । ୨ ।

ଅବାସ ତନୁ ନେଇ ସୁଖ ନିବାସ
ଦଶାଇ ମୋ ପଣ ସୁରତରେ ରସ
ହାସ ଚନ୍ଦ୍ରାଘ୍ର କରି ପରକାଶ
ବେଣୀ ନାଗମଣି ନଚ୍ଚରେ । ୩ ।

ସ୍ତର ରାଧାକେଶ ଯୀତ୍କାର ମନ୍ତ୍ରରେ
ଝାଡ଼ି ଗୁଡ଼ଇ ଦେଇ କି ନା ସତ୍ତ୍ବରେ
ଚଖାଇ ଯଶ ଅଧର ପୀୟୂଷରେ
ବରଦ ଜ୍ବର ଅଦ୍ଭୁତରେ । ୪ ।

ତୋତେ ଭୁଷାଇଲ ଢୋଲରେ ଛଇଲ
ଚରଣ ସୃଷ୍ଟିରେ କାଦା ଅରକଲ
ଗୋପାଳ କୃଷ୍ଣ ଅଙ୍ଗରେ ବାନ୍ଧୁବଲ୍ଲୀ
ଭିଡ଼ ବସା ଚୂଡ଼ ସଞ୍ଚାରେ । ୫ ।

—*—

## ରାଗ କାମୋଦୀ—ତାଳ ମିଶ୍ରଚାପ

( ଅବବେକ ଦଇବ କ ଛଡ଼ାଇଲୁ—ବୃତ୍ତେ )

ରାଧା ଭୁଷିଛି ମୋହନଙ୍କୁ ବୋଇଲେ
ହସିବେ ନାହିଁକରେ ଲୋକ ଶୁଣିଲେ । ପଦ ।

ବନରୁ ଆସିବାର କେବେହେଲେ ଉଚ୍ଚୁର
ମୀର ପ୍ରସ୍ତୁଛି ଯାର ନେହ ଯୁଗଳେ । ୧ ।

ପୀୟୁଷ ସାର ରସ ଯାର କର ପରଶ
ନୋହିଲେ ତୁହିଁ ନାହାନ୍ତ ସେ ପହିଲେ । ୨ ।

ବ୍ରଜ ବଧୂ ସ୍ତମ୍ଭରୁ ଯିବା ଆଳୀକ ଦୂରୁ
ଦେଖି ଉଠି ଯେ ଜଗ ହେଉଛି ତଳେ । ୩ ।

ବଦଗ୍ଧ ମିଥୁନର ପ୍ରଣୟ ଅମର୍ଷର
ପ୍ରାନ୍ତର ଭାବ ଜାଣିବକେ ପାରିଲେ । ୪ ।

ପୂରଥିଲେ ଗୁଆଳୀ ରାସ ମଣ୍ଡଳେ କାଲି
ବଞ୍ଚୁଥିଲେ ଯେ ଯାକୁ ବସାଇ କୋଳେ । ୫ ।

ପରସ୍ପର ଅଧର ସୁଧା ଗଣ୍ଡା ରୁ ସାର
ତେଜ ହୁଏ କ ଗୋପାଳ କୃଷ୍ଣ ବୋଲେ । ୬

—*—



## ସଖୀମାନଙ୍କ ପ୍ରତି—ଶ୍ରୀରାଧା

ତାଳ—ଛପକା

ସଖିରେ ! ଆଉ ନଶୁଣା ତା କଥା

ଶୁଣି ଲାଗଇ ବ୍ୟଥା ଭରମି ଯାଏ ମଥା
ମୁଁ ତାର କୂଟେ ଜାଣିଥା । ପଦ ।
ଦଗାଦାର ସେ ଭୃଙ୍ଗ ସ୍ୱଭକ ବହିଅଛି
ପ୍ରୀତି ପୀୟୂଷ ଲୋଭେ ଯା କଛୁ କହିଅଛି
ନାହିଁ ତାକୁ ବିଶ୍ୱାସ ନାରୀମଣ୍ଡ ପୁରୁଷ
କପଟେ କରିବ ହତ୍ୟା । ୧ ।
ମରିବ ତରହରେ କାତରେ ସହି ଦୁଃଖ
ଆଉ ମୁଁ ନ ଚାହିଁବି କେବେହେଁ ତାର ମୁଖ
ଏ ମୋର ଦୃଢ ପଣ ଜାଣ ଗୋ ସଖିଗଣ
କେବେ ନ ହେବ ଅନ୍ୟଥା । ୨ ।
ଯାହା କରିଛି ମୋତେ ସଙ୍କେତେ ବସାଇଣ
ନପାରିବ ପାଶୋରି ପିଣ୍ଡରେ ଥିଲେ ପ୍ରାଣ
ନିଷ୍ଠୁର ସେ ମାଧୋଇ ତାକୁ ପରତେ ନାହିଁ
ଜନେ ଖାଇବ ମୋ ମଥା । ୩ ।
ଜାଣି ସକଳ ଭାବ ତୁମେ ଗୋ ସଖିମାନେ
ପୁଣି କହୁଛ ତା ମଥା ଶୁଣାଅ ମୋର କାନେ
ଯୋଡ଼ିଯାଇ ଶ୍ରୀପତି ଯୋଡ଼ ଯୋଡ଼ା ପୀରତି
ବାଆକୁ ନଖଞ୍ଜି ବତା । ୪ ।
ମରିବ ନିଶ୍ଚେ ତାର ଅମିତ କଥା ଭାଳ
କରିବ ନାହିଁ ଆଉ ଜନେ ତା କୁଟିଲ ଖେଳ
ଗୋପାଳ କୃଷ୍ଣ କହି ନକର କହିଲହିଁ
ଏତି କି ମନେ ରଖିଥା । ୫ ।



## ଶ୍ରୀକୃଷ୍ଣଙ୍କ ପ୍ରତି—ବୃନ୍ଦା

ନାଗର ହେ—କାଳଆ ସୁନା

ରସିକ ମଣ୍ଡଳ ମଧ୍ୟେ ଉଡେଉ ତୁମ୍ଭ ବାନା । ପଦ ।

ଶ୍ରୀମୁଖ ଶୋଭାକୁ ବର୍ଣ୍ଣେ, ନାହିଁ ତାଁ ଉପମା
ଏ ସ୍ଥିର କଥାକୁ କପିଁ । ଦୁଃଖ ଖେଦମନା-୧
ଦୁର୍ଜୟ ମାନ କରିଛି ଶ୍ରୀମତୀ ସୁମନା
କରିବାକୁ ନ କରିବ ଅନୁନୟ ସେନା-୨
ତଥାପି କହିବି ପାଇ ତୁମ୍ଭ ଆରାଧନା
ଏ ବ୍ରଜ ମଣ୍ଡଳେ ରାଧା ଅଟେ ଶତଧନ୍ୟା -୩
ଜନମ ହୋଇଲା ମର୍ତ୍ତ୍ୟେ ରାଧା ପାଇଁ ସିନା !
ସୁଖିନୀ ନୋହିବ ରାଧା କେବେ ତୁମ୍ଭ ବିନା-୪
ଗୋପ ନଗରେ ଅଛନ୍ତି ଯେତେକ ଲଳନା
ସବୁରି ମଧ୍ୟେ ଉତ୍ତମା ବୃଷଭାନୁ ଜେମା-୫
ଗୋଲୋକନାୟିକା ସେହି ମର୍ତ୍ତ୍ୟେ ଅବତୀର୍ଣ୍ଣା
ହୋଇଛି ତୁମ୍ଭରି ଲାଗି ଜାଣ ନନ୍ଦ କାହ୍ନା-୬
ଜୀବ ପରମ ରୂପରେ ଖେଳୁଅଛି ସିନା
ଆଦି ଯେ ଅନାଦି ତୁମେ ବ୍ରଜ ମାଧୁରିମା-୭
ମୋ ଦ୍ୱାଦଶ ବନ ପାଇଁ କରେ ମୁଁ ଗରବା
ମାନମୟୀ ହେଲେ ଯାଇ ସବୁ ହେବ ଚୂର୍ଣ୍ଣ—
ବୃନ୍ଦାବନ ରାସ କେଳି ଆଦି କଳପନା
ବୃଥା ହେବ ରାଧାକୃଷ୍ଣ ଯୁଗଳାଙ୍କ ବିନା-୯
ତେଣୁ ମୁଁ କରିବି ଉଭୟ ମିଳନ କାମନା
ଗୋପାଳକୃଷ୍ଣ କହଇ ପୂରୁ ମୋ କାମନା-୧୦

—*—

# ଶ୍ରୀରାଧାଙ୍କ ଗୀତ

—କୀର୍ତ୍ତନ—

ଅଭିମାନ ଅଗ୍ନି ପ୍ରବଳ ଜଳଇ
ଗୁଇ କ୍ରୋଧେ ଜର ଜର
ଶ୍ୟାମ ନାଗରଙ୍କୁ ଆଉ ନରୁହିଁବ
ନକରିବ ଅଭିସାର
ଏଣୁ ଖେଦ ମନରେ
ବସି ଅଛି ସଦନରେ-୧

ଉଆରି କହିଲେ କଛି ନଶୁଣଇ
ନେହ୍ ଗାଲି ଗାଳେ ମାର
ଦୀର୍ଘଶ୍ୱାସ ଜୃମ୍ଭା ଉଦ୍ଗିରୁ ଉଚ୍ଚନ୍ନ
ପ୍ରାଣେ ତା କଲଣି ଘର
ଜଳଇ ଖାଲି ଅନ୍ତର
ତନୁ ସ୍ୱେଦ ଜର ଜର-୨

ପଚାରିଲେ କେହି ନଦେଇ ଉତ୍ତର
ତଳକୁ ପୋତଇ ମଥା
ଝର ଝର ଝର ନେହ୍ କହେ ମାର
ମୁଖୁ ନ ବାହାରେ କଥା
ଗୁଡ କର ବସାଣି
ଭୂତଳେ କରେ ଶୟନ-୩

ଆହାର ବିହାର ଗୁଡ଼ ଲଣି ଧମା
ସ୍ନାହାନକୁ ଯାଉ ନାହିଁ
ପିନ୍ଧିବା ବସନ ମଳ ହେଲେ ମଧ
ଧୋଇବାର ନ ଯୋଗାଇ
ଅତ୍ୟନ୍ତ କାତରରେ
କଂପଇ ବିଚ୍ଛେଦ ଜରେ-୪

ସଜନୀ ଏ ଯାଇ      ବୁଝାଇ କହିଲେ
କହେ ମୋ ପାଶରୁ ଯା ଯା
ନ ଶୁଣିବ କଳା      ଭ୍ରମରର କଥା
ଯେଣୁ ସେ ଲଂପଟ ରାଜା
ତାହା ଲାଗି ମଉଡ଼
ଗଳା ହାର ନ କରବ-୫

ଦିନୁ ଦିନୁ ତନୁ      କୃଶ ହୋଇଲାଣି
ଶ୍ୱାସ କହେ ଘନ ଘନ
ଥନ ଥନ ହୁଏ      ନୟନ ଯୁଗଳ
ଜନ ଜନ ଅପଘନ
ମନ ଯାଏ ମଉଳ
ବନ ମାଳ ଲାଗି ଗ୍ଳାନ-୬

ସଜନୀ ଏ ସବୁ      ସରୋଜ ପତର
ଆଣି ଶେଷ ସଜାବନ୍ତି
ରଶାର ବ୍ୟଜନ      ଯେଣ ଦୁଃଖତତ୍ତ୍ୱ
ପାଶେ ବସିଣ ବଞ୍ଚନ୍ତି
କେ ଚନ୍ଦନ ଗୋଳିହେଇ
ତନୁ ସାରା ଦିଏ ବୋଳି-୭

କେ କର୍ପୂର ମିଶା      ପଣାର ସିଞ୍ଚଇ
କେ ମାରଇ ପିଚକାରୀ
ଏବେବୁକୁ କେବେ      ନକରେ ଆଦର
ମାନମୟୀ ବମ୍ବାଧରୀ
କହେ କଷ୍ଟୁ ବଚନ
ଗୋପାଳକୃଷ୍ଣ ରଚନ-୮



## ଦୂତୀପ୍ରତି—ଶ୍ରୀକୃଷ୍ଣ

### ଛାନ୍ଦ-ସ୍ବର

ବିକଳ ବିକଳ ମୋର ନବଛଇଳଙ୍କ
ଜାଣି ଜାଣି ଦଳିଲି ଗୋପିକା ବଚନଙ୍କ
ଲଳିତେ । ସରିଗଲା ସୁଖ
ସରସିଜ ଦେହା ଲଭୁ ଥିବ ସିନା ଦୁଃଖ । ୧ ।
ଜଳଦ ଜା ଛଟେ ଯେବେ ବସୁଛି ଅନାଇ
ଜଳଦ ନଳମା କଳ ଭାଷା ନଶୁଣଇ
ଲଳିତେ । ସେମୋ କଳ୍ପଦ୍ରୁ ମା
ତା ବିନା ବାଳଣ ସମ ଦେଉଛି ମୁଁ ଭ୍ରମ । ୨ ।
ବିକରିବ କେଣେ ଯିବ କହଗୋ ଲଳିତା
କେମନ୍ତେ ନାଶିବ ବାନ୍ଧବୀର ମନୋ ବ୍ୟଥା
ଲଳିତେ । ଘନବାଣି ସମ
ବାଣିଜ ନେହା ନୟନୁ ବହୁଅଛି ବନ । ୩ ।
ସତେ ଗୋ ମୁଁ କି ଦ୍ବନ୍ଦ୍ବଲି କଲି କି କରମ
କରମାନ୍ତ ତନୁତାର ଦଳିଲି ମରମ
ଲଳିତେ । ବାମ ମୋତେ ଧାତା
ତେଣୁ ବଶଗୋହା ନକହୁଛି ପଦେକଥା । ୪ ।
କରଧର କହୁଛି ମୁଁ ଲଳିତେ ଗୋ ଚଳ
ଚଳାପାଙ୍ଗୀ ଚିତ୍ତୁ ଲିଭା କ୍ରୋଧର ଅନଳ
ଲଳିତେ । ନିବେଦନ ମୋର
ଅରେ ମାତ୍ର ଧନ୍ୟା କର୍ଣ୍ଣେ କରାଅ ଗୋଚର । ୫
ପରିକର ମୁଁ ତାହାର ସେ ମୋ ଆତ୍ମା ଭୂତ
ସାଜେ ତାର ସୁପ୍ରସନ୍ନତା ସର୍ବଦା ମୋ ପ୍ରତି
ଲଳିତେ । ନଲେତ ନିବାଣ
ଯମଣ ତେଜିବ ଭକ୍ଷି କାଳକୂଟ ବିଷ । ୬ ।

ରାଧା-କୃଷ୍ଣ ବେନି ବ୍ରହ୍ମାଣ୍ଡର ଶ୍ରେଷ୍ଠଧବ
ରାଧାହାନ କୃଷ୍ଣ ପ୍ରାଣ କାନ୍ଥିଁକ ରହିବ
ଲଳିତେ । ଯଣ ମାଲଥାଉ
ଗୋପାଳକୃଷ୍ଣ ଘଟଇ କୃଷ୍ଣ ପ୍ରାଣପାଉ । ୬ ।

---

## ଶ୍ରୀକୃଷ୍ଣ ପ୍ରତି ଲଳିତା

( ତାଳ—ଏକତାଳ )

ଯାଉ ନହୁଅ ବଂଶୀଧାରୀ ହେ
ମିଳାଇବ କଶୋର କିଶୋରୀ ।
ମୋ ନାମ ଲଳିତା ଯେତେକି ଜାଣିଥା
ନଯିବ କେବେହେଲେ ପାଶୋରି
ବୃଷାକପି ଧେନା ତରଣୀ ନନ୍ଦନା
ହେବ ତୁମର ଗଳେ ହୋରସି । ୧ ।
ଅଭ୍ୟମାନେ ଧର୍ମୀ ହୋଇଛ ମାନଗା
ଜାଣି ଇଥାଙ୍କ ଦଣା ବସ୍ତୁରି
କଣ୍ଠ ଦେଇ ଖଣ୍ଡ ପଣ କଲ କୃଷ୍ଣ
କହ କ ହୋଇଥିଲ ତାହାରି । ୨ ।
ନାଗରୀ ମୁକୁଟ ଶିରରେ ଗଲସ୍ତୁ
କଷ୍ଟ ହୋଇଛି ଜାଣ ବକାରି ।
ଦାବାଗ୍ନି ରୁ ଜଳ ଘୃତ ଯାଏ ଜଳ
ତେଣୁ ସନ୍ତୋଷ କୃଏ ସେ ଦ୍ୱାରି । ୩ ।
ବନଯୁ ବଚନ ପ୍ରତି ଶୁଣିଲେ କର୍ଣ୍ଣେ
ନହେଲ ଜାଣେ ଅଶ୍ରୁ ନଗାରି
କରଜ ମୂନରେ ମଥାକୁ ବଦାରେ
ତୁମର ଜଷ୍ଟୁ କତା ସୁମରି । ୪ ।

ତଥାପି ମୋହନ ତୁମନିବେଦନ
କହିବା ପାଇଁ ଇଚ୍ଛା ମୋହର
ହେଉ ଯା ହେବାର ସଙ୍ଗିମାନ ମୋର
ଶୁଣାଇ ଦେବ ଥରେ ଫୁକାର । ୫ ।
ନଦେଖିବ ଶ୍ୟାମ ତୁମରି ବଦନ
ନ ଢାଳ ଆଉ ନୟନୁ ବାରି
ଦେଖିଏ ଅବସ୍ଥା ଚିତ୍ତେ ଲାଗେ ବ୍ୟଥା
କି ଶୁଖିଗଲ ତୁମେ ଅପାର । ୬ ।
ଯାହା ଦରଶନ ଲାଗି ପଦ୍ମାସନ
ନିରତେ ହୋଇଛନ୍ତି ଭିଖାରି
ବୃଷା ବୃଷାସନ ଅଦିତି ନନ୍ଦନ
ଶ୍ରିୟାଭର୍ତ୍ତ ଡାକନ୍ତି ଶଙ୍କାର । ୭ ।
ବୀଣା ପାଣି ଯାର ସେବକ ଆବର
ପଦ ସ୍ଥପନ୍ତି ସିନ୍ଧୁକୁମାରୀ
ସେ ପ୍ରଭୁଙ୍କୁ ସ୍ଥିର କି ଲୋଡ଼ା ମାତର
ଗୋପ ପୁର କୁଞ୍ଜିତା ଆଦର । ୮ ।
ଯେବେ ହେଲା ଶ୍ରଦ୍ଧା ତେବେ କି ସେ ବାଧା
ନୋହିବ ପଦପ୍ରାନ୍ତେ କିଙ୍କରି
ଗୋପାଳ କୃଷ୍ଣର ଭରସା ବଂଶୀଧର
ଆସ ମୁଁ ଥିବ ବକ୍ଷରେ ଧରି । ୯ ।



## ଗୋପୀମାନଙ୍କର ଉକ୍ତି

### ତାଳ—ଝପକା

( ହୃଦ କୁମୁଦ ବନ୍ଧୁଙ୍କୁ—ବୃତ୍ତେ )

କଳିନ୍ଦଜା କୂଳେ କାଲି ମୋହନ ଘାଟ
ଓଗାଳିଲେ ସଜଣି ଲେ ଆମ୍ଭଙ୍କୁ ବାଟ । ପଦ ।

ନାନାରଙ୍ଗେ ଯୁଟି କନ୍ଧ — ଘାଟ ମାଗିଲେ ଗୋ ସନ୍ଧ
କଥା କଥାରେ ଭାଙ୍ଗିଲେ ସବୁରି ଆଣ୍ଠ । ୧

କକ୍ଷରେ ଜଳ ମାଠିଆ — ଘାଦ ଭାଙ୍ଗି ଦେଲୁ ଠିଆ
ବୋଇଲୁ ବିନମ୍ରେ ଶୁଣ ହେ ନନ୍ଦସୁତ । ୨ ।

ଆମ୍ଭେ କୁଳ ବୁଆସୁଣୀ — ଆସିଛୁ ନେବାକୁ ପାଣି
ଜାଣିଲେ ଶାଶୁ ନଣନ୍ଦ ବସିବ ଦାଟ । ୩ ।

କେବେ ଘାଟ ମାଗ ନାହିଁ — ଆଜ ଛଟକ କପାଇଁ
ଗୁଡ଼ ଗୁଡ଼ କାହ୍ନୁ ବୁଆ ନଲଗା ନାଟ । ୪ ।

କହିବୁ ରାଣୀଙ୍କୁ ଯାଇ — ସେ ଆସି ନେବେ ଧରାଇ
ଫଟାଇବେ ପିଠି ମାରି ଚେନ୍ଦୁଲ ଘାଟ । ୫ ।

ଆମ୍ଭ କଥା ଶୁଣି ବଂଶୀ- — ଧାରି ମୃଦୁମନ୍ଦେ ହସି
ବୋଇଲା ଗୋ ଗୋପି କେତେ କର ମୁଖଟ । ୬ ।

ଖାତ୍ରୀ ଦେଇ କଂସ ମୋତେ — ଘାଟ ଜଗାଇଛି ଏଥେ
ନଦେଲେ ଛାଡ଼ିବ ନାହିଁ କଥା ନିରାଟ । ୭ ।

ଶୁଣି ଭାଇ ଚଲି ଆସି — ନଚଳିଲୁ ପାଦ ପାଣି
ବେଳକୁ ବେଳ ଏମନ୍ତ ହେଲା ଉଚାଟ । ୮ ।

ଆମ୍ଭଙ୍କୁ ଦେଖି ନୀରବ — ନଟକୁଟିଆ ମାଧବ
ଭାଙ୍ଗିଲେ ମାଠିଆ ଛନେ ହନ୍ତୁଲ ପାଟ । ୯ ।

ଲାଜେ ମୁହଁ ଯୋଡ଼ାଇଲୁ — ବାପେ ଦୁଃଖେ ଲେଉଟିଲୁ
ଗୋପାଳ କୃଷ୍ଣ ଭଜନ୍ତି ଘାଟର ନାଟ । ୧୦ ।



## ଯଶୋଦାଙ୍କ ପ୍ରତି ଗୋପୀଗଣ

( ତାଳ—ଝୁଲ )

ଯଶୋବନ୍ତୀ ମାଏ ଶୁଣ । ତୋର କାହ୍ନୁଙ୍କର ଗୁଣ
ଯେତେ ଦୁଷ୍ଟା କରେ ବ୍ରଜ କଣ୍ଟକରେ
ଯଶୋବନ୍ତୀ ଗୋ
ତେଜ ସଜ୍ଞ ଗାରବ ପୁଣ । ୧ ।

ଦଧି ଦୁଗ୍ଧ କରେ ଚୋର । କହିଲେ ଗୋଡ଼ାଏ ମାରୁ
ଆକଟ କର ଯେ କହେ ଆଗସର
ଯଶୋବନ୍ତୀ ଗୋ
ଶାଢ଼ୀ ଟାଣୁ ଦଏ ଚର । ୨ ।

ଲୁଚି ଲୁଚି ପଶେ ଘରେ । ଭାଣ୍ଡ ଦେଖେ ଶିକାପରେ
ଜଷ୍ଟି ହାତେଧରି ଭାଣ୍ଡ କଣାକରି
ଯଶୋବନ୍ତୀ ଗୋ
ଧାରକୁ ତୁଣ୍ଡ ପ୍ରସାରେ । ୩ ।

ସରଲବଣୀ ଚୋରାଇ । ମୁଖରେ ଦଏ ପୁଛାଇ
ପଳାଇବାକାଳେ ଯତ୍ନେ ଗୋଡ଼ାଇଲେ
ଯଶୋବନ୍ତୀ ଗୋ
କର ଯୋଡ଼େ ମୁଣ୍ଡେ ନେଇ । ୪ ।

ପିଲାଙ୍କୁ ମାରଇ ଡାକ । କହିଲେ ଦେଖାଏ ଆଖି
ବେଶି ଯେ କହେ ତା ହାଣ୍ଡି ଭାଙ୍ଗି ଦଏ
ଯଶୋବନ୍ତୀ ଗୋ
ସବୁ କଥା ଦଏ ଫାଙ୍କି । ୫ ।



## ମନଃ ଶିକ୍ଷା

### ରାଗ—କଲ୍ୟାଣ ଆହାର

( ଝୁମ୍ପା ତାଳ )

ସାଧରେ ମାନସ । ଶ୍ରୀ ବ୍ରଜଦେଶ ନ ଭୁଲ ବିଷୟ ଗନ୍ଧେ
ବାରେ ବାରେ କହୁଛନ୍ତି ତୋତେ ସଡ଼ନା ଜଂଜାଳ ଦ୍ୱନ୍ଦେ । ପଦ ।
ଶ୍ରୀକୁଣ୍ଡ ନୀରେ ମୁଣ୍ଡ ବୁଡ଼ାଇ କୁଣ୍ଡରେ ବୋଲ ରାଧେ
ସୂର୍ଯ୍ୟକାନ୍ତ ଭୁଲେ ଶ୍ରୀ ସ୍ୱାମିନୀ ଦଶାଦେବେ ପ୍ରେମାନନ୍ଦେ । ୧ ।
ସୁନ୍ଦରରୂପା ସଖୀ ଦୁହନ୍ତ ସ୍ନେହେ ବୁଦ୍ଧି ଭସି ହସି ମନ୍ଦେ ମନ୍ଦେ
କୁଞ୍ଜ ବିଦ୍ୟାଙ୍କର ସୂତ୍ରରେ ଗଣିବେ ମଞ୍ଜରୀ ମଧ୍ୟେ ସାନନ୍ଦେ । ୨ ।
ଶ୍ରେଷ୍ଠା ଅଷ୍ଟଆଳୀ ମାନସରେ ଭଜ ସେବାଯାଞ୍ଚ ଦେଇଁ ଶ୍ରୀଙ୍କେ
କଂକଣ ବିଧାନେ ଥିବୁ ସାବଧାନେ କୁଞ୍ଜ ମନ୍ଦିର ଅଳିନ୍ଦେ । ୩ ।
ମଧ୍ୟାହ୍ନ ଲୀଳାରେ ବୃନ୍ଦାବନେଶ୍ୱରୀ ଆରାଧି ଯାଇଁ କାନନେ
ମୁଖବାଦ୍ୟ ତାନେ ସୁଗାନ୍ଧ ଗମନେ ସଙ୍ଗେ ନେବେ ସଖୀବୃନ୍ଦେ । ୪
ଶ୍ରୀ ଲଳିତାଦି ସଖୀଙ୍କ ଗହଣେ ରଙ୍ଗ ଚଳିବୁ ସ୍ୱଚ୍ଛନ୍ଦେ
ବ୍ରଜେନ୍ଦ୍ରଙ୍କ ଜାର ରସ ଚରିତରେ ରସିଥିବୁ ପ୍ରେମବନ୍ଧେ । ୫
ଅଠଯାମ ଯାକ ଖଟଣୀ ଖଟିବୁ ମହା ଆମୋଦ ପ୍ରମୋଦେ
କହଇ ଗୋପାଳ କୃଷ୍ଣସ୍ୱାନ୍ତେ ଭଜ ଯୁଗଳ ପଦାରବିନ୍ଦେ । ୬

—✻—

## ଶ୍ରୀ ଶ୍ରୀ ରାଧାଙ୍ଗ ବର୍ଣ୍ଣନା

ଶ୍ଲୋକ

ନବ ଗୋରଚନା ଗୌରୀଂ ପ୍ରବରେନ୍ଦୀ ବରାମ୍ବରାଂ
ମଣି ସ୍ତବକ ବିଦ୍ୟୋତି ବେଣୀ ବ୍ୟାଲାଙ୍ଗନା ଫଣାଂ ।

( ରାଗ କଳସା )

ଜୟ ଶ୍ରୀରାଧେ ଶ୍ରୀରାଧେ ବୃନ୍ଦ ବିଧୁାନନା
ଅଭିନବ ଗୋରୋଚନା ନିନ୍ଦିତ ବରନା ଗୋ ।୧
ଲାବଣ୍ୟ ଶ୍ରୀଅଙ୍ଗ କାନ୍ତି ଶୋଭା ମାଧୁରିମା
ନୀଳ ପଟ୍ଟ ଶାଢୀ ସ୍ୱର୍ଣ୍ଣଜରି ବୁଟାରମା ଗୋ ।୨

ସୁରଙ୍ଗ ଉତ୍ତଂସ ଉପବର୍ଣ୍ଣ ମନୋହର
କଳା ଭୁଜଙ୍ଗିନୀ ଜିଣି ବେଣୀ ସୁନ୍ଦରତର ଗୋ ।୩
ରତ୍ନଗୁଚ୍ଛ ବିଚକିଳ ସୁମନସ ପନ୍ତି
ଗଗନେ ନକ୍ଷତ୍ରାବଳୀ ପ୍ରାୟେ ଶୋଭା ଭଥି ଗୋ ।୪
ସୁନଆଲୀ-ମାଳିକା ବେଷ୍ଟିତ ଗଙ୍କ ତୋର
ଗୋପାଳକୃଷ୍ଣର ସେବ୍ୟା କୃଷ୍ଣଧୃତି ହରା ।୫

—*—

## ଶ୍ଳୋକ

ଉପମାନ ଘଟାମାନ ପ୍ରହାର ମୁଖମଣ୍ଡଳାଂ
ନବେନ୍ଦୁ ନିନ୍ଦ ଭାଲୋଦ୍ୟତ୍ କସ୍ତୁରୀ ତିଳକ ଶ୍ରୀୟଂ । ୨

( ରାଗ—ଆଷାଢ଼ ଶୁକ୍ଳ )

ଅଖିଳ ଉପମା ଜିଣି ଶୋଭନା
ସେ ସୀମା ସମକୁ ନାହିଁ ତୁଳନା
କୋଟୀନ୍ଦୁ ନିନ୍ଦ ଶ୍ରୀମୁଖ ମଣ୍ଡଳ
ନବେନ୍ଦୁ-ଜିତ ଲଲାଟ କପାଳ
କସ୍ତୁରୀ ତିଳକ
ଶିଶୁଅଳି ଆଳି କି ସେ ଅଳକ । ୧

—*—

## —ଶ୍ଳୋକ—

ଭ୍ରୂଜି ତାନଙ୍ଗ କୋଦଣ୍ଡାଂ ଲୋଲ ନୀଳଳା କା ବଳୀଂ
କଜ୍ଜ୍ୱଳୋ ଜ୍ଜ୍ୱଳତା-ରାଜ-ଚକୋରାଭ ସୁଲୋଚନାଂ ।୩

## ରାଗ—ମଧୁଶ୍ରୀ

ଭ୍ରୂଯୁଗଳ ଚଉପାଟି ସ୍ମର ଚାପ ନିନ୍ଦେ
ଉଜ୍ଜ୍ୱଳ କଜ୍ଜ୍ୱଳ ନେତ୍ରଯୁଗ ଅରବିନ୍ଦେ
ମନ୍ଥନ କରଇ ମତ୍ତଚକୋରଣୀ ଗର୍ବ
ଲୋଳ ନୀଳାଳକାବଳୀ ହୁଅଇ ପ୍ରଗଳ୍ଭ ।୧

—*—

## ଛାଲଝୁଲି

( ସଜନୀରେ ଆଜ—ବୃନ୍ଦେ )

ମିତଣୀରେ—ସେହ୍ନି କଳା କହ୍ନାଇ
ଠାର୍ ଆଖି କୋଣେ ଡାକି କୁଞ୍ଜବନେ
ଖଣ୍ଡପଣତାର ଦେଲା ଚହ୍ଲାଇ ।ପଦ।
ମଧୁରେ ମୁରଲୀ ବଜାଇଲା
ଆଖିରେ ମୋହିନୀ ରଞ୍ଜାଇଲା
ସଜା ଦେବାପାଇଁ ବଚନେ ମଜାଇ
ଚିତ୍ତ ମନ ସବୁ ନେଲା ମନାଇ ।୧
କୋଳେ ଧରି ଚୁମ୍ବଦେଲା ଗଣ୍ଡେ
ରସିଲା ଭସିଲା ହସି ସୁଖଣ୍ଡେ
ଦଣ୍ଡକ ମଧ୍ୟରେ ତା ପଦ୍ମ ପାଦରେ
ଛନ୍ଦଦେଲି ଚିତ୍ତ ହୋଇ ମୁଁ ବାନ୍ଧି ।୨
କେତେ ମତେ ପ୍ରୀତି ଜାଣେ ଗୋ ସେହି
ବଶ ନୋହିବ କେ ରମଣୀ ହୋଇ
ମନେ ପଡେ ମିତ ସେଦିନ ସୁରତ
ତିଳେ ହେଲେ ମନ୍ତୁ ପାଶୋରି ନାହିଁ ।୩
ମନେ ପଡେ ସେହି ଚନ୍ଦ୍ରମା ମୁଖ
ଦେଖି ହରେ ଯାହା କୋଟିଏ ଦୁଃଖ
-ଗୋପାଳ କୃଷ୍ଣର ମାନସ ଭ୍ରମର
ଲୋଡ଼ୁଅଛି ସୁଧା ସେ ପଦେ ଯାଇ ।୪



## ବଂଶୀ ବାଦନ

( ତାଳ—ଝୁଲା )

ବାଜ—ବାଜରେ ମୁରଲୀ-ବାଜ ବାଜ ରାଧା ବୋଲି
ଅଖିଳ ବିଶ୍ୱ-ଆନନ୍ଦ ସୁନ୍ଦରୀ ଲଳିତା ।ପଦ।
ପୂରଣ ଅଙ୍ଗୀ ସରଳା ହାସ୍ୟ ଲାସ୍ୟମୟୀ
କୃଷ୍ଣ ପ୍ରିୟା ଭାନୁସୁତା କୁବଳୟ କଳି ।୧
ଅପରୂପା ରାସେଶ୍ୱରୀ ଶ୍ରୀମତୀ କିଶୋରୀ
ହାସ୍ୟମୟୀ, ରାଇ, ବିନୋଦିନୀ ରସ କଳି ।୨
ଆଭୀରବର ବରଜ କଟକ ଆଲୋକ
ବୃନ୍ଦାବନ ମଣ୍ଡନା ଗୋପୀକା ପ୍ରିୟ ଆଳି ।୩
ନନ୍ଦ ନନ୍ଦନ ସାହାର ଗଳାରତ୍ନ ହାର
ତା ପଦେ ଲୋଟୁ ଗୋପାଳ କୃଷ୍ଣର ମଉଳି ।୪



### ତାଳ—ଏକତାଳି

ଶ୍ୟାମଳ ସୁନ୍ଦର ତନୁ ଧାରିଲାରେ
ନେହାନ୍ତ କୁନ୍ତ ପ୍ରହାର ସାରିଲରେ ।ପଦ।
ଅଭିସାରକୁ ମନ ହେଲାଣି ଛନ୍ନ ଛନ୍ନ
ବନଜ ନେତ୍ରୁ ବନ ଝରିଲାରେ ।୧
କୁଳ ମାନ ବରଜ ଶିଖି ଚୂଳକୁ ହେଜ
ବାଳିକୁଳ ମରମ ଥରିଲାରେ ।୨
ଯୋଡ଼କ ଯୋଡ଼ ହୋଇ ଚଳଲେ ଗୋପ ଗୋଷ୍ଠ
ନିକ୍ୱଣେ ଅରଣ୍ୟାନ ପୂରିଲାରେ ।୩
ଏକେ ଶରଦ କାଳ ଶଙ୍କସ୍ୱ ପରିମଳ
ମାନସ-ମଳ ସାଧୁ ହରିଲାରେ ।୪
ବାଜିଲା ମୃଦୁସ୍ୱରେ ଶ୍ୟାମବଂଶୀ ମଧୁରେ
କୁଳବଧୂ ସୁମାନ ସରିଲାରେ ।୫।

ରାସ ରସାଳ ହସ      କର୍ଣ୍ଣ ବେଣୀ ଭୁଜ ନାସ
ପ୍ରାଣେ ମୃଦୁ ଉଚ୍ଚାଟ ଭରିଲାରେ ।୭।
କୁଞ୍ଜ ମିଳନ ଆଶେ      ଗୋପାଳକୃଷ୍ଣ ଘୋଷେ
ପୀକ କଣ୍ଠୁ ଅମିୟ ଝରିଲାରେ ।୭।

—✕—

## ଶ୍ରୀକୃଷ୍ଣଙ୍କ ପ୍ରତି—ଗୋପୀଗଣ

( ତାଳ—ଖେମଟା )

ନଟ ପଟଳ ମୁକୁଟ-କଟାକର ଏତେ ଝଟ
ଜଣାଗଲା ତୁମ୍ଭ ଆଜ ଅଟ କପଟ ଲମ୍ପଟ ।ପଦ।
ବଂଶୀ ସ୍ୱନରେ ଡକାଇ      ବଧୂଜନାଙ୍କୁ ଠକାଇ
ଆହେ ବକାରିବ ତୁମ୍ଭେ ହେଲ କିଓଁ ଏତେ ଶଠ ।୧।
ଖୋଲସତ୍ତ୍ୱ ବ୍ରଜବାଳୀ      ମନ୍ଥୁରୁ ତୁମ୍ଭଙ୍କୁ ଭଳି
କାଞ୍ଚି ଅଙ୍କ ବନମାଳୀ ଶ୍ରୀମୁଖ ଦେଖାଅ ସ୍ପଷ୍ଟ ।୨।
ଦସୁଛି ଶରଦଶଶୀ      ବନଭୂମି ହସେ ହସି
ବଜାଅ ମୋହନ ବଂଶୀ ତନ ତନ ପ୍ରୀତଗଣ ।୩।
ବାଳକୂଳେ କସି କସି      କାନ୍ଦୁଛୁ ସବୁ ସୁକେଶୀ
ଲୁଚନା ଆଉ ହେ ବଂଶୀଧାରୀ କରି କପଟ ।୪।
ଏନାଗଣ ମନ୍ଥ ଶେଭ      ଚେଳ ମନକୁ ଶ୍ରୀପଦ
ଦରଶନ ଦିଅ ଧାଉଁ କହଇ ଗୋପାଳ କୃଷ୍ଣ ।୫।



## ରାଗ ସାବେରୀ—ତାଳ ଆଠତାଳୀ

( ବଂଶ ଶୁଣାରେ । ବନା ତୋ ପ୍ରୀତିରେ—ବୃତ୍ତେ )

ଯୋଷାକର ରେ ।

ଘୋଷାଇଲଣି କେ ତୋତେ କରୁ ଅନାଦର । ଘୋଷା ।

ରସାମଣ୍ଡନା ସୁଖ ସାଲସା ।

ତୋହ ବିନେ କେ ମୋର ଭରସା ?

ପ୍ରଣ କୂଳାବେଲେ ଶଶା-ଦଶା

ଲଭିବାର ସାର ହେବ ଜାଣନ୍ତୁ ନକର । ୧

ତୋର ବଶ୍ୟରକୁ ଯେବେ ମୁହିଁ

ଅପରାଧୀ ହୋଇଛୁ ସୁ ମୁହିଁ,

ଦଣ୍ଡଦଅ ଇଚ୍ଛାମତେ ସହି

ଅଛି ଲପଣାଚ ଚ୍ଛମୁରେ ତ ଏ କିଙ୍କର । ୨

କରଧର କହୁଛିରେ ବାଳୀ !

ଅନା କରୁଣା କଟାକ୍ଷ ଢାଳ

ନୁହ ଗୁମାନ ମୋ ଗଳା ମାଳ

ଚଖା କିନା ଅରେ ଧନ । ତୋ ସ୍ନେହ ଶାକର । ୩ ।

ରସ ରଙ୍ଗିଣୀ ପ୍ରାଣ ସଂଗିନୀ ।

କଷ କାହୁପାଶେ ଭ୍ରୂଭଙ୍ଗିନୀ ।

ଯଶ ରଖ ଶିଶୁଷ ଅଙ୍ଗିନୀ ।

ଢଣ ଗୋପାଳକୃଷ୍ଣର ଅଙ୍କ ତଳ୍ପପର । ୪ ।



## ରାଗ ଦେଶବରାଡ଼ି—ତାଳ ଆଠତାଳୀ

( କହରେ ସଜନ ! ଅଜ ଏ ରଜନୀ—ବୃତ୍ତେ )

ହେ ମନ୍ଦରଧର, କନ୍ଦର୍ପ ସୁନ୍ଦର ! ତମନ୍ତ୍କୁ ସୁନ୍ଦର ଏ ହେଲା କ ?

ଅବଳା ମାରଣ ଶବ୍ଦ୍ୟାନ୍ତିଣ କାହିଁ ଶିଖିଥିଲ ହଠ କଉତୁକା ।ପଦ।

ଭୁମ୍ଭଳାଗି ମୋର ଜୀବନ ସଂଗିନୀ

ହୋଇଲଣି ଆହା କ ଦୁଃଖଭାଗିନୀ

ଦେବାରୁ ନବୀନା ପ୍ରୀତି ସୋହାଗିନୀ
ତାର ପ୍ରତିଫଳ ଏହି ନକ । ୧
ଅକଥନୀୟ ତା ଦୁର୍ଦ୍ଦଶା କାହାଣୀ
କହି ଆସୁଁ ମୁଖେ ନ ସ୍ଫୁରଇ ବାଣୀ
ଆହା ଦେଖିଲ ଯା ଏମୋର କଲଜା
ହୋଇ ଯାଉଅଛି ଚିକ ଚିକ । ୨
ବିରହ ଅନଳ ତାପ ପଡ଼ୁଁ ବଳ
କୋମଳ ତନୁଟି ଯାଉଅଛି ଜଳ
ସେ ଖରତାପ ସହନେ ଅସମର୍ଥ
ମୃତପକେ ଲୁଣ୍ଠଇ ବିଧୁମୁଖୀ
ତୁମ୍ଭେ ସୁପୁରୁଷ ଶିରୋମଣି ବୋଲି
ଜଗତେ ବିଖ୍ୟାତ ଯଶ ବନମାଳି
ଏବେ ନାରୀବଧ ବିପୁଳ କଳଙ୍କେ
ସେ ସୁଖ୍ୟାତି ଲୁପ୍ତ ନୋହିବ କି । ୪
କେ କେତେ ଆଶ୍ୱାସ ଦେଇ ସଖୀଗଣ
ଶାନ୍ତ କରିବା ଚେଷ୍ଟାରେ ଅନୁକ୍ଷଣ
ତା ଖିଷଣ ବେଦନାର ପରିମାଣ
ଅବୋଧରୁ ସର୍ବେ ଅଶ୍ରୁମୁଖୀ । ୫
ତବ ଅଙ୍ଗ ସ୍ପର୍ଶ ପ୍ରତିଜ୍ଞାରେ ମାତ୍ର
ପ୍ରାଣଧରି ରହିଅଛି ଏପର୍ଯ୍ୟନ୍ତ
କହଇ ଗୋପାଳକୃଷ୍ଣ ମୁଁ ଏମନ୍ତ
ଜାଣେ ଅନୁମାନେ ଅବଲୋକି । ୬



# ଶ୍ରୀକୃଷ୍ଣଙ୍କ ଖେଦ

## ରାଗ ପୂରବୀ—ଖାଲ ସ୍ଥୁଲ

( ଶ୍ୟାମବଂଧୁଙ୍କୁ ଅରତେ ଦେଖିବ—କୃଷ୍ଣେ )

ମୋହର ଲଳନା ତୁ ରୁଷ ନା ଆଜରେ
ଏରୂମାନ ଧନ, କର ତ୍ୟାଜରେ । ଘୋଷା ।
ଅସିତ କୁନ୍ତଳା ରସିକା ଛଇଳା
ଟେକ ମୁଖ ଦ୍ୱିଜ ରାଜରେ । ୧
ତୋ ବଚନ ସ୍ୱରେ ସ୍ମର ତୀକ୍ଷ୍ଣ ଶରେ
ଅଙ୍ଗ ଢଳସେ ଭରଜରେ । ୨
ଏଣୀଦୃଶୀ ବେଣୀ ଶୋଭେ କଣ୍ଠ ଶ୍ରେଣୀ
ତନାସ ନାଗିଣୀ ବ୍ୟାଜରେ । ୩
'ସେନ ଭସାଲସା ଭ୍ରୁଜରେ ନହସା
ପର ପଦ୍ମିନୀ ସମାଜରେ । ୪
ତୋ ମୁଖ କମଳ ନପକା ଅଦଳ
ଆଲି ମେନେ ଦେଇ ଲାଜରେ । ୫
ପ୍ରବୋଧ୍ୟ ଗୋପାଳ- କୃଷ୍ଣ କହେ ଭାଳ
କୃପାଦୃଷ୍ଟି ରଜ ରାଜରେ । ୬



## ରାଗ ଖମାଚ—ଆଦିତାଳ

( ନ ଗଙ୍କରେ ଶୁଙ୍କଙ୍କ ଘରଣି ଦୁଅସାହା—କ୍ଷୁବେ )

ଜନେ ଜାଣିଲେନ ବୋଲି ତୁ ଏକାନ୍ତଜାଣୁ
ବଞ୍ଚାଇ ସଜନ ମୋତେ ବଚନରେ ଛଣୁ । ଘଦ ।
ନବ ମାରଦକୁ ଦେଖି ଆଖିର ପଲକ ରଖି
ଏପରିଚ୍ଛବିକେ ଅଛୁ ବୋଲୁ ସାହା ଭଣୁ । । ୧ ।
ଥରକୁ ଥର କାନନ ବାଟକୁ ଅନାଉ ଧନ
ଅଣ୍ଡ ନାହିଁ ଅପରାହ୍ଣ କାଳ ନ ହେଉଣୁ । ୨ ।
ଲୁଣ୍ଡକର ସକୁଟରେ ବଂଚ ଗ୍ରନ୍ଥ ତା ପାଶେ ର
ଲେଉଛି ଯିବାର କାକ ପିକ ନଡ଼ାକୁଣୁ । ୩ ।
କରି କ ଏଡ଼େ ସାହାସ ନଆଇଗୋର ବୟସ
ଆଜକୁ କାହାରକାହୁଁ ଭୟରେ ପ୍ରାଙ୍ଗଣୁ । ୪ ।
ଏ ବ୍ରଜେ ଦୋଷ ଦେବାକୁ ଅଛନ୍ତି ଆଉ କାହାକୁ
ଗୋପାଳକୃଷ୍ଣ ଭଣେ ଭୁନଦୋ କେ ନଶୁଣୁ । ୫ ।

—*—

## ଲାଲସା

## ରାଗ ମୋହନା—ରୂପକ ତାଳ

ମୁଁ ଘୁଚ୍ଛଦେନ୍ତ କ । ଦଶା ଦେଲେ । ପଦ ।
ପୁର ପଦ୍ଧତିରେ ଶ୍ରୀ ଚରଣାବ୍ଜରେ
ମୁଁ ନ ଲୋଟନ୍ତ କ ? ୧
ପଦାବ୍ଜର ଧୂଳ ଶିରେ ହୋଇ ବୋଳ
ମୁଁ ନଗଡନ୍ତ କ ? ୨
ଆନନ୍ଦରେ ପ୍ରେମ ପିୟୂଷ ସିନ୍ଧୁରେ
ମୁଁ ନ ମଜ୍ଜନ୍ତ କ ? । ୩
ମୋର ଦଶା ତୋଳେ ବଲୋକ ବକଳେ
ଚୋଳନ୍ତେ ନାହିଁକ ? ୪

ହୋଇଲାର ଯୋଗ ଶ୍ରୀ କୃଷ୍ଣାଙ୍ଗ ରାଗ
ମୁଁ ନ ଲଭନ୍ତ କି ? ୫
ସ୍ଥାନକରେ ଶାବ ପ୍ରବେଶ ଉତ୍ସବ
ଘଟନ୍ତା ନାହିଁକି ? ୬
ଗୋପାଳ କୃଷ୍ଣର କୋଟି ଜନ୍ମାନ୍ତର
ଦୁଃଖ ଉହନ୍ତା କି ? । ୭



## ରାଗ ବଳାହର—ମିଶ୍ର ରୂପତାଳ

( ଏକ ଦଣ୍ଡା ବ୍ରଜ ଗୋଷ୍ଠାପାକ—ବୃନ୍ଦେ )

ତୋତେ ଭୁଲି ପ୍ରାଣସଖି ସାକ୍ଷୀ ମୁଁ କି ଜଣାଇବ ରେ । ପଦ ।
ଚନ୍ଦନ ବୋଳି ଦେଇ ଯା ଅଙ୍ଗେ-
ଉକୁଟାଇ ଦେଉ ସେହ୍ନିଲାଗେ
ଆଜ ବନଯାକ ଦେଖିନାହୁଁ ମାନସେ କି ଖାଇବରେ । ୧ ।
ପଣା ଖେଳରେ ମୋହନ ହାର-
ଛଡିଲେ ମିଶାଇ ଦେଇ ସାର
ହସି ବୋଲୁଥାଉ ପର ଅସ୍ତ୍ର ହୋଇପିବେ ଉଙ୍କରେ । ୨ ।
ଲୁଚି ଥାଉ ପରିହାସ କରି
କ୍ଷଣେ କାଳ ନୋହୁ ଜବାଧରି
ଚରମରୁ ବୋଲ କରୁଯାଇ ଚମ୍ପକ ଅଟବୀରେ । ୩ ।
ଆସୁ ଆସୁ ଗୋଚାରଣ କରି
ଅଟ୍ଟାଳୀ ଶିଖରେ ବଜେ କରି
ଯାହା ଦେଉଥାଉ ଦୃଷ୍ଟି ତାଳ କାନନ ପ୍ରଦେଶରେ । ୪ ।
ଗୋପାଳକୃଷ୍ଣ ଭଣଇ ଗୀତ
ଭଣନ୍ତି ଶ୍ରୀମନ୍ତ ଶୁଣ ମିତ
ପରାଧୀନ କୁଳବଧୂ ଜନ ମୁଁ କିସ କହିବରେ । ୫ ।



# ଦୈନ୍ୟ ବୋଧିକା

( ଭକ୍ତ ମୁର୍ହିଁରେ ନିଜ ମନରେ ଦୈନ୍ୟ ଭାବକୁ ଏହି କବିତାରେ ସୁନ୍ଦର ଭାବରେ ବର୍ଣ୍ଣନା କରା ଯାଇଛି । କବିସୂର୍ଯ୍ୟ ବଳଦେବ ରଥ ପୁତ୍ରଶୋକରେ ଅଧିର ହୋଇ ଏହି ଭଳି ଭାବରେ ବେଦନାକୁ ଜଗନ୍ନାଥଙ୍କ ପାଖରେ ଜଣାଇ ଥିଲେ କିଂତୁ ଠାକୁରେ ତାଙ୍କର ଗୁହାରି ନଶୁଣିବାରୁ "କାଳିଆ ଜାଣିଛମା" କବିତାକୁ ଗାଇଥିଲେ । ମାତ୍ର ଭକ୍ତ ଗୋପାଳକୃଷ୍ଣ ଏହି କବିତାରେ ଧନରତ୍ନ କିଛି ମାଗି ନାହାନ୍ତି । ବିନମ୍ର ସହକାରେ ମାଗୁଣି କରିଛନ୍ତି ଆରାଧ୍ୟ ଦେବତା ରାଧା କୃଷ୍ଣଙ୍କ ସେବା ପାଇଁ )

ରାଗ—କୌଶିକ

କୃପା ନ କଲେ । କାହିଁକି ଧରିବ ପରାଣ ?
ବ୍ରଜେନ୍ଦ୍ର ହୃଦୟ ବନ୍ଦାରଣୀ ରାଧେ ହୋଇ ଯିବତ ଅକାରଣ । ପଦ ।
ନମିଳିବ ବେଳେ ହେଲେ ପଦସେବା
ଅମଳ ଶ୍ରୀକଂଜ ଚରଣ
ପ୍ରାଣନାଥ ସଖୀ ମଂଜରୀ ମାନଙ୍କୁ
ଏହି ପାଇଁ ନତ ଜଣାଣ । ୧
ରାସ-ବିଳାସରେ କୁସୁମ ବ୍ୟଜନ
ଆଳୀ ଛଡେଲେ ମୋତେ ଡ଼ାକ
କୋଟିଏ ଜନ୍ମର ତପସ୍ୟାର ଫଳ
ବ୍ରଜ ଲାଗ୍ରି ଆଉ କାହିଁକି । ୨
କେଶର କୁଂଜରେ ପ୍ରାଣେଶ ସଂଗରେ
ନ ଦେଖିବି ଯଦି ଦୁହିଁଙ୍କ
ଆଖି ବନ୍ଧୁବାର ହୋଇଯିବ ଯିନା
ଯେମନ୍ତେ ଚିତ୍ର ବରଣ୍ଟକ । ୩
ପରମ ଅଭୀଷ୍ଟ ସ୍ୱାମିନୀ ସୁଜୁଷ୍ଟ
ନ ପାଇବ ଯଦି ରସିକା

ବନ୍ଧୁ ବନ୍ତ ଘଞ୍ଚଣ ଯର୍ଶ ଲୁଚେ
ହୋଇଥିବ ସିନା ଲୁଳଦା । ୪
ଭୁଜ ଯୁବଭୁଜ ପିନ୍ଧାଇ ଥିବାର
ସୁଧନସ ସ୍ରକ ପ୍ରାନ୍ତରେ
ସଜ ସାଜବାକୁ ପିଁଟାଞ୍ଚି ସଜନି
ନ ଦେବେ ଯନ୍ଧ ମୋ ହାତରେ । ୫
ପରମ ଦୟା ମୟୀ ନାମ ଶୁଣି ମୁଁ
ପ୍ରତ୍ୟାଶା କରୁଛୁ ସ୍ୱାମିନୀ
ବଦନ୍ତି କୁଣଧର ଭଞ୍ଜଇ ଗୋପାଳ
କୃଷ୍ଣ ହେ କୃଷ୍ଣ ପ୍ରଣୟିନୀ । ୬



## କୁଞ୍ଜବିହାରୀ ଶ୍ରୀକୃଷ୍ଣଙ୍କ ପ୍ରତି ଚନ୍ଦ୍ରାବଳି

ତାଳ ଆଠ ତାଳି
( ଶୋଭା କରୁଚେ—ବୃଜେ )

ବନମାଳି ହେ
ଚନ୍ଦ୍ରାବଳୀର ଜଣା ମାଳ ହେ ।
ରସିକ ମଣ୍ଡଳ ସାର ସୁଧା ଥାଳ
କେଉଁଠି ହୋଇବ ଖାଲି ହେ । ପଦ ।
ଶ୍ରୀପଦ ସାରଙ୍ଗ ଛଳେ ମନ ଭୃଙ୍ଗ
ଖାଉଥିବ ଯାହା ଚାଲ ହେ
ଅଖିଳ ଅବଳା ମଧ୍ୟେ ସୌଭାଗିନୀ
ନଥିବ କେହିବି ତା ଭଳି ହେ । ୧ ।
ବରଷୁ ଶଙ୍କର ଯେ ପଦେ କଙ୍କର
ଯା ଭଳି ସମ୍ଭବ ଧୂଳି ହେ
ମଣ୍ଡଳରେ କୋଳ ଗୌତମ ଲଲନ
ଲଭିଲାଣି ଆଗମନ ହେ । ୨ ।



ଶ୍ୟାମ ମୋ ଗଳାର ମାଳ ଗୋ

ଶ୍ୟାମ ଲାଗି ମୁଁ ପାଗଳ

ଶ୍ୟାମ ସୁମନରେ ଅତି ଯତନରେ

ଭରିବ ପୂଜାର ଥାଳ ଗୋ ।

( ଗୋପାଳ କୃଷ୍ଣ ଗ୍ରନ୍ଥାବଳୀ ୩୧୪ ପୃଷ୍ଠା )

ଲଭ ସେ ପଦ୍ମର ଧନ୍ୟ ହେଲା ମୋର
ନଶ୍ୱର ଜୀବନ ଜନ୍ମ ହେ
କେବେ ନଭୁଲିବ ଆଶ୍ଳେଷେ ଲଭିଲି
ଜଡ଼ ଅଙ୍ଗେ ଖଞ୍ଜି ଲଭ ହିଁ ହେ । ୩ ।
ନ ଦେଖିବ ପ୍ରାଣ ସ୍ୱପ୍ନ ରସିକେଶ
ରଚି ଅପାଙ୍ଗଭଙ୍ଗି ଚେଷ୍ଟା ହେ
ମନ:ସ୍ଥିତ ଭାବନ୍ତ ଲଭିଛି ଅବଶ୍ୟ
ଦର୍ଶନ ହୋଇବ ଜନ୍ମ ହେ । ୪ ।
ଗୋଲକ ବିହାରି ହେ ପ୍ରଭୁ କଂସାରି
ସେବକ ପାନା ନଭିଲ୍ଲି ହେ
ଏତ୍ତ ବନ୍ଧ୍ୟା ଥିବ ଅନ୍ତର ନୋହିବ
ଗୋପାଳ କୃଷ୍ଣ ସ୍ୱାମୀ ଭଲ ହେ । ୫ ।

—*—

## ଶ୍ରୀକୃଷ୍ଣଙ୍କ ପ୍ରତି ଶ୍ରୀରାଧା

ଭାଳ—ପଦମଞ୍ଜ

( ପୀତପଟ କଲଟ—ବୃନ୍ଦେ )

ବାଟ ଛାଡ଼ ଦଣ୍ଡିଆ-ଏବେ ଦଣ୍ଡ କରି ଆଉ ନମାଗ ବାଟ ।
ଶୁଣିଲେ ଏ ନଟ ଗୋପ କଟକରେ
ନାଗରୀ ସମାଜ କରିବେ ଥଟ୍ଟା । ପଦ ।
ଶାଶୁ ମୋର ଦୁଷ୍ଟା ଜଟୀଳା
ଶୁଣି ନଣନ୍ଦଟି କୁଟୀଳା
କେତେ ଦଣ୍ଡା ନଟା ଲୁଟାଇ ଦେବେଟି
ଦିଠା ହୋଇଯିବ ଘୁଣ୍ଟା ମୁଣ୍ଡଟା । ୧ ।
ଲୁଣ ଲାଗି ବ୍ରଜ କଟକେ
ମୁଣ୍ଡ ଟେକି ମୁହିଁ ଭଟକେ
ଆପଣେ ନେଲୁଥାଅ ବାଭିଛ ପଟ୍ଟେ ବହି
ଦାଣ୍ଡେ ଦାଣ୍ଡ ଖେଳୁ ଉପାୟ ଲଟା । ୨ ।

ବେଳ ହୋଇଲାଣି ଉଛୁର
ଭଲ ମୋତେ ମାଡ଼ୁଛି ଡର
ଗଂଜନ ଅପାର ନଣନ୍ଦ ମୋହର
ଶାଶୁ କହିବେ କୁଳଟା । ୩ ।
ତୁମ ଲାଗି ହେ ବନମାଳୀ
ସଙ୍ଗ ନାମେ ଲାଗିଲି କାଳି
ଗାଳି ଶୁଣି ଶୁଣି ହାଲିଆ ହେଲିଣି
ତେବେ ସୁଦ୍ଧା ତୁମେ ଲଗାଅ ନାଟ । ୪ ।
ହେଲେ ହେଉ ଯେତେ କଳଙ୍କ
ଶ୍ୟାମ ତୁମେ ମୋର ଜୀବନ
କରୁଛି ନିୟମ ସାକ୍ଷୀରହି ଧନ-
ମଣିକୁ ନିର୍ମଳ କର ମନଟା । ୫ ।
ଦୟା ରଖିଥାଅ ମୋହନ
ମାୟା ନକରଣ ଭଜନ
ଭଣିଲେ ଗୋପାଳ କୃଷ୍ଣ କାଳ କାଳ
ସମ୍ବଳ ଶ୍ରୀଚରଣ ପଦ୍ମ ପାଦଟା । ୬ ।

—*—

## ଶ୍ରୀକୃଷ୍ଣଙ୍କ ପ୍ରତି—ଚନ୍ଦ୍ରାବଳୀ

ତାଳ—ଝୁଲ

କଳା କାହ୍ନୁ ହେ କେତେ ମୁଁ କହିବ ଆଉ ।
ଯା ହେବାର ହେଉ ଜୀବ ଗଲେ ଯାଉ
ପ୍ରୀତି ସବୁଦିନେ ଥାଉ ।
ମୋହନ । ପଦ ।
ଘନା ଚନ୍ଦ୍ରାବଳୀ ମାଗେ ପଦଧୂଳି
ତାପ୍ରତି କରୁଣା ହେଉ
ଫୁଲ ଭଙ୍ଗ ପର ପ୍ରୀତି ନ ଆଚର
ଚିରକାଳ ଜଥା ରହୁ । ୧

ମୋ କଣ୍ଠର ମଣି  ତୁମ୍ଭେ ନୀଳମଣି
କେବା ଜାଣେ ତୁମ୍ଭ ଭାଉ
ବହୁ ବନ ପରେ  ଲଭି ନିକଟରେ
ଛାଡ଼ ଦେବାର ନ ହେଉ । ୨
ଶ୍ୟାମ ପ୍ରୀତି ଧନ  ପାଇ ଏ ଜୀବନ
ଯିବାର ହୋଇଲେ ଯାଉ
ଘର କରି ହରି  ନ ହଅ ପାଶୋର
କୁଂଜରେ ରଜନୀ ପାହୁ । ୩
ହେ ପ୍ରାଣ ବାଂଧବ  ଚନ୍ଦ୍ରାବଳୀ ଧବ
ତୁମ ମାୟା ଜାଣେ କେହୁ
ଗୋପାଳ କୃଷ୍ଣର  ଅଳିଟି ମାତର
ଅଳ ପଣ୍ଡ ଗୁଣ ଗାଉ । ୪



## ସେବାଲାଳସା

### ରାଗ କୌଣପୁର ତୋଡ଼ି—ତାଳ ଯତିତାଳୀ

( ପୀରତି ପଥଖସତାରେ ସଙ୍ଗୀତ—ବୃତ୍ତି )

ଚିନ୍ତୁଥା ତୁ ନିରନ୍ତରେ ରେ ମାନସ ! ଚିନ୍ତୁଥା ତୁ ନିରନ୍ତରେ
ହେବାକୁ କିଂକରୀ ବୃନ୍ଦାବନେଶ୍ୱରୀ ଶ୍ରୀ ପଦାମ୍ବୁଜ ପ୍ରାନ୍ତରେ ।ପଦା
ସୌନ୍ଦର୍ଯ୍ୟର ଅଧିଷ୍ଠାତ୍ରୀ ଯା ଚରଣେ ହୋଇବା ଆଶାରେ ଦାସୀ
ଶ୍ରୀ ବନରେ ବସି ତପ ସାଧୁଛନ୍ତି ଯୁଗଳ ସେବା ମନାସି ।୧
ପ୍ରେମର ଆଶ୍ରୟ କେବଳ ଶ୍ରୀବୃଷଭାନୁ ନନ୍ଦିନୀ ନନ୍ଦିନୀ
ପ୍ରେମର ବିଷୟ କୃଷ୍ଣପ୍ରାପ୍ତି ହେବେ ତାଙ୍କ ଅନୁଗ୍ରହେ ଯିନା ।୨
ଯଥାର୍ଥରେ ବୁଝ ତୋ ବିରହ ଦାରୁଣ ଯନ୍ତ୍ରଣା ସୃଷ୍ଟି
ହୋଇଯିବ ଭଣା ତାହାଙ୍କ କରୁଣାମୃତ ଧାରହେଉ ବୃଷ୍ଟି ।୩
ସିଦ୍ଧ କଳେବର ଅନୁସର ତୋର ନାୟିକାହେବୁ ତେଜି ଲୋଭ
ଭଣଇ ଗୋପାଳକୃଷ୍ଣ ଭାସ ପାଇଁ ପ୍ରମାଦୁଛୁ ଏତେ ଷୋଭ ।୪



## ସୁଖ କେଦାର—ମିଶ୍ରରୂପ ତାଳ

( ବଞ୍ଚ୍ୟେ ଏ କି ସୁଖ ନଦେଲୁ ମୋତେ ଉତ୍ତରବେ—ଢଙ୍ଗେ )

ନୟନରେ ନାଚୁଛି ତୋ ରୂପ ଚନ୍ଦ୍ରମା ମୂର୍ତ୍ତିରେ

ଯେଣିକି ଚାହିଁଲେ ତୋ ଲାବଣ୍ୟେ ମୋହିତ କେବ ଜଣେ
ଅନ୍ଧଶୁନାହିଁରେ ।ପଦ।

ବଲେକଲେ ଅବା ଶୁଣିଲେ ମୋ ବାଣୀ
ଗାବବତ୍ସ କେତେ ସ୍ନେହୀ

ମାପ ଫୁଲ ପରି କଳେବରଯାକ
କିଶୋର ପୁଲକୁ ଥାଇ ।୧

ଦେଖୁଥାଇ ଉଡେ ମୋ ଦୃଷ୍ଟି ଭ୍ରମର
ଚଳକୁ ଚଳିଲେ ସବୁ

ଚୁମ୍ବ ଦେବା ଛଳେ ମୁଦଶ ମୁଖ ଟେକଇ
ଉଡ଼ୁ କି ମୁକ୍ତିଲି ମୂର୍ଚ୍ଛି ।୨

ସୁର ଭାନ୍ତେ ଚଲୁ ଚଳେ ଅଲ୍ପୋଦର
ଦୁଧାଓ ଘାଣରେ ଉତ୍ତ

ବାସ ପୀତ୍ୟ ମାତ୍ର ବନ୍ଧ ଖୋସୁ ବନ୍ଧ
କୁହି ଯା ଦେଖିବୁ ଚାହିଁ ।୩

ଅଇଲା ବେଳେ ମୋ ପଚ୍ଛେ ପଚ୍ଛେ ଆସି
ବାରବାନ-ସ୍ୱର୍ଣ୍ଣ ଦେଖୁ

ଦେହଲୀ ଦୁଆରୁ କନକ ରମ୍ଭୋରୁ
ରତ୍ନସିଂହାର ଛୁ କରୁ ।୪

ଇଲାମକ ପୁଷ୍ଟ ସ୍ତନ ତୋର ବର୍ଣ୍ଣ-
କର୍ଣ୍ଣ କି ପାରେବ ଲେଖୁ

ବୋଇଲେ ଗୋପାଳକୃଷ୍ଣ ଆଉ ଲହୁବ
ଗଲୁଇଲେ ଉଡାଇଲ ବାହିଁ ।୫



## ସାଧକର ଲାଳସା

ରାଗ, କଳହଂସ କେଦାର—ତାଳ, ଝୁଲା

( କହଇ ମନ ଆରେ ମୋ ଦ୍ୱୈାଲକର ବୃତ୍ତେ )

କରୁଣାମୟୀ ରାଧେ ! ଶ୍ରୀ ଗାନ୍ଧର୍ବିକେ
ଗୋପେନ୍ଦ୍ର ସୁନୁ କୃଷ୍ଣ—ଜୀବନାଧିକେ ଶ୍ରୀ
କ୍ଷମା ସାଗରି ବୃନ୍ଦାରଣ୍ୟାଧୀ ଦେବି ।
ସତେ କି ମିଳିବ ଦେବେ ସେବକଙ୍କ ଦୃଷ୍ଟି ଗୋ ।୧

ସୁରଅଷ୍ଟସ ଶ୍ରୀ ରୂପଦ୍ୟା ସଙ୍ଗିନୀ
ବଲ୍ଲକୀ ବିନୋଦିନୀ ଗୀତରଙ୍ଗିଣୀ ହେ
ଶ୍ରୀରୂପା ସଖୀଙ୍କି ଦେଉଁ ଆଦେଶ
ତାଙ୍କ ଶ୍ରୀମୁଖୁ ନେବେ ଶିଖାଇ ବେଶ ଯେ ।୨

ସେହି ଆଜ୍ଞାବାଣୀ ଶିରେ ଘେନି ସତ୍ତେ
ସୁସେବା ଆଦରିବ ମଞ୍ଜରୀ ମଧ୍ୟେ ହେ
ଯାବନ୍ତ କାଳ ଗୃହବର୍ତ୍ତୀ ଯେମନ୍ତେ
ସବୁ ନର୍ତ୍ତା କରିବ ଚରଣ ପ୍ରାନ୍ତେ ହେ ।୩

ନିଭୃତ ନିକୁଞ୍ଜରେ କେଳି ବିଳାସେ
ନିଶାନ୍ତେ ଦଶା ଦେଇଁ ଗବାକ୍ଷ ପାଶେ ଯେ
ମୁରଳୀ ଜପଗୀତ ଶୁଣିନାନନ୍ଦେ
କର୍ଣ୍ଣିକା ବେଶେ ମୁଗ୍ଧ ଦେବେ ସୁଲକ୍ଷଣେ ଯେ ।୪

ସାଧକାଂଗେ ସାଧନ ଧନ ପ୍ରାପତେ
ଜୀବନକୁ ସାର୍ଥକ ମଣିବ ଚିତ୍ତେ ଯେ
ହେ ସ୍ୱାମିନି ! ଏଶ୍ୱର୍ଯ୍ୟ କେବେ ଘଟିବ ?
ଗୋପାଳକୃଷ୍ଣ ଶ୍ରୀ ପଦାବ୍ଜେ ଖଟିବ ଯେ ।୫



## ବିଦେଶରେ ବିରହୀର ଭାବନା

ରାଗ ବରଜ—ତାଳ ଆଠତାଳୀ

( ଦେଖାଇବକ ସତେ ଦଇବ—ବୃତ୍ତେ )

ସର ଯିବନ ଲେଉଡ଼ ଲେଉଡ଼ ସେ ମୋତେ ସରୋଜ ଲପନା ।ପଦ।

ବସନ୍ତ ମନ୍ମଥ ପିକ ମଧୁ ବ୍ରତ

ବନ୍ଧୁ ସଖା ସେନା ସୈନ୍ୟ ହରେ

କେତକୀ କୁନ୍ତ ବିଶାଇ ବୃଷରେ ଶର ବସାଇ

ଦାରୁଣ ମଦନ ଖଣ୍ଡ ଦେବନରେ ଉଦ୍ଭବନ । ୧

ପ୍ରାଙ୍ଗଣର ମଲ୍ଲୀ ବଲ୍ଲୀରେ ବନ୍ଧୂଳି-

ଅଧରୀ ଭୃଙ୍ଗ ରଂଗକୁ ସ୍ମରି ।

ବାମପଦ ଅଳନ୍ଦରେ ଉଞ୍ଚ ଦୁଆର ବନ୍ଧରେ

ଅପଧର ଲୁହ ପୋଛୁ ଥିବନରେ, ଥିବନ । ୨

ଆଳୀ ମୋ ସଂଦେଶ ପଦ୍ମରୁଁ ନାଶଣ

ମଥା ପୋଛ ଧୂଳିରେ ଅଙ୍ଗ ଛୁଇଁ

ଝରି ଝରି ଅଶ୍ରୁ କଣ୍ଠ ବାଣୀ କଣ୍ଠେ ଗଲେ ରହି

ଶୋକରେ ଝିବଳୀ ବଳ ହେବନରେ, ହେବନ । ୩

ଉତ୍ତୀର୍ଣ୍ଣ ସୁବର୍ଣ୍ଣ କାନ୍ତକ ଯା ବର୍ଣ୍ଣ

ହସୁଥାଇ ଏବେ ଶୀର୍ଣ୍ଣ ହେ

ଝାଞ୍ଜି ବଜା ନବବଲ୍ଲୀ ପରାସ୍ତେ ଯିବନ ଲୋଳ

ଶେଷେ ଲାଗି ଯାଇଥିବ ମୋ ଯୋବନରେ, ମୋ ଯୋବନ । ୪

ମାର ଅଂଧକାର କ ପରେ ଗୁଆଁର

ପଣେ ଚନ୍ଦ୍ରାମଣି ଦେଲ ଫାଙ୍କି

ଗୋପାଳ କୃଷ୍ଣ ଭଣିତ ଆଉ କ ପରାଣ ମିତ

ଧନ ଧରିବ ମୋଗୁଣ ବାଉନରେ ବାଉନ । ୫

—※—

## ରାଧାଙ୍କୁ ସଖୀମାନଙ୍କ ପ୍ରଶଂସା

ରାଗ ତୋଡ଼ ସରଜ—ତାଳ ଆଡତାଳୀ

( ଲୋ ସଜନୀ । ଗଲିନ ମୁଁ ଲଜେ ସଡ଼ି—ବୃତ୍ତେ )

ରେ କଶୋର ! କନକ ମୁକୁର କାନ୍ତି
ଶ୍ୟାମ ବିଳାସର ସୁନ୍ଦର ତନୁ ତୋ ଦଶେକ ଅପୂର୍ବ ଭାନ୍ତି । ଘୋଷା ।

ସୁନୀଳ ବସନ ରତନ ଭୂଷଣ
ଜଳଦେ ଦାମିନୀ ଉଦେ
କୁଂଚିତ କେଶର ଲମ୍ବିତ ବେଣୀଟି
ଦୋହଲି ଖେଳଇ ହୃଦେ । ୧

ସୁର ମୁଗ୍ଧ କର ଲଲାଟେ ସିନ୍ଦୂର
ତହିଁ ମଳୟଜ ରେଖା
ନବ ଜଳଧରେ କୋଳେ କି ଅରୁଣ
ନବ ଇନ୍ଦୁ ଦେଲା ଦେଖା । ୨

ଲୋଚନ ଖଞ୍ଜନ ଗଂଜନ ରଂଜନ
ଅଂଜନ ବସନ ରାଜେ
କ୍ଵଣିତ କିଂକଣୀ ସୁମଞ୍ଜୀର ଧ୍ୱନି
ମନୋହର ବାଜେ । ୩

ରାଜ ହଂସ ଗଜ ଗତି ବିଡମ୍ବନ
ଅବଲମ୍ବୀ ସଖୀ ହାତେ
ଚରଣ ଚପଳେ ମଧୁକର ନିକର
ବସନ୍ତ ଯୂଥିକୁ ଯୂଥେ । ୪

ସ୍ୱର୍ଣ୍ଣ ଲତାଜିଣି ନବସୌଦାମିନୀ
ରୂପ ତୋ ବଧି ଅବଧି
ଗୋପାଳକୃଷ୍ଣ ସେ ଶ୍ରୀପଦାବ୍ଜେ ଭଜେ
ନୂଆ ଦାସୀପଣ ସାଧି । ୫



## ରାଗ ଝିଙ୍ଗିଆରୀ—ତାଳ ଏକତାଳ

ଧୀରେ ବୁଝ ମନ !

ରାଧା ଗୋବିଂଦ ମୂରତି କି ଧରନ !

ନିକୁଂଜ ଶେଯରେ ବିଜେ କରିଛନ୍ତି
ସଖୀ ମଞ୍ଜରୀଙ୍କ ପ୍ରାଣ-ଧନ । ଶୋଭା ।

କୁଂଦନ ମର୍କତ ମଣିଆଭା ତମାଳେ କନକଲତା ଜବା
ବ୍ରଜାବନୀ ଦେଶେ ସମୁଦିତ ଭାସେ
ସ୍ଥିର ସୌଦାମିନୀ ଘନ ପ୍ରଭା । ୧

ତରୁଣ ତରୁଣୀ ରମ୍ୟବେଶ ପରିଧାନ ନୀଳ ପୀତବାସ
ମୃଗ ମଦକର ଭାଲେ ମନୋହର
ଅପୂର୍ବ ପ୍ରଣୟ ଭାବାବେଶ । ୨

ଶ୍ରୀବକ୍ଷେ ମାଳତୀ କୁଂଦହାର ଶିରେ କେକୀପୁଚ୍ଛ ପୁଷ୍ପଝର
ନୀଳ ଶୋଣାବ୍ଜ ନୟନୁ ସ୍ରବ ପଡ଼େ
ଡବ ଡବ ପ୍ରେମ ଅଶ୍ରୁଧାର । ୩

ଆଳୀ ଆଳି ସ୍ଥିତ ଚଉପାଶେ ପରସ୍ପର ହାସ ପରିହାସେ
ପ୍ରେମେଶ୍ୱରୀ ପ୍ରେମେଶ୍ୱର ଯୁଗଳ ପଦୁର
ସ୍ମରଣେ ଗୋପାଳକୃଷ୍ଣ ଭାସେ । ୪

—*—

## ମନଶିକ୍ଷା

ରାଗ ଶଂକରା ଭରଣ—ତାଳ ଆଠତାଳୀ

( ଦୟାମୟୀ ଈଶ୍ୱରୀ—ବୃନ୍ଦେ )

ରାଧା ବଂଶୀ ବଦନ । ସ୍ମର ନିଭୃତ ନିକୁଂଜେ ମନରେ ।ପଦ।
ଶ୍ରୀ ବୃଷଭାନୁ କୁମାରୀ ରାସେଶ୍ୱରୀ ଗୋଷ୍ଠ ମାଧବ ନନ୍ଦନ
ଅଭିନବ ନୀଳା କମଳ ଧାରିଣୀ ବ୍ରଜେନ୍ଦ୍ର ଜଗବନ୍ଦନ । ୧
ମହା ଭାବମୟୀ ବୃନ୍ଦାରଣ୍ୟ ରାଜ୍ଞୀ ଶ୍ରୀବ୍ରଜାରଣ୍ୟ ମଦନ
ଅପ୍ରାକୃତ ପ୍ରେମ ପ୍ରତିମା ଯୁଗଳ ଲାବଣ୍ୟ ମୃତ ସଦନ ଯେ । ୨



ଘାଟମୂଲ ନ ଦେଇ        କାଳି କହୁଛ ଗୋଈ
କଥା ମଢ଼ିବ କଂସ ଆଗର ରେ
ଗୋପାଳ କୃଷ୍ଣ ବୋଲେ    ଆଜି ଘ ଟ ନଦେଲେ
କଳସୀ ରଟିଯାଅ ଠଉ ଘର !

( ଗୋପାଳକୃଷ୍ଣ ଗ୍ରନ୍ଥାବଳୀ    ୩୨୩ ପୃଷ୍ଠା )

ଶ୍ରୀ ଗୋକୁଳେଶ୍ୱରୀଙ୍କର ଚେତନ ଭୂଷଣ ଗୋପିମା ଜୀବନ ଧନ
ଉଜ୍ଜ୍ୱଳ ରସ ବିଗ୍ରହ ବ୍ରଜଜନ ବୃନ୍ଦ ଆନନ୍ଦ ବର୍ଦ୍ଧନ ଯେ । ୩
ଜମ୍ବୁନଦ ହେମ ଅମୃତ ବରନ ନୀଳଶୋଣାବ୍ଜ ନୟନ
ଗୋପାଳକୃଷ୍ଣର ହୃଦ ସଂପୁଟକ ଅମୂଲ୍ୟ ମଣି ରତନ । ୪



## ସଖୀମାନଙ୍କପ୍ରତି—ଶ୍ରୀରାଧା

( ତାଳ—ଆଠତାଳ )

ପୀତପଟ୍ଟ ହେ ଶ୍ୟାମ ସୁନ୍ଦର ଗୋ ସଖି !
ଯାତ୍ରା କଲେ ମୋ' ସଙ୍ଗେ ସୁନ୍ଦର ଗୋ । ପଦ ।
ଯମୁନା ଗଲି ସତ୍ୱ । ପାଣି ଆଣିବା ପାଇଁ
ପଥେ ଭେଟିଲେ ବ୍ରଜ ଚନ୍ଦର ଗୋ । ୨ ।
ବନ କୁସୁମେ କେଶ ସାଜିଥିଲେ ସରସ
ମୁରଲୀ ଥାପିଲେ ଅଧର ପର । ୨ ।
ମୋତେ ଦେଖି ସେ ମନ୍ଦେ ହସି ତ୍ରିଭଙ୍ଗୀ ଛନ୍ଦେ
କହିଲେ ଆସି କଥା ମଧୁର ଉରେ । ୩ ।
କଗୋ ବ୍ରଜ କିଶୋରି ଏକ ଘଟ ଆଚର
ନୀର ନେଉଛୁ କର ଅନ୍ତର ରେ । ୪ ।
ଘାଟ ମୂଲ ନ ଦେଇ ବାଙ୍କ କରୁଛ ଭୁଷୋଲ
କଥା ପଡ଼ିବ କଂସ ଆଗରେ ରେ । ୪ ।
ଗୋପାଳ କୃଷ୍ଣ ବୋଲେ ଆଜ ଘାଟ ନଦେଲେ
କଳସୀ ରଖିଯାଅ ଏଠାରେ ରେ । ୫ ।



## ତାଳ ଏକତାଲି

( ବୃନ୍ଦାବନେ ମିଳ—କୃଷ୍ଣେ )

ବୃନ୍ଦାଶ୍ରୀମଞ୍ଚ—ମାଳବ୍ୟାଷ୍ଟ

ଖେଳେ କି ରଙ୍ଗେ

ଶିରେ ଶିଖିପୁଚ୍ଛ କେଡ଼େ ସୁନ୍ଦର

ଟୋଳଥିଲେ ପଷ୍ଟ ଗିରି ମନ୍ଦର

କ୍ଷୀର ଖିଆଇଲେ ପୁତନା ନାଶିଲେ

ଥାଇ ଉଛଙ୍ଗେ ।୧।

ଶିରେ ଖୋଷି ରଙ୍ଗ ଜାମୁ ଡାଳକ

ଭଙ୍ଗୀ କରି ବାଙ୍କେ ଖେଳେ ତଳକ

ଗଳ ଗଳ ଖେଳେ ବରଜ ବାଳୀକି

କେଳ ତରଙ୍ଗେ ।୨।

କୋଟି କାମ ଜିଣି ତନୁ ସୁଷମା

ବାଳାରୁଣ କି ଅଧର ରକ୍ତିମା

ରୁଣୁ ଝୁଣୁ ବାଜେ ନୂପୁର ପଦରେ

ଘାଗୁଡ଼ି ସଙ୍ଗେ ।୩।

ଚଲେ ପଛେ ପାଞ୍ଜ ଏଣ୍ଡ ଗଣ

ନଗୁଡ଼ବ କେବେ ଛନ୍ଦାଚରଣ

ଗୋପାଳ କୃଷ୍ଣ ଭଣଇ ମୋ ମାନସ

କୃଷ୍ଣ ପ୍ରସଙ୍ଗେ । ୪ ।



## ରାଗ ଭୈରବୀ—ଆଠତାଳ

ଶ୍ୟାମଳ ନର୍ମଳ ଜଳଧର କୁନ୍ତଳ ।ପଦ।

ଜଳଧି କନ୍ୟା ତରଳ ମଳ ପଣ୍ଡ ପିତା କୁଳ—

ପ୍ରୀତି ଲଗି ରାଧା ତନୁ ଦେଲନ ବଳ ।୧

ଜାଣରେ ସଜନ ଶିବ ଯେବେ ଦେଲେ ବରଜଳ

ଛାଡ଼ଦେଲେ ଅବୁଦନେ ଜଇଁଥିବ କି ।୨

ଅଜଟାଏ ଆଜନମୁ | ବରତ କେତେ କରି ମୁଁ
ବର ମୁଁ ମାଗୁଛି ନନ୍ଦ ସେବ ଭବକ ।୩

କଳା ଲୁଣ୍ଡ ମଣି ମୋର | ଗଳାର ଛଇଲା ବର
ମୁଁ ଯୋଗୀ ସେ ଥାଳ ଚେଲ ବର୍ତ୍ତବ କ ।୪

ଉପାସ୍ଥ କହୁଛି ତୋତେ | ବଷ ଗୋଳଦେ ମୋହାତେ
ମନା କରନା ତୋ କଥା ନପାଳବ କ ।୫

ଗୋପାଳ କୃଷ୍ଣ ଭଣିତ | ଆଳୀ ବୁଝିବାକୁ ତତ୍ତ୍ୱ
ପତ୍ନୁରଲେ ବଜେକର ବୃନ୍ଦାଟଣୀ କ ।୬



## ଶ୍ରୀକୃଷ୍ଣ ପ୍ରତି ଯଶୋଦା

( ଉଠିଲ୍ ଏଡ଼େ ବେଗି—ବୃନ୍ଦେ )

ମାଲ ଦାଣ୍ଡ ! ଲୂଣ ପିବ ମୁଁ ତୋହ ପାଇଁକ
ଚଣ୍ଡରେ ଭଳେ ଡର ନାହିଁକ । ପଦ

ନମାନ ମୋରମନା | ଆରେ କାଳଆ କାହ୍ନା
ଏତେ ଦ୍ଵର କରୁଛୁ କାହିଁକ ? ୧

କ୍ଷୀର ସର ଲବଣୀ | ଦେଲେରେ ମାଳମଣି
ଥୂ ଥୂ ଥୂ କରୁ ତୁ ନ ଖାଇକ । ୨

ପଶି ଗୋପ ନଗରେ | ଲ୍ଭେଲ୍ଭ ଘରେ ଘରେ
କହନ୍ତି ଆସି ଗୋପ ଗୋଈକ । ୩

ନଶୁଣି ବ ମୁଁ ଏତେ | ଲୂଣ ପିଢରେ ତୋତେ
ବୁଡ଼ି ମରିବ ଜଳେ ଯାଇକ । ୪

ମୋଘରେ କସ ନାହିଁ | ପର ଘରେ ସ୍ଥେଖଇ
ଖାଉଛୁ ଲଜ ଲଗୁ ନାହିଁକ । ୫

ଗୋପାଳକୃଷ୍ଣ କହୁ | ଆଉ କେଣେ ନଯାଇ
ଯା’ ଇଚ୍ଛା କର ଘରେ ଥାଇକ । ୬



## ଶ୍ରୀରାଧାଙ୍କ ପ୍ରତି ସଖିମାନେ

( ଭାଳ—ଝୋମ୍ପଟା )

ଏକ୍ଷିକ—ମାନ ଭଞ୍ଜନ ସଖୀଧଷ୍ଟ ।

ଲୋ ଅମୃତକ୍ଷେତ୍ରେ    ମଞ୍ଜୁଳ ଗଲେଣି
କଳାକାନ୍ତ ବଂଶୀ ଧାରି । ପଦ ।
କିଣା ଜନେ ଜଣା    କରିବା କରୁଣା
ତତ୍ତ୍ୱମ୍ନା ନବଘୃଣ
କଟଘନରେ ମୂନ    ମାନସ ମୋହନା
କଲ ତାଙ୍କୁ ଏତେ ପର । ୧
ଦ୍ୱିରଦ ଗମନା    ତସ କାଳଆ ସୁନା
ନୂତନ୍ତ କବା ତୋହର
ତାଙ୍କ ଅବର୍ଣ୍ଣେ    ତୋଲେନ ନସୂନୁ
ମାର ନପିବକ ଝୁଣ । ୨
ଲୋ ଭରଚେ ଧନୀ    ପ୍ରଚଣ୍ଡ ଅଗନୀ
ଘାତେ ବ୍ୟଥା ପାଇ ଦଣ୍ଡ
ବାଧା ନ ପାଇଣ    କରନ୍ତୁ କାରୁଣ୍ୟ
ଦେଖି ଗ୍ଲୁଣ୍ଡ ଜଠେ ଅଙ୍ଗ । ୩
ମାର ମାର ଘଣ    ଯୋଷି ପଣ ପଣ
ବାଜ ସାଥେ ସମ୍ଭବକ୍ତ
ସକ୍ତ ନପାରନ୍ତି    ମଧ୍ୟରେ ଲୋଟନ୍ତି
ଡାକ ଗହ୍ଲ ଶ୍ରୀ କିଶୋର । ୪
ଦେଖ ଅଭିମାନ    ରେ ରାମା ରତନ
ଆଣ ତାଙ୍କୁ କର ଧରି
ଗୋପାଳକୃଷ୍ଣର    ଦୁଃଖ ଦେଇ ଦୂର
ଅଭିମାନ ଯାଉ ସରି । ୫

—*



## ମିଳନ ମାଧୁରୀ

ତାଳ—ଏକତାଳି

( ଧୀରବରେ—କିଧାନ୍ଦୁକୁ ବୁଝରେ )

ସଜନରେ···ଦେଖ ଥରେ ଖୋଲି ନୟନ ।
ବଜେ କୁଂଜ ଦୋଳପରେ ମଦନ ମୋହନ
ବାମେ ରାସେଶ୍ବରୀ ରାଇ
ଶ୍ରୀ ଅଙ୍ଗେ ଅଙ୍ଗ ଜଡ଼ାଇ
ପଦ୍ମ ଶଶାଙ୍କ ମୁଖ ହସେ କି ଶୋଭନ । ୧
ଅଧରେ ମୋହନ ବେଣୁ
ଦେଇଣ ଯଶୋଦା ସୁନୁ
ରାଧେ ରାଧେ ବୋଲି କରନ୍ତି ବାଦନ । ୨
ଆଳି ଚାମର ଧରି
ଖଟିଛନ୍ତି ସହଚରୀ
ସବୁରି ମୁଖ ମୟୁଖ ଦିଶୁଛି ପ୍ରସନ୍ନ । ୩
ଭୃଙ୍ଗ ବଦ୍ୟା ବୀଣାଧରି
ବାଏ ଅତି ଯତ୍ନ କରି
କୁଂଜେ କୁଂଜେ ଉଡ଼ି ଉଠେ ସୁରଙ୍ଗ କେତନ । ୪
ଆହା ଯୁଗଳ ମୁରତି
ନୟନେ ତୃପ୍ତି ଭରନ୍ତି
ଗୋପାଳକୃଷ୍ଣ କରୁଛି ଭକ୍ତିରେ ବନ୍ଦନ । ୫



## ଯଶୋଦାଙ୍କ ପ୍ରତି—ଶ୍ରୀକୃଷ୍ଣ

( ପଦ୍ମପଞ୍ଚ—ଏକତାଳ )

କହ୍ନା ଚଗ୍ଭଇ ଯିବ ମା ! ବେଳ ହେଲଣି ବିଳମ୍ବ
ଦାଣ୍ଡେ ରୁଣ୍ଡ ହୋଇଲେଣି ଆସି ମୋ ସଖା କଦମ୍ବ । ପଦ ।
ଭୁଞ୍ଜିବି ଦିଅ ଗୋ ଆଣି
ସର ସାକର ଲବଣୀ
ବଳରାମ ଖାଇ କାମ ସାରିଲେଣି ବେଗ ବେଗ । ୧
ଦେଖ ଧବଳ ଶ୍ୟାମଳ
ରୁଣ୍ଡିଲେଣି ହମ୍ବାରଡ଼ି
ବନେ ଯିବା ପାଇଁ କହ୍ନା ହୋଇଲେଣି ଚଗଚଗ । ୨
ଦିଅ ମୋ ଲଉଡ଼ି ବଂଶୀ
ଚୂଳେ ଶିଖି ପୁଚ୍ଛ ଖୋଷି
ଗୁଞ୍ଜମାଳ ଦିଅ ଗଳେ ଦିଶୁଥିବ ଅତିରଙ୍ଗ । ୩
ପୀତବାସ କଟିତଟେ
ନୀଳ ଦୁକୂଳକୁ ଆଣେ
ଝିଡ଼ ନୁପୁରେ ସଜାଇ ଦିଅ ମୋ ଚରଣ ଯୁଗ । ୪
ଚଳ ଚଳ ସଖା ସଙ୍ଗେ
ନାଚିବି ମୁଁ ନାନାରଙ୍ଗେ
କହ୍ନା ପଛେ ନାଚ କୁଦ କରିବି ମୁଁ କେତେରଙ୍ଗ । ୫
ନକର ଉଛୁର ଆଉ
ତୁମ ବଧୂମନ୍ଥା ଥାଉ
ଗୋପାଳକୃଷ୍ଣ ଭାଷଇ ସଖା ହୋଇଲେଣି ବ୍ୟଗ୍ର । ୬



## ବାତ୍ସଲ୍ୟ ମମତା



ବତ୍ସା ଚରଇ ଯିବି ମା ! ବେଳ ହେଲଣି ବିଳମ୍ବ
ଦାଣ୍ଡେ ରୁଣ୍ଡ ହୋଇଲେଣି ଆସି ମୋ ସଖା କଦମ୍ବ । ୧ ।

× × ×

ଦିଅ ମୋ ଲଉଡ଼ି ବଂଶୀ
ଚୂଳେ ଶିଖୀ ପୁଚ୍ଛ ଖୋସି
ଗୁଞ୍ଜମାଳ ଦିଅ ଗଳେ ବନ୍ଧୁଥିବ ଅନ୍ତରଙ୍ଗ । ୩ ।

( ଗୋପାଳକୃଷ୍ଣ ଗ୍ରନ୍ଥାବଳୀ ୩୨୮ ପୃଷ୍ଠା )

# ଗୋପୀମାନଙ୍କ ଚିନ୍ତା

( ତାଳ—ଆଠତାଳ )

ସେ ନନ୍ଦ ଶିଶୁ ସୁଷମା
କେ ପାଶୋରି ପାରିବ ମା । ପଦ ।

ଶ୍ରୀମୁଖ ମୟୂଖ ଠାଣି    ଧୈର୍ଯ୍ୟବନ୍ଧ ହୁଏ ହାଣି
ତ୍ରିଭଙ୍ଗୀ ଛନ୍ଦ ନିରେଖି
ମୂର୍ଚ୍ଛିବ କେଉଁ ବାମା । ୧ ।

ନୀପପୃଷ୍ଠେ ବସି ସେହି    ମୁରଲୀ ବାଇଲେ ସହି
କହ ନ ଟଳିବ କାହା
ଧଇର୍ଯ୍ୟ ବନ୍ଧର ସୀମା । ୨ ।

ଯା'ର ନବନୀତ ତନୁ    ଜିଣିଛି କୋଟି ଅତନୁ
ବାଳାରୁଣ ନିନ୍ଦା କରେ
ଯାହା ଅଧର ରଙ୍ଗିମା । ୩ ।

ସେହି ମୋହନ ମୂରତି    ଯା ନେଇ ହେବ ଭରତି
ନ ପଡ଼ି ପୀରତି ଫାନ୍ଦେ
ରହିବ କି ତା ଗରିମା । ୪ ।

ଗୋପାଳ କୃଷ୍ଣର ଚିତ୍ତ    ବନ୍ଦୀ ଯେ ପାଦେ ସତତ
ଅଖିଳ ପତି ସେ ତାଙ୍କ
ପରବ୍ରହ୍ମ ଶ୍ରୀସ୍ୱାମୀ ରମା । ୫ ।



## ଭକ୍ତର ଅନୁଚିନ୍ତା

( ତାଳ—ଝାମ୍ପତାଳ )

ଘାଟେ କୃଷ୍ଣ ଘାଟେ କୃଷ୍ଣ
ରଟରେ ରସନା ରଟ
ନଖିଳ ଜଗତ ସ୍ୱାମୀ
ନଖିଳ ଜଗତ ସ୍ରଷ୍ଟା । ପଦ ।
ଯୁଗଳ ପଦ କଞ୍ଜରେ
ରହୁ ମିଳନ୍ଦ ଅଙ୍ଗରେ
ପ୍ରାନଙ୍କର ମକରନ୍ଦ
ଚାଖିବୁ କର ଉଚାଟ । ୧ ।
ଚିନ୍ମୟ ଚିଦ୍‌ଘନ ଅଟ
ରସମୟ ଶିବପଟ
ଆନନ୍ଦ ରୂପିଣୀ ଘଟ
ସକଳ ଶାସ୍ତ୍ରେ ପ୍ରକଟ । ୨ ।
ଯେ ଦ୍ୱାଦଶ ବୃନ୍ଦାବନ
ସୁରମ୍ୟ ଗୋଲକ ଧାମ
ସେ ଧୂଳି ଲାଗିଲେ ମାଥେ
ନଦଣ୍ଡେ ଶମନ ଘାଟ । ୩ ।
ଭଜମନ ସେ ଚରଣ
ହୋଇବୁ ଯେତେବେ କାରଣ ।
ଲଂଘିବୁ ଯମ ଯାତନା
ଭଣିଲେ ଗୋପାଳ କୃଷ୍ଣ । ୪ ।



## ଶ୍ରୀରାଧାଙ୍କ ପ୍ରତ ସଖୀଗଣ

ରାଗ—ଆଠତାଳ

( ଦୁଃଖମନ୍ଦ ନକର ସରସ—ବୃତ୍ତେ )

ରସବର୍ଣ୍ଣ !

( କହ ) ଜଣି ଆଜ ଆନ ତୋରଗତ । ପଦ ।

ଶ୍ରଜ୍ଞା କାହିଁ ବେଶ ଭୂଷଣରେ
ମାଇ ଖ୍ଯାନ୍ତ ଶୋଇ ଧରଣୀରେ
ମଉଳନ୍ତି ସିନ୍ଦୂ        ସୂକ ମୁଖ ଚନ୍ଦ୍ର
ମଳନ ଦିଶୁଛି ଅଙ୍ଗ କାନ୍ତି । ୧ ।
କେ ଜସ କହୁନ୍ତା କବା ତୋତେ
ଫେଝ୍ଝ ନକହୁଛୁ କିମ୍ପା ଏତେ
କିବା ରସ ରାଜ        ନପୋଷି ଅଭଜ
ଦଫଳ କଲେ ବାସର ସ୍ଥିତି । ୨ ।
କଣ୍ଡ ଦେଇ କବା ନ ଅଇଲେ
ଖଣ୍ଡ ଉଣ୍ଡ ଆଚରଣ କଲେ
ତେଣୁ ତୁ ସୁମାନ        ଭଲୁ ଗୋବଧନ
ଶିଥିଳ କରାଇ ତୁକ୍କୁ ସ୍ଥିତି । ୩ ।
ଦେଖି ତୋର ବିରହିଣୀ ବେଶ
ଆମ୍ଭଙ୍କୁ ଲଗଇ ଅତିକ୍ଲେଶ
କହ ପ୍ରାଣ ମିତ        ଯା ହେବା ଉଚିତ
ତା କରିବୁ ଆମ୍ଭେ ତାଳମନ୍ତ । ୪ ।
ଗୋପାଳ କୃଷ୍ଣର ଭଷାଦେନ
ସେଣୁ ତୁ ଆମ୍ଭ ଜୀବ ଜୀବନ
ଫେଝ୍ଝ କହ ଗୋସ୍ସା        କପଟ ନକର
କହୁଛୁ ଆମ୍ଭେ ଏହି ବିନତ । ୫ ।



## ସ୍ୱାଭୀଷ୍ଟ ଲାଲସା

### ରାଗ ମଙ୍ଗଳଗୁର୍ଜ୍ଜରୀ—ତାଳଏକତାଳୀ

ସ୍ୱେଶ୍ୱରୀଙ୍କ କୃପା କେବେ ହେବ ଏ ଦାସୀରେ
ଗୁରୁରୂପା ସଖୀ ଆଜ୍ଞା ବହିବଇ ଶିରେ ସେ । ୧ ।
ସିଦ୍ଧଦେହେ ସ୍ୱ ସେବାରେ ରହି ପ୍ରତିଯାମେ
ଶ୍ରୀ ପଦାମ୍ବୁଜ ଯୁଗଳ ସଂବାହନେ ପ୍ରେମେ ସେ । ୨
ଚନ୍ଦନା ଗୁରୁ କାଶୀର ଚର୍ଚ୍ଚି ଭାଙ୍ଗୀ ଦେଖି
ସେବୋପାସ୍ଥନ ନିର୍ମାଣ କୁଶଳା ବଲ୍ଲବୀ ସେ । ୩
ଚତୁଃଷଷ୍ଟୀ କଳାନ୍ୱିତା କଶୋରୀ ପଦ ମା
ଶ୍ରୀମତୀ କରୁଣାର୍ଥିନୀ ସୁନ୍ଦର୍ୟ୍ୟ ରୂପିଣୀ ସେ । ୪ ।
ପଦ୍ମମାଧ୍ୱୀ ମଧୁର ସ୍ମିତା ସୁନାଗରୀ
ଗୋପାଳକୃଷ୍ଣର ସେବ୍ୟା ପ୍ରେୟସୀ ସାଗରୀ ସେ । ୫

—~✳—

### ରାଗ ବଙ୍ଗଳାଶ୍ରୀ—ତାଳ ଆଡ଼ତାଳୀ

କେବେ ମୁଁ ଅରୁଣ କମଳ ଦଳରେ
ଖେଯାଇବ କୁଞ୍ଜେ ଶେଯ
ପତଦ୍‌ଗ୍ରହ ଝରି ଆଦି ଯେ ଖଟଣି
ଖଟିବ ସମ୍ଭାର ସଜ । ୧
ଶ୍ରୀ ସ୍ୱାମିନୀଙ୍କର ସଂଗିନୀଙ୍କ ଦାସୀ
ଅଛମାନେ ସିଦ୍ଧାଙ୍ଗରେ
ଗୁରୁରୂପା ସଖୀ ବାମେନମ୍ର ମାଥେ,
ସଂଯୁକ୍ତ ହେବ ସଙ୍ଗରେ । ୨
କେବେ ହେବ ମୋର ଏମନ୍ତ ସୁଦିନ,
ରହିବ ସେବକା ପଣେ ।
ଗଣିବେ ସ୍ୱେଶ୍ୱରୀ ଅନୁକମ୍ପା କରି,
ମଞ୍ଜରୀ ମଧ୍ୟରେ ଜଣେ । ୩ ।

ମଧୁମୁଖାମ୍ବୁଜେ ତାମ୍ବୁଳ ବୀଟିକା
କେବେ ଯୋଗାଇବ ମୁହିଁ ।
ଶ୍ରୀ ବ୍ରଜେନ୍ଦ୍ର ଭାମା କାନ୍ତି ଆସ୍ୱାଦିବେ
ବଙ୍କିମ ନୟନେ ଚାହିଁ । ୪

ଗୋଷ୍ଠେନ୍ଦ୍ର ନନ୍ଦନ ବଦାନ୍ୟ କଳାସେ
ଶ୍ରୀବୃଷଭାନୁଜା ଠାରୁ ।
ଆସ ଗୋ ଯାବଟେ ବୋଲି ମୃଦୁସ୍ୱରେ,
ଡାକିବେ ମୋତେ ଉତ୍ସୁକ । ୫ ।
ଶ୍ରୀ ରୂପ ମଞ୍ଜରୀ, ମଦନ ମଞ୍ଜରୀ;
ଲଳିତାଦି ସଖୀ ଯେତେ ।
ଯଥା ଭ୍ରମର କଲେ ସେହ, ତଳତ
ନବଦାସୀ ଭାବେ ସୁତେ । ୬
କେବେ ମୋ ଉପରେ ବୃନ୍ଦାବନେଶ୍ୱରୀ
ଢାଳିବେ କରୁଣାବୃଷ୍ଟି ।
ଅଷ୍ଟକାଳୀୟ ପରିଚର୍ଯ୍ୟା ଗୋପାଳ-
କୃଷ୍ଣ କାଙ୍କ୍ଷେ ହୋଇ ତୁଷ୍ଟି । ୭ ।



## ଶ୍ରୀ ଶ୍ରୀ ଗୌରାଙ୍ଗ ସ୍ତବାମୃତ

( ଆଷାଢ଼ ଶୁକ୍ଳ ଦ୍ୱାଦଶୀ )

କନକ ରୁଚିର କାନ୍ତି ଶ୍ରୀ ଗୌର । ସର୍ବ ଭକ୍ତଜନ ଚିତ୍ତୈକ ଚୋର
ପ୍ରକୃତ ମଧୁର ସୁନ୍ଦର ତନୁ । ନବଦ୍ୱୀପ-ଚନ୍ଦ୍ର ଶ୍ରୀ ଶଚୀ ସୂନୁ
ସୁଲଳିତ ରୂପ
ଲାବଣ୍ୟ ମନ୍ଦର କନ୍ଦର୍ପ ଭୂପ । ୧ ।
କନ୍ତୁଳ କୁଞ୍ଚିତ ଚିକୁର ବନ୍ଧ । ପୁଷ୍ପବେଢ଼ା ସ୍ନିଗ୍ଧ ମୁଗ୍ଧ ପ୍ରବନ୍ଧ
ବକ୍ଷିତ ଷଟ୍ପଦ ମଞ୍ଜୁଳ ବେଶ । ମନୋହର ଜ୍ୟୋତି ତା ଶେଷବେଶ
ନର୍ତ୍ତନ ମୁରତି
ଲକ୍ଷ୍ମୀ ବିଷ୍ଣୁପ୍ରିୟା ପରାଣ ପତି । ୨ ।

ବିକଶିତ ପଦ୍ମ ବିସ୍ତାର ନେତ୍ର
ପବିତ୍ର ସ୍ନିଗ୍ଧ ଦୃକ୍ ପ୍ରେମ ପାତ୍ର
ଖଞ୍ଜ ମୃଦୁଳ ମଧୁର ଚରିତ୍ର
ମାଧୁରିମା ପ୍ରୋଜ୍ଜ୍ୱଳ ସବୁଠୁ ଗାତ୍ର
ଭକ୍ତଜନ ପ୍ରିୟ
ପତିତ ପାବନ ପ୍ରପନ୍ନାଶ୍ରୟ । ୩ ।
ପୂଣ୍ୟ ଲାବଣ୍ୟ ସଦନ ଶ୍ରୀଅଙ୍ଗ ।
କଳିତ ଲଳିତ ଛବି ତ୍ରିଭଙ୍ଗ
ସୁବିମଳ ସ୍ମିତ ସ୍ୱର୍ଣ୍ଣାବ୍ଜ ବକ୍ତ୍ର
ସୂକ୍ଷ୍ମ ନବପ୍ରାନ୍ତ ବସ୍ତ୍ରାନ୍ତ ରକ୍ତ
ରଭସ ବିହାର
ପୂର୍ଣ୍ଣାନନ୍ଦ ପୂର୍ଣ୍ଣ ଲୀଳା ଅବତାର । ୪ ।
ସକଳରସ ବିଦଗ୍ଧ ପ୍ରବର
ସର୍ବଜ୍ଞକ ପ୍ରବୁଦ୍ଧ ବିଶ୍ୱମ୍ଭର
ସର୍ବେଶ ସକଳ ସୁଖ ବିନୋଦ
ମହିମା ବିଖ୍ୟାତ ନୃତ୍ୟ ପ୍ରମୋଦ
ସକଳ ସୁଖଦ
ଧନ୍ୟ ତାରୁଣ୍ୟ ଧାମ ଗୌର ଚନ୍ଦ୍ର । ୫ ।
ନୟନ ଅବିରତ ଗଳଦସ୍ତ୍ର
ଅପ୍ରାକୃତ ପ୍ରେମଧାରା ସହସ୍ର
ସ୍ନାପିତ ସକଳ ଦେଶ ପ୍ରଦେଶ
ସଦା ଶ୍ରଦ୍ଧାଯୁକ୍ତ ନାମୋପଦେଶ
ଭୁବନ ବନ୍ଦିତ
ସର୍ବ ପ୍ରାଣୀ ନିସ୍ତାରକ ସାମନ୍ତ । ୬ ।
ସର୍ବାଙ୍ଗ ଘନ ପୁଲକ କଦମ୍ବ
ସୁନିର୍ମଳ ସ୍ଥୂଳ ମୁକ୍ତା ସମାମ୍ବୁ
ସ୍ନାପିତ ଚର ଲବ୍ୟ ହୃଦୋର
ଘନ ଘନ ପ୍ରେମ ହୁଙ୍କାର ଘୋର

ସଦସ୍ମ ମଧୁର
ମୂର୍ତ୍ତି ବିଶ୍ୱ ବିଖ୍ୟାତ କୀର୍ତ୍ତିସାର । ୭ ।
ଅଖିଳ ଭୁବନ ମଣ୍ଡଳ ଭର୍ତ୍ତା
ଶୋକ ଦୁର୍ଗତି ପରିତ୍ରାଣ କର୍ତ୍ତା
କୃପାଳୁ କଳି କଳୁଷ ନିହନ୍ତା
ଅକିଞ୍ଚନ ଦୀନ ଦୁଃଖୈକ ଶାନ୍ତା
ନିଜ ଗୁଣ ଗାଥା
ସଙ୍କୀର୍ତ୍ତନାନନ୍ଦ ପରମ ଦାତା । ୮ ।
ସୁର ମୁନି ଭକ୍ତ ନିକର ବନ୍ଦ୍ୟ
ବ୍ରଜାଙ୍ଗନା ପ୍ରେମ ଉଦ୍ରେକ ସିନ୍ଧୁ
ଅତୁଳ ପ୍ରକଟ ସୁରଭିନନ୍ଦ
ଶ୍ରୀଲ ସୁମଞ୍ଜୁଳ ପଦାରବିନ୍ଦ
ନଟନ ମଧୁର
ମନ୍ଦ ପ୍ରଗାଢ଼ ପ୍ରବନ୍ଧ ରୁଚିର । ୯ ।
ସକଳ ଆଗମ ନିଗମ ସାର
ଅପ୍ରାକୃତ ପ୍ରେମ ପୂର୍ଣ୍ଣାବତାର
ଅସୀମ ପ୍ରଚୁର ଗୁଣ ଗମ୍ଭୀର
ସର୍ବାଶ୍ରୟ ସର୍ବ ସନ୍ଧାନ ଧୀର
ଦରିଦ୍ର ବାନ୍ଧବ
ପୂର୍ଣ୍ଣ କାରୁଣ୍ୟ ସିନ୍ଧୁ ଦୁଃଖୀଧବ । ୧୦ ।
ସପ୍ରେମ ମୃଦୁ ମଧୁର ଆଳାପ
ବଶୀକୃତ ଜଗଜନ କଳାପ
କୋଟି ଶାରଦେନ୍ଦୁ ପ୍ରଭ ଆନନ
କୋଟି କନ୍ଦର୍ପ ଲାବଣ୍ୟାପଘନ
ଶୃଙ୍ଗାର ବିଗ୍ରହ
ରମ୍ୟ ବରନ ହେମ ବାରିବାଦ । ୧୧ ।
ଭକ୍ତ୍ୟାତ୍ମକ ଭକ୍ତ୍ୟାବୃର ତଦାଶ୍ରୀ
ପ୍ରେମ କେଳି ଲୀଳା ତାଣ୍ଡବ କାଶ୍ରୀ

ରସାବେଶ ମଦାଳସ ଲୋଚନ
ଜଗଦାନନ୍ଦ କନ୍ଦ ଭକ୍ତାଧୀନ
ସନ୍ତାପ ଖଣ୍ଡନ
ବଦଗ୍ଧା ନାଗରୀ ଭାବ ମଣ୍ଡନ । ୧୨ ।

ପ୍ରେମ ସୁଦ୍ଧାନ ଲଳିତ ଦ୍ୱିଭୁଜ
ଭକ୍ତବଶୀ ପ୍ରେମାରାଧ୍ୟ ପଦାବ୍ଜ
ଗୋପାଙ୍ଗନା ପ୍ରେମ ଭକ୍ତ ମଧୁର
ନଜଭାବ ରସୋଲ୍ଲାସୀ ସୁଧୀର
ରସିକ ଅଗ୍ରଣୀ
ନଟେନ୍ଦ୍ର ଶ୍ରୀ ନାଗର ଶିରୋମଣି । ୧୩ ।

ଶ୍ରୀ ମଧ୍ୱଜ କୁଳୋତ୍ତଂସ କିଶୋର
ଭକ୍ତ ସାଧ ଭକ୍ତ ରୂପୀ ଈଶ୍ୱର
ନିତ୍ୟାନନ୍ଦ ପ୍ରିୟତମ ନରତ
ଅଦ୍ୱୈତ ସେବ୍ୟ ପଦାମ୍ବୁଜ ଶୌର୍ଯ୍ୟ
ଗଦାଧର ପ୍ରିୟ
ଶ୍ରୀବାସାଦ ଭକ୍ତଜନ ଆଶ୍ରୟ । ୧୪ ।

ନରହରି ଶ୍ରେଷ୍ଠ ସ୍ୱରୂପ ପ୍ରିୟ
ସନାତନ ଗତ ଶ୍ରୀ ଜଗନ୍ନାଥ
ଶ୍ରୀରୂପ ହୃଦ ନିକେତନ ପ୍ରଭୁ
ଶଚୀ ନେହ ଶତ ଜଗନ୍ନାଥଭୁ
ଶ୍ରୀ ଦେବ ଦେବେଶ
ରାମାନନ୍ଦ ତତ୍ତ୍ୱକାଶ ନିଶୀଶ । ୧୫ ।

ଶ୍ରୀନିବାସାଦ ଭକ୍ତ ସୁପୂଜାନ
ସାର୍ବ ଭୌମାନଂଦ ଦାତା ବଦାନ୍
ସର୍ବ ଭକ୍ତ ମନୋରଥ ପୂର୍ତ୍ତିକ
ଅଶେଷ ଜୀବ ସଭାଗ୍ୟ ଦାୟକ

ଯୁଗଳ ପଦାବ୍ଜେ
ଗୋପାଳକୃଷ୍ଣ ନିରନ୍ତର ଭଜେ । ୧୬ ।
ଇତି ଶ୍ରୀ ଗୌରାଙ୍ଗ ପ୍ରଭାତୀର ଚଂମ୍ପୂ ଶ୍ରୀ





## ଶ୍ରୀରାଧାଙ୍କ ପ୍ରତି ବିଶାଖା

( ତାଳ—ଏକତାଳ )

ମିତଣି ! ଅନା ଘନ କାଳିଆକୁ
ଗୋବର୍ଦ୍ଧନ ପର୍ବତ ତୋଳିଆକୁ । ପଦ.।
କଦମ୍ବ ତଳେ ବସି                    ବାଏ ମୋହନ ବଂଶୀ
ଚୂଳେ ଖୋଷି ଛି ଜାମୁ ଡାଳିଆକୁ । ୧
ମଦନ ଜଣା ଛବି                    ଅଧର ଜିଣି ରବି
ଧନ୍ୟ ସେ ବ୍ରଜକୁଳ ପାଳିଆକୁ । ୨
ଦେଇ କୁସୁମ ବେଢ଼ା                    ସନ୍ନେ ବାନ୍ଧିଛି ଜୁଡ଼ା
ଅଙ୍ଗେ ଭରି ସୌନ୍ଦର୍ଯ୍ୟ ନାଳିଆକୁ । ୩
ଗୋପାଳକୃଷ୍ଣ କହି                    ଭକ୍ତିରେ ଦେଖିରହି
କାଳିଆ ବଂଶଧର ଗ୍ବଳିଆକୁ । ୪



## ଶ୍ରୀରାଧାଙ୍କ ପ୍ରତି—ଲଳିତା

ତାଳ—ଆଡତାଳି

ବନୋଦମା ଗୋ ।
ତୋ ବଦ୍ଧନେ ଶ୍ୟାମ ହେଲେ ହୀନମାମା ।
ଗେଲେସିନା ଅଭିମାନ କଲୁ
କ ଘଟିବ ପଛେ ନ ଚେତିଲୁ
ଧନ ଦମ୍ଭପରେ ଦମ୍ଭୋଳି ହେଲିଲୁ
ପ୍ରାଣମିତ
ଏ ଛଳୁଟି କାହାଘେନ ଗୋ । ୧

ବୁଝି ନାହିଁ ଯେତେ ବୁଝାଇଲେ
କ ମାତ ଯାଇ ଅଳ୍ପ ଶିଖାଲେ
ହାଣ ପଞ୍ଚବାଣ ଆଣିରେ ହାଣିଲେ
ପ୍ରାଣମିତ
ସମ୍ଭାଳିବୁ କ କହନ ଗୋ । ୨

ନାଗର ରାଜ ତୋ ଗୁଣ ଝୁରି
ଅନୁତାପାନଳେ ଯାନ୍ତି ସରି
କୃପା ପ୍ରସ୍ରବଣ ନସ୍ରବାଲେ ଗୋରୀ
ପ୍ରାଣମିତ
ଯିବ ଜିବେ ଜଳମଣି ଗୋ । ୩

ବସ୍ତୁର ତେଜ ଏ ଅବସ୍ଥର
ପ୍ରାଣ ବନ୍ଧୁରେ ନକର ପର
ଯାଉ ଯା ହେବାର କଥାକୁ ପାଶୋର
ପ୍ରାଣମିତ
ଗୋପାଳକୃଷ୍ଣ ଦସ୍ତିମା ଗୋ । ୪



## କାଚ ବିକା ଛାନ୍ଦ—ବୃଟତ୍ତ୍ର

ଆସ ଗୋ ବରଜ ବାଳୀ
ଆଣିଅଛୁ କାଚ ଭଲକୁ ଭଲ ଗୋ
କଳା, ଶ୍ୟାମଳଆ, ନେଳ
ଗୁଆଲୀ ଗୋ । ୧

ଯାହା କରଲୁ ଯେମନ୍ତେ
ସାଜବ ଗଢ଼ାଇ ନଅ ତେମନ୍ତେ ଗୋ
ବାଛ ନିଜ ଇଚ୍ଛାମତେ
ଗୁଆଲୀ ଗୋ । ୨

ବହୁ ଦୂରେ ମୋର ଘର
ଗାଆଁକା ନିମନ୍ତେ କରେ ବେପାର ଗୋ
ଖାଲ ମୂଳେ ମୂଳେ ବାରବାର
ଗୁଆଲୀ ଗୋ । ୩

ଶୁଣୁଛୁ ଏହି ଗୋପରେ
ଲକ୍ଷ୍ମୀ ଜନ୍ମିଛନ୍ତି ରାଧା ରୂପରେ ଗୋ
ତାଙ୍କ କଥା ଭାବ ବେହଥରେ
ଗୁଆଲୀ ଗୋ । ୪

ଆଗୋ ମୋ ବେପାର ଧନ
ତାଙ୍କର ହାତେ କରିବ ବଇନ ଗୋ
କାଚ ଦେଖି ମନ ପ୍ରିୟମାନ
ଗୁଆଲୀ ଗୋ । ୫

ଅପସନ୍ଦ କଲେ ସେହି
ଅନ୍ୟ କାହାରି କି ବିକବି ନାହିଁ ଗୋ
ସବୁ ଭାଙ୍ଗି ଦେବି ଫୋପଡ଼ାଇ
ଗୁଆଲୀ ଗୋ । ୬

ଗୋପାଳକୃଷ୍ଣ ଭାବଇ
କଳା କାଚ ବାନ୍ଧୁ ଦେବ ପିନ୍ଧାଇ ଗୋ
ଦେଖି ଖୁସି ହେବେ ସିନା ସଈ
ଗୁଆଳୀ ଗୋ । ୭



## ତାଳ—ଏକତାଳି

( ମାନମୟୀ ମାନସେ—ବୃନ୍ଦେ )

ରସନାରେ···କୃଷ୍ଣ କଥାରେ ବାନ୍ଧ ବାସନାକୁ । ପଦ ।
ଭବ ସାଗର ଅଥଳ
ନାହିଁ ତାର କେତୁଆଳ
ନାଉଶ ନାମେ ଚଳାଅ ରସନାକୁ । ୧ ।
ତରଣୀ ତନୟା ତଟେ
ନରେଶିବୁ ନୀପ ପୁଟେ
ଜପିଛୁ କାଣ୍ଡାରୀ ପାଇ ଭଣ ତାକୁ । ୨ ।
କୋଟି କାମ ଦେବ ଜିଣି
ସେ ଅଖିଳ ଚିନ୍ତାମଣି
ବ୍ରହ୍ମା ହର ଧାଉଁଛନ୍ତି ନିତି ଯାକୁ । ୩ ।
ସେ ଯାକୁ ହେବ ସଦୟ
ଜ୍ଞାନତା ହୁଏ ଉଦୟ
ନିର୍ଦ୍ଦୟ ହେଲେ କେ ନାହିଁ ତାରିବାକୁ । ୪ ।
ସଚରା ଚର ତାହାର
ଅଟଇ ଲୀଳା ଆଗାର
ଗୋପାଳ କୃଷ୍ଣ ସନ୍ତତ ଭାବିବାକୁ । ୫ ।



## ଡାଳ—ଝୁଲି

( ଶ୍ରୀଯୁକ୍ତ କୁନ୍ତଳ ସାହାଙ୍କ—କୃତେ )

ଶ୍ୟାମ ମୋ ଗଳାର ମାଳ ଗୋ
ଶ୍ୟାମ ଲାଗି ମୁଁ ପାଗଳ
ଶ୍ୟାମ ସୁମନରେ ଅଙ୍ଗ ଯତନରେ
ଭରିବ ପୂଜାର ଥାଳ ଗୋ । ପଦ ।
ଶ୍ୟାମଳ ବସନ କରି ପରିଧାନ
ତୋଳି ଶ୍ୟାମ ଫୁଲକଳି
ଶ୍ୟାମ ଚୂଳେ ଦେବି ଶ୍ୟାମଙ୍କୁ ପୂଜିବି
ଶ୍ୟାମ କୁଞ୍ଜେ ଖେଳି ଦୋଳି ଗୋ । ୧ ।
ଶ୍ୟାମଳ କଙ୍କଣ କରେ ଆଭରଣ
କରି ହୋଇବି ଛଇଳି
ଶ୍ୟାମ ବଂଶୀ ସ୍ୱନ ଶ୍ରବଣେ ଶୁଣିଣ
ନାଚୁଥିବି ତଳି ତଳି ଗୋ । ୨ ।
ଶ୍ୟାମ ନାମ ଶ୍ରୁତି- ରଟେ ଶୁଣି ମତି
ଉଠୁଥିବି ଫୁଲି ଫୁଲି ।
ଶ୍ୟାମ ଗୁଣ ଗାଇ ଛନ୍ଦୁ ଚମକାଇ
ଝୁଲୁଥିବି ଝୁଲି ଝୁଲି ଗୋ । ୩ ।
ଶ୍ୟାମ ବନ୍ଧୁ ମୋର ଚିର ଆପଣାର
ମୁଁ ତାଙ୍କର ରସକଳି
ଗୋପାଳ କୃଷ୍ଣର ଗାଏ ସେ ଶ୍ୟାମର
ଶ୍ରୀଚରଣେ ବନ୍ଧା ଦେଳି । ୪ ।





## ଶ୍ରୀକୃଷ୍ଣଙ୍କ ଅନୁଚିନ୍ତା

### ତାଳ—ଏକତାଳି

ମିତଣୀରେ ।
ପାଷାଣେ ଗଢ଼ିଲୁ କି ଛାତି ?
ବିନାଦୋଷେ ମାରୁ କପଟା ତରଙ୍ଗ ଗାଣ୍ଡରେ । ପଦ ।
ସପନରେ ଦେଖିଲେ ଥରେ
ଯାଶୋର ନାହିଁ ମୁଁ ରୋଗରେ
ବସିଛି ଅନାଇ ପଥେ ନିର୍ଜନ ଗୃହରେ । ୧ ।
ଚାନ୍ଦ ଛୁ ଚକୋର ମୁହିଁ
ବିନୁ ଆନ ନଜାଣଇ
ତୋ ଲାଗି ସିନା ବନ୍ଧୁ ଆ ଜଗତେ ମୁଁ ମାଣ୍ଡରେ । ୨ ।
ଛୁ ଯେବେ କହିବୁ ଘର
କହ ମୁଁ ହେବି କାହାର
ଝର ଝର କରିବ ଯେ ଦେବକୀ ନାଣ୍ଡ ରେ । ୩ ।
ଗୋପାଳ କୃଷ୍ଣ କହଇ
ଦୟାବନ୍ତ ଦୟାମୟୀ
ଆଶ୍ରିତଙ୍କୁ ଦାନ କର ଥରେ ତୋ ସାଥୀରେ । ୪ ।



## ଶ୍ରୀରାଧାଙ୍କପ୍ରତି—ସଖୀଗଣ

### ଝାଂପ—ତାଳ

ମାନିନୀ ତୋ ମନୁ ମାନ ମାରିଦେ ଏଥରରେ
ମୋର ନାଥ ହୋଇଲେଣି ବିରହେ କାତର ରେ । ପଦ ।
ସାର ସାରସ ନୟନା
ବାରଣ ବର ଗମନା
ଶ୍ରୀର କଥାକୁ କେଣେ ତୁ ହୃଦୟରେ କରୁଥାଉ । ୧ ।
ଯାର ଶ୍ରୀଚରଣ ଧୂଳି
ହର ବ୍ରହ୍ମା କରେ ଅଳି
ତାର ହେଲେ ଅପରାଧ କାହାକୁ ଜଣାଇବାର । ୨ ।
ତାରକ ପତି ଲପନା
କାହେ ମାନ କର ଘେନା
କାମନାଧି ସୁତାପତି ଉପଜିଛି ଶୁଣ୍ଣତର । ୩ ।
କଳଙ୍ଗୀ ନରୁଷ ଆଜି
କର କୃପା ଦୁଃଖଯାଜି
ଗୋପାଳ କୃଷ୍ଣ ଭଣିଲ ଚିନ୍ତ ବାରିକ ପପୁର । ୪ ।



## ଶ୍ରୀକୃଷ୍ଣଙ୍କପ୍ରତି—ଲଳିତା

### ତାଳ—ଖେମଟା

କହ ହେବାରୁ ଯେ ଧୂଳରେ ଧୂଷର କେଣେ ?

ଚନ୍ଦ୍ରାବଳ କୁଞ୍ଜ ତେଜି ରସ ରାଜ
କି ଲାଗି ଆସିଲ ଏଣେ । ପଦ ।

ହେନୂଆ ଛଇଳ ଚତୁରେ କି ଭାବିଲ
ନଗୁହିଁଲ ଆଖି କୋଣେ ।
ରାତି ଗୋଟାଯାକ ପୀରତି ମାଦକ
ଲୁଟି କଲୁ ପିନା ଜଣେ । ୧ ।

ହେ କଳା କାଞ୍ଚନ ଦଳା ଅଗ ଘନ
ତୋଳା ପ୍ରତିମାକୁ କଣେ
କଣା କର ଖଣା ଖାତେ ଦେଲୁଠଣା
ପାଞ୍ଚଥିଲ କି ପରାଣେ । ୨ ।

ଜାଣି ସ୍ମରବର କୁସୁମ, ନାଗର
ଦଳ ଦେଇଣ ଚରଣେ
କଂଶୁକରେ ଚତ୍ତ ଦେଲ ହେ କଞ୍ଚୁତ
ଝରୁରିଲ ନାହିଁ ମନେ । ୩ ।

କଢ଼ିଗଲ କଥା ଏବେ କପାଁ ମଥା
ପୋଛୁଛ କହ ମଣ୍ଡନେ
ମୀନ ନୟନାକୁ କ୍ଷୀଣ କରିବାକୁ
ଆଜ କି ପାଞ୍ଚୁଛ ମନେ । ୪ ।

ଯା ହେବାର ହୋଇ ଗଲ ହେ ମାଧୋଇ
ଫେରିଯା ନିଜ ସଦନେ
ଗୋପାଳ କୃଷ୍ଣର ମାନ ଗୁରୁତର
ନ ମେଣ୍ଟ କି ବୋଲି ଜାଣେ । ୫ ।



## ରାଗ—ଝିଙ୍ଘଣ୍ଟା

ଘନକାଳେ ବନଜାକ୍ଷି ମନେ କି ପାଞ୍ଚିଲୁରେ

ବନେ ବନେ ବୁଲାଇଲୁ । ପଦ ।

ଭାଗିରଥୀ ଘାଟରେ ଅବଗାହନ ମୁଞ୍ଚିଲୁରେ
ଗୋଷ୍ପଦ ସଲିଳ ସାଗ୍ନି ସର୍ବାଙ୍ଗେ ସିଞ୍ଚିଲୁରେ । ୧ ।
ଛଳ ବଚନକୁ ଉପସ୍ଥିତ ବସ୍ତୁରିଲୁରେ
ପଟେଛ ଯାର ଦେଖୁ ସିନା କାଇ ନପାରିଲୁରେ । ୨ ।
କାଞ୍ଚ ବୋଲି କାଶ୍ଵଜାକ୍ଷୀ ସୁଧାକୁ ତାଳିଲୁରେ
ଖାରି ସାଗର ବାରିରେ ସାକର ଗୋଳିଲୁରେ । ୩ ।
ଆପଣାର ଜନକୁ ତୁ ଭଲେ ନ ବୁଝିଲୁରେ
ଛନା ଦୋଷେ ଲେଖୁପତ୍ର ଦୂରେ ଫିଙ୍ଗି ଦେଲୁରେ । ୪ ।
ଚନ୍ଦନ ବୃକ୍ଷେ କର୍କଟୀ ଲତା ଚଢ଼ାଇଲୁରେ
ଖଦ୍ରାକ୍ଷ ଗୁଚ୍ଛକୁ ଦାଗ ଖୋଜି ମଣ୍ଡାଇଲୁରେ । ୫ ।
ଜାଣିବାର ହୋଇ ଜବା ଜାଣି ନପାରିଲୁରେ
ଅମଳ ପାଣି ପିଇକି ଅବେକ ହାରିଲୁରେ । ୬ ।
ମନେ ଥାଉ ମିତଣୀ ତୁ ଯାହା କରି ଦେଲୁରେ
ଗୋପାଳକୃଷ୍ଣ କହଇ ହିଲେ ନଗ୍ନଭାଲୁରେ । ୭ ।



# ଶ୍ରୀକୃଷ୍ଣଙ୍କପ୍ରତି ଯଶୋଦା

( ବାତ୍ସଲ୍ୟ )

## ରାଗ—ତାଲ ଝୁଲା

କୋକ ଧରି ନେବରେ ଶୋଇ ପଡ଼ ବାପ ଧନ ।
ବଡ଼ ବଡ଼ ଆଖି ଜହ୍ନମାମୁଁ ପରି
କୁଲା ପରି ତାର କାନ । ପଦ ।
ଅନ୍ଧାର ରାତିରେ କୁଟିଳ ଚ ଆସେ
ଗାଆଁ ହୋଇଲେ ନିର୍ଜନ
ଅଝଟ ଟୁଆଙ୍କୁ ଧରି ନେଇ ଯାଏ
କରି ମେଘ ଗରଜନ । ୧ ।
ଦାନ୍ତ ନାକୁଟି ସେ ଆଖି ତରାଟିଲେ
ଡରନ୍ତି ଜଗତ ଜନ
କାନ କାଟି ନେବ ନାକ କାମୁଡ଼ିବ
ମାଡ଼ ଦେବ ଘନ ଘନ । ୨ ।
କାଲି ଆସି ଆମ ଗାଆଁରେ ପଶିଲା
ଚେଇଁ କାନ୍ଦୁଥିଲା ଘନ
ଧରି ନେଇ ତାକୁ ଫୋପାଡ଼ ଦେଇଛି
ହୋଇଛି ସେ ଅଚେତନ । ୩ ।
ଅଝଟ ନହୋଇ ଶୋଇପଡ଼ କାହ୍ନୁ
ବୁଡ଼ିଲାଣି ପରା ଜହ୍ନ
ବଳରାମ ଭାଇ ଦୁଧସର ଖାଇ
ନିଦେ ହେଲାଣି ଅଜ୍ଞାନ । ୪ ।
ଭୁଞ୍ଜାଇ ଦେଉଛି ସରଲବଣୀ ତୁ
ସୁଖରେ କର ଭୋଜନ
ଠାକୁର ମନ୍ଦିରୁ ଫେରୁଥିବେ ବାପା
ସାରି ଗୋବିନ୍ଦ ଭଜନ । ୫ ।

ଦେଖୁ ଦେଖୁ କୃଷ୍ଣ ମାଡ଼ ଆସିଲାରେ
କୋକ ହେଲାଣି ଉଛନ୍ନ
ଏକ୍ଷଣି ଆସିବ କାନ କାଟି ନେବ
ଗୋପାଳ କୃଷ୍ଣ ରଚନ ।୭।

—*—

## ଶ୍ରୀକୃଷ୍ଣଙ୍କ ପ୍ରତି—ଗୋପୀ

### ତାଳ-ଝୁଲା

ନାଗରବର ।
ଧଣ୍ଡ ପଡ଼ିଛ ଏହ୍ଵଥର । ପଦ ।
ଆସି କାତର ବେଶେ ଭଣ୍ଡୁଛ ଆମ ପାଶେ
ବାନ୍ଧିବୁ ଯେନ ପ୍ରୀତି ଡୋର । ୧ ।
ଆମ୍ଭେ ଗୋପ ତରୁଣୀ ଚତୁର୍ଦ୍ଦ୍ଦିଗେ ମଣି
ତୁମ୍ଭେ କ ଆମ୍ଭଠୁଁ ଚତୁର । ୨ ।
ଧଣ୍ଡାଇ ଦେବୁ ଘରେ ରାଧିକାଙ୍କ ହାତରେ
ପାଇବ ନାହିଁଟି ନସ୍ତାର । ୩ ।
ତୁମେ ସେହୁ ହଟିଆ ଧିଠ ନଠନୁଟିଆ
ଦଧି ଦୁଧ ଲବଣୀ ଚୋର । ୪ ।
ବ୍ରଜ ଏ ଠକ ଗିର ଲମ୍ପଟ ବଂଶୀଧାରୀ
ଏଠାରେ ନୁହେଁ ଚଳିବାର । ୫ ।
ଆମ୍ଭ ସଖୀ ଶ୍ରୀମତୀ ଗୁମାନ ବଢ଼ି ଅତି
ପ୍ରତିଜ୍ଞା କରିଛି କଠୋର । ୬ ।
ତାର ଦୁର୍ଜ୍ଜୟ ମାନ ଖଣ୍ଡିବ କେ ଭଜନ
ନହେବ କହିଲୁ ନକର । ୭ ।
ଫେରିଯାଅ ହେଝଟ ପୀତପଟିଆ ଶଠ
ଗୋପାଳ କୃଷ୍ଣର ବଚ୍ଚର । ୮ ।

—*—

## ତାଳ—ଆଠତାଳ

( ଥାପିରେ କହନ୍ତ—ବୃନ୍ଦେ )

ମନାଇ କହ ମୋ ନାଁରେ ରେ-ପ୍ରାଣମିତ
ମନେ ନପଡ଼େ ତାଙ୍କର
ଯେନାଇ କହିଲେ ନଶୋଦନନ୍ଦ ଶୁଣେ
ବସୁରିଲେ କବା ପରରେ
ପ୍ରାଣମିତ । ୧ ।
ଶଙ୍ଖସ୍ଥ ରଥାଙ୍ଗ ଦଶା କହ ଶ୍ରୋଗ
ଧୃତ କି ରହିଲ କାର ?
ପ୍ରିୟଜନ ପ୍ରୀତି ତେଜ ହେ ସୁବନ୍ତି
ରହିଛନ୍ତି ହୋଇ ସ୍ଥିର
ପ୍ରାଣମିତ । ୨ ।
ସ୍ମିତ ଯୁକ୍ତ ବଦନ ଦର୍ଶନେ ମଦନ
କରିଥିଲ ପିଡ଼ା ଦୂର
ଏବେ ବିରହରେ ମହୁଛି କାତରେ
ପ୍ରାଣ୍ଡୁ ଉଠେ ହାହା କାରରେ
ପ୍ରାଣମିତ । ୩ ।
ମଦନ ଦମ୍ଭୋଳ ଘାତେ ମନ କଳ
ହୋଇଲଣି ଶତେ ଚୂର
ସିଞ୍ଚ କୃପାକାର ସେ ମୁରଲୀ ଧାରୀ
ବସୁରନ୍ତୁ କଣ୍ଠବାର ହେ
ପ୍ରାଣ ମିତ । ୪ ।
ଶ୍ୟାମ ବିରହିଣୀ ଭଦ୍ରକା ରମଣୀ
ସ୍ୱଶବ୍ଦ'ଣ ଦେବା ସାର
ମାରନ୍ତୁ ତାରନ୍ତୁ ଯା ଇଚ୍ଛା କରନ୍ତୁ
ଗୋପାଳକୃଷ୍ଣ ବସୁର ହେ
ପ୍ରାଣମିତ । ୫ ।



## ଶ୍ରୀରାଧାଙ୍କ ପ୍ରତି—ସଖୀଗଣ

### ତାଳ—ଅଠତାଳି

ସଖି ! ଢ଼ାଳିକି ହେବ ଲୁହ ଧାରକୁ ରେ
ଜାଣି ପିଙ୍ଗିଲୁ ମଣି ହାରକୁରେ । ପଦ ।

ବାଣି ନପାରି ବାଣ
ବୋଲରେ ଶମ୍ବାଧସ୍ତ
ଡେଇଁ ଗଲୁ ଅମୀସ୍ତ ଝରକୁ ରେ ।
ବର୍ଣ୍ଣି ଦେଖି ଗଣ୍ଡୁଷ
ପିଇଲୁ କାଳକୂଟ
ଡାକିବୁ ବୋଲି ମୃତ୍ୟୁ ଚରକୁରେ । ୧ ।
ଯାହାଙ୍କୁ କରୁ ମାନ
ସେ ତୋ ଜୀବ ଜୀବନ
କ୍ଷମା କରୁଛୁ ହର ବରକୁ ରେ ।
କରଜ ଆଢ଼ୁ ଲୁଷା
ଅରଜ ଦେବନ ଯୋଷା
କୋଳକୁ ଆଣ ଧରି କରକୁ ରେ । ୨ ।
ଫୁଲ ତଳପ ତେଜ
ଧୂଳି ଦାଣ୍ଡରେ ମଜ୍ଜି
ଶୋଇ ବାର ନ କର ଧାରକୁ ରେ ।
ଶତ କଦମ୍ବ ଦେହା
ଅସୁନ୍ଦରହି ଏହା
ବନ୍ଧୁକୁ କର ଅଙ୍ଗୀକାରକୁ ରେ । ୩ ।
ତୋଲଗି ଦନୁ ଦନ
ଶ୍ୟାମ ହେଲେଣି କ୍ଷୀଣ
ଅଣ୍ଡ୍ରିଲେଣି ଶମନ ଘରକୁ ରେ ।
କରୁଣା ବରଷାଇ

ଅଞ୍ଜୁଣା ଧରି ଯାଇ
ଅପ୍ରାଧ ମାଗ ବନ୍ଧୁ କରିବୁ ରେ । ୪ ।
ନୁହେଁ ସେ ଆନଜନ
ତୋର ନୟନ ଧନ
ଝୁହଁ। ଥରେ ତା ନେହ ଝୁରିବୁରେ ।
ଗୋପାଳ କୃଷ୍ଣ କହି
ମନ୍ଦ ମଧୁରେ ସ୍ତୁହିଁ
ବିନାଶ ତା ବିରହ ଜରିବୁ ରେ । ୫ ।

—*—

## ରାଗ ବେହାଗଡ଼ା—ତାଳଝୁଲା

ଭଜ ମନ, ଗୋପେନ୍ଦ୍ର ନନ୍ଦନ ବଂଶୀ ଧାରୀଙ୍କି
ଶିଖୀ ଶିଖଣ୍ଡ ମୁକୁଟ ଶ୍ରୀ ବ୍ରଜ ବିହାରୀଙ୍କି । ପଦ ।

ଗୋକୁଳ କୁଳଜା ପତି ବ୍ରଜ ଭଞ୍ଜକାରୀଙ୍କି
ଚପଳା ଛଟ ନୀପ ଅଟଣୀ ସଞ୍ଚାରୀଙ୍କି । ୧ ।

ନବୀନ ଘନ ସୁନ୍ଦର ଭକ୍ତ ଚିତ୍ତ ହାରୀଙ୍କି
ସୁରତି କେଳି ନିବାସ ବକାଘ୍ନ ଅଘାରୀଙ୍କି । ୨ ।

ଶ୍ରୀରାଧା ମାନସ ହଂସ କେଶବ କଂସାରୀଙ୍କି
କୋଟି ମନ୍ମଥ ମନ୍ମଥ କଳୁଷ ନିବାରୀଙ୍କି । ୩ ।

ଧାତା ଗର୍ବ ଖର୍ବ କର ସର୍ବ ଅବତାରୀଙ୍କି
ଇନ୍ଦ୍ର ଦର୍ପ ହର ଦାବାନଳ ପାନକାରୀଙ୍କି । ୪ ।

ବନ୍ଧୁପ୍ରାଣ କବଳିଆ ଷଣ୍ଢ ଶକଟାରୀଙ୍କି
ଗୋପାଳ କୃଷ୍ଣର ହୃତ୍‌କମଳ ମଧୁହାରୀଙ୍କି

## ଶ୍ଳୋକ

ଅସଚ୍ଚେଷ୍ଟା କଷ୍ଟ ପ୍ରଦ ବିକଟ ପାଶାଳି ଭିରିହ
ପ୍ରକାମଂ କାମାଦି ପ୍ରକଟ ପଥପାତି ବ୍ୟତିକରୈଃ
ଗଳେ ବଦ୍ଧ୍ୱା ହନ୍ୟେଽହମିତି ବକଭିଦ୍ ବର୍ତ୍ମପଗଣେ
କୁରୁତ୍ୱଂ ଫୁତ୍କାରାନବତି ସ ଯଥାତ୍ୱାଂ ମନଃ । ଇତଃ ।

## ରାଗ କଲ୍ୟାଣ ତାଳ—ଏକତାଳ

ଜାଣ ଆରେ ମନ । ଘୋଷା ।

କାମ କ୍ରୋଧାଦି କୁପଥ ଜନ୍ତାଙ୍କ ନିକର ।
ଅସତ୍ ପ୍ରବୃତ୍ତି କଷ୍ଟପ୍ରଦ ଭୟଙ୍କର । ୧ ।
ଘୋଷଣ ଦଉଡ଼ିମାନ ଦୃଢ଼ତ ଗଳେ ବାନ୍ଧି
ବିନାଶ କରୁଅଛନ୍ତି ମୋତେ ନିରବଧି । ୨ ।
ଏଣୁ ତୁ ଶ୍ରୀକୃଷ୍ଣ ଭକ୍ତ ମାନଙ୍କର ପାଦରେ
ସକାତରେ ଉଚସ୍ୱରେ କାନ୍ଦ ଅନ୍ତର୍ନିଶେ । ୩ ।
ତେବେ ରୋଦନ ଶୁଣି ସେହି ସାଧକ ବୈଷ୍ଣବେ
ଆସି ଏ ଶତ୍ରୁଙ୍କ ହସ୍ତୁ ରକ୍ଷଣ କରିବେ । ୪ ।
ନିର୍ଭିର ହୋଇ ତତ୍ତ୍ୱାନ୍ତ କୃଷ୍ଣ ପ୍ରେମାନନ୍ଦେ
ସେବା କରିବ ନିଶ୍ଚିନ୍ତେ ଶ୍ରୀରାଧା ଗୋବିନ୍ଦେ । ୫ ।



# ସଖୀଙ୍କ ପ୍ରତି ଶ୍ରୀରାଧା

( ଶ୍ରୀରାଧା ବାଉଳୀ—ବୃତ୍ତେ )

ଶୁଣ ପ୍ରାଣମିତ ଅନ୍ତ ବୃତ୍ତାନ୍ତ
ଯାହା କଲେ ନନ୍ଦ ସୁତ କାହ୍ନୁ,
ଯାଶୋର ନହିବ ଥିବା ଯାଏ ଜୀବ
ତାକଥା ମୋହର ବନେ ମନୁ ।
ଆଗୋ ପ୍ରିୟ ଆଳୀ
ନଟକୁଟି ଆସେ ବନମାଳ
ଯମୁନା ତଟରେ ଘାଟ ନିକଟରେ
ନାଚଥିଲେ ରଙ୍ଗେ ଢଳ ଢଳ । ୧

ଖରା ବେଳେ ମୁହିଁ ଗଲି ଘାଟ ପାଇଁ
ନଟବେଳା ଦେଖି ପାଶେ ମିଳିଲି
ଅଧର ଥରାଇ ଅଶ୍ରୁ ବରଷାଇ
କାଖକର ମାଇଁ ଗୋ ବୋଇଲି
ସ୍ନେହ ନଭାଙ୍ଗିଲି
କଳସୀ ରଖି କୋଳକୁ ନେଲି
ମୋ ଉରଜେ ହାତ ଥୋଇ ଗୋ ସଙ୍ଗାତ
କଲି ନାନାରଙ୍ଗେ ଖିଆଲି । ୨

ବାଳ କୁମରର ଦେଖି ଅବସ୍ଥାର
କୋଳରୁ ଓହ୍ଲାଇ ଦେଲି ତଳେ
ବୋଇଲି ମୋ ନଷ୍ଟ୍ ସ୍ୱୈରଣୀ ତୁ ଅଟୁ
ଦଅ ନୋହିଲେ ମୁଁ ନେବି ବଳେ
ପକାଇଲି ଡକା
ଶୁଣି ମିତ ମୁଁ ହେଲି ଚାଟକା
ମହତ ହାରିଲି ଲାଜେ ମରିଗଲି
ଯାହା କଲା ସେ କାଳିଆ ଟୋକା । ୩

ଯଶୋଦା ଆଗରେ                    କୋଇଲ ରଙ୍ଗରେ
ଝାଡ଼ଦଅ ତୋ ଘୁଡ଼ର ବାସ
ଝାଡ଼ନ୍ତେ ଘଣନ୍ତ                    ସରଦେଖ ମିତ
ଦେଖି ସର୍ବେ କଲେ ଉପହାସ
ଲାଜେ ଜଳ ଗଲି
ମୁଖ ପୋତି ପଳାଇ ଆଇଲି
ଭାବ ସେ ବାସର                    ହୋଇଲା ଅସର
ମନକଥା ମନରେ ସାରିଲି । ୪
ସେଦିନୁ ଗୋ ସହି                    ଜୀବନରେ ଥାଇ
ମୃତପରି ମୁଁ କାଟୁଛି କାଳ
ଧନ୍ୟ ସେ କାଳିଆ                    କାଇଁଚ ମାଳିଆ
ଜାଣେ କେତେ କଳ କଉଶଳ
ଦଗାଦାର ଖଣ୍ଡ
ପଦେ ନମଇ ଗୋପାଳକୃଷ୍ଣ
ଯାହା କଲେ କରୁ                    ମନୁ ନ ପାଶୋରୁ
ସେହି ସିନା ମୋ ପ୍ରାଣର ଇଷ୍ଟ । ୫

—*—

## ଶ୍ରୀକୃଷ୍ଣ ପ୍ରତି ବ୍ରଜବଧୂ

( ଚାଳ—ଝୁଲା )

କଳା ଶ୍ରୀମୁଖ ହେ ! ଏସନ୍ତ ଶିଖିଲ କାହୁଁ
ତୁମେ ନବ ଘନ                    ନୃପତି ନନ୍ଦନ
ମୁଁ ତୁମ ପରଜା ବୋହୂ । ପଦ ।
ଦାଣ୍ଡଦାଣ୍ଡେ ଏତେ ଚାପଡ଼ ଖେଳିଲେ
କେ ସହିବ ଭଲ ସହୁ
ଜାଣିଲେ ନଣନ୍ଦ                    ଆରମ୍ଭିବ ଦ୍ୱନ୍ଦ
ଚନ୍ଦ୍ରକୁ ଯେମନ୍ତ ରାହୁ । ୧

ବରଜେ ରହିଛୁ ଘର କରିସିନା !
ନିଜ ଭିତ ନିଜେ ଖାଉ
ନୃପତି ବସୁରେ ଭୁମ ଅଳିନ୍ଦରେ
କେବେ ହାତ ନ ପଡାଉ । ୨
ଏତେ଼ ଅଲଯୁକ ବନମାଳି ତୁମ୍ଭେ
କାଆଗେ କହିବ ଆଉ
ସାହା କଲେ କର ସବୁ ସହିବାର
ଜୀବନ ପଛକେ ଯାଉ । ୩
ଆହେ ଘନ ଶ୍ୟାମ ଶ୍ରୀରଙ୍ଗା ଚରଣ
ସେବାରେ ଏ ଦିନ ଯାଉ
ନାମ ଶୁଣିବାରେ କାମ୍ୟନରନ୍ତରେ
ଗୋପାଳ କୃଷ୍ଣର ଥାଉ । ୪

—*—

## ରାଗ ଶଂକରା ଭରଣ—ତାଲ ଆଠତାଳି

ଯେନ ଅବୋଧମନ !
ବ୍ୟର୍ଥେ ହୋଇ ନ ଯା ବୁ ଉଛନ୍ନ ରେ । ଘୋଷା
ଦୁଷ୍ଚିନ୍ତା କରକି ବର ଭାବେ ମନ
ଯୁଗଳ ନାମ ଭଜନ ରେ
କରିବୁ ଅପୂର୍ବ ଆନନ୍ଦାନୁ ଭବ
ସେବାନୁ ହୋଇ ଭଜନ ରେ । ୧
ରାଧେକୃଷ୍ଣ ରାଧେ କୃଷ୍ଣ ବୋଲି ଭନ୍ତା
ପ୍ରେମ ଲୋଚନେ ନୟନ ରେ
କୃପାମୟୀ ବନେ— ଶୁଷ୍କ ଦଶାଇବେ
ଶ୍ରୀ ବୃନ୍ଦାରଣ୍ୟ ଅୟନରେ । ୨
ଜନ୍ମ ଜନ୍ମାନ୍ତର, ଦୁଷ୍କୃତ ତୋହର
ତତ୍‌କ୍ଷଣେ ହେବ ଦହନ ରେ

ଚଳ ଯିବୁ ସୁଖେ ଚିନ୍ମୟ ଧାମକୁ
ଲଭି ସିଦ୍ଧ ଅପଧନ ରେ । ୩
ସ୍ୱାଦରେ ଶ୍ରୀଗୁରୁ ରୂପା ସହଚରୀ
ନେବେ କରି ଆଲିଙ୍ଗନରେ
ସବ ସଖୀ ମଞ୍ଜ— ସାଙ୍କ ଶୁଭ ଦୃଷ୍ଟି
ତୋ ପରେ ହେବ ପତନ ରେ । ୪
ଶ୍ରୀଲଳିତା ସଖି ଦେବେ ଯେ ଚାହାଁଇ
ସ୍ୱାମିନୀଙ୍କ ସନ୍ନିଧାନ ରେ
ନବଦାସୀ ପଣେ ରଙ୍ଗକୁ ଗହଣେ
କରୁ ସେ ଅନୁମୋଦନ ରେ । ୫
ସ୍ଥାନ ତୋ ପାଇଁରେ ସେ ଯୋଗପୀଠରେ
ହୋଇ ଅଛି ନିରୂପଣରେ
ଗୋପାଳକୃଷ୍ଣ ଏ ଭାଗ୍ୟ ଲୋଭେ ଲୋଭେ
ଧନ୍ୟ ମଣିବ ଜୀବନରେ । ୬

—*—

## ରାଗ, ଦୀର୍ଘଛନ୍ଦ—ଭାଲ ନିପୂର୍ଣ୍ଣ

ସେନରେ ଅବୋଧମନ ଅନ୍ୟେ କିବା ପ୍ରୟୋଜନ
ସଦା ଚିନ୍ତ ନିତ୍ୟ ବୃନ୍ଦାବନ
ଦିବ୍ୟ ଚିନ୍ତାମଣି ଧାମ କରନ୍ତି ତହିଁ ବିଶ୍ରାମ
ଯେ ନିଭୃତକୁଞ୍ଜ ନିକେତନ । ୧
ଦିବ୍ୟ ଚକ୍ଷୁରେ ଯାହାର ଭାଗ୍ୟେ ଅଛି ଦେଖିବାର
ସେ ଦେଖଇ ରତ୍ନମୟ ସ୍ଥଳ
ରାଧାକୃଷ୍ଣ ଲୀଳାମନ ସାର ସୁସାଧ ସାଧନ
ସିଦ୍ଧତନୁ ଲଭେ ସେ କେବଳ । ୨
ଏ ସତ୍ୟ ନିତ୍ୟ ନିଷ୍ଠସ୍ୱେ ଅନ୍ୟ ଅଭି କହୁନୁହେ
ସଂଶୟ ନ କର ଏଥିଲେଶେ

ବ୍ରଜବନ ଲୀଳାପାକ ସାଧନେ ତୃଷ୍ଣ ସାଧକ
ବ୍ରଜେ ସିଦ୍ଧ ଦେହ ଭାବା ବେଶ । ୩
ଲଳିତା ବିଶାଖା ଆଦି ସଖୀଙ୍କ ଅନୁଗା ସାଧି
ସେବ ଶ୍ରୀ ସ୍ୱାମିନୀଙ୍କ ଚରଣ
ଗୋପାଳକୃଷ୍ଣ ଭାରତି ଏ ବନ୍ଧୁ ବାଞ୍ଛିଛି ଗତି
ସେ ପଦାବ୍ଜେ ପଶି ଯା ଶରଣ । ୪



—ଶ୍ଳୋକ—

ମଧୁଷା ନାଥବେ ବ୍ରଜ ବିପିନ ଚନ୍ଦ୍ରଂ ବ୍ରଜବନେ
ଶ୍ୱସ୍ତଂ ତାଂ ନାଥବେ ତଦତୁଳ ସଖୀତ୍ୱେନ ଲଳିତାଂ
ବିଶାଖାଂ ଶିକ୍ଷାଳୀ ବିତରଣ ଗୁରୁତ୍ୱେ ପ୍ରିୟସରେ
ଗିରୀନ୍ଦ୍ରୌ ତତ୍ପ୍ରେକ୍ଷା ଲଳିତ ରତିଦତ୍ୱେ ସ୍ମର ମନଃ ।

—*—

## ରାଗ ବଙ୍ଗଳାଶ୍ରୀ—ତାଳ

ଶୁଣ ଆରେ ମନ ! ଯଥାର୍ଥ ବଚନ କହୁଅଛି ତୋତେ ମୁହିଁ
ଜଠରରେ ଯେନ ତୁ ଅନା ଉଜ୍ଜ୍ୱଳ ବସ୍ତୁ ଜାଣିଲେ ରହି । ୧
ଶ୍ରୀବୃନ୍ଦାରଣ୍ୟ ଚନ୍ଦ୍ରଙ୍କୁ ଶ୍ରୀରାଧାଙ୍କ ପ୍ରାଣ ନାଥ ରୂପେ ଚିନ୍ତ
ସ୍ୱାମିନୀଙ୍କୁ ବ୍ରଜେନ୍ଦ୍ରଙ୍କ ପ୍ରିୟାରୂପେ ଭାବନା କର ସତତ ।
ଲଳିତା ସଖୀଙ୍କି ଶ୍ରୀକିଶୋରୀଙ୍କର ଶ୍ରେଷ୍ଠ ସଂଗିନୀ ସ୍ୱରୂପେ
କରନ୍ତୁ ଭଜନ ପ୍ରେମରେ ମଗ୍ନ ହୋଇ ସଦାନଂଦେ ଆପେ । ୩
ବିଶାଖା ଆଲୀଙ୍କି ଶିକ୍ଷାଗୁରୁ ପଦେ ସାଦରେ କରିବରଣ
ଶ୍ରୀକୁଣ୍ଡ ଗୋବର୍ଦ୍ଧନଙ୍କୁ ରତିପ୍ରଦ ସ୍ୱରୂପେ କର ସ୍ମରଣ । ୪
ଏସିନା ତୋହର ସାଧନ ସରଣୀ ଅନ୍ୟେ କିବା ପ୍ରୟୋଜନ
ଗୋପାଳ କୃଷ୍ଣଙ୍କୁ ଭୁଲନା ମାନସ କୁପଥେକରିଗମନ । ୫



## ରାଗ—ଦୀର୍ଘଛନ୍ଦ ତାଳ—ତ୍ରିପୁଟା

କହୁଛି ଦେନରେ ମନ ! ଅନ୍ୟେ କିବା ପ୍ରୟୋଜନ
ସଦାଚିନ୍ତ ନିତ୍ୟ ବୃନ୍ଦାବନ
ଦିବ୍ୟ ଚିନ୍ତାମଣି ଧାମ କରନ୍ତୁ ତହିଁ ବିଶ୍ରାମ
ଯେ ନିଭୃତ କୁଂଜ ନିକେତନ । ୧
ଗୋବର୍ଦ୍ଧନ ଗିରିବର ସୁଖେ ପ୍ରଦକ୍ଷିଣ କର
ମୁଖେ ଗାଇ ସେ ଲୀଳା ପ୍ରସଙ୍ଗ
ଗୋବିନ୍ଦ କୁଣ୍ଡରେ ବୁଡ଼ ଇନ୍ଦ୍ର ଯଜ୍ଞସ୍ଥଳେ ଗଡ଼
ଧୂଳି ଧୂସରିତ କର ଅଙ୍ଗ । ୨
ଯମୁନା ପୁଳିନ ବନ ବୁଲି କର ଦରଶନ
ଧୀରେ ସମୀର ଶ୍ରୀ ବଂଶୀବଟେ
ଆନନ୍ଦେ କର ବିଶ୍ରାମ ବୋଲି ଜୟ ରାଧେ ଶ୍ୟାମ
କୁଟୀର ବନାଅ କେଶୀଘାଟେ । ୩
ଦ୍ୱାଦଶ କାନନ ଯାଇ କୃଷ୍ଣଲୀଳା ସ୍ଥାନ ଦେଖ
ଅଦ୍ୟାବଧି ରହିଅଛି ଚିହ୍ନ
ସବୁ ତୁ ପ୍ରତ୍ୟକ୍ଷେ ଦେଖ ଦୁଷ୍ଟ ଚିନ୍ତା ମନୁଁ ଉପେକ୍ଷ
ଗୁରୁ ଆଜ୍ଞାରୁ ନହୁଅ ଭିନ୍ନ । ୪
ଶ୍ରୀକୃଷ୍ଣ ମାନସ ନଦୀ ନନ୍ଦୀଶ୍ୱର ପୁର ଆଦି
ଭ୍ରମଣ କର ତୁ ଠାବେ ଠାବେ
ସିଦ୍ଧସାଧକ ବୈଷ୍ଣବେ ରହିଛନ୍ତି ବ୍ରଜ ଭାବେ
ସେ ସଂଗ ଆଚର ଭକ୍ତି ଭାବେ । ୫
ସେ ଚିନ୍ମୟ ଭୂମି ଜାଣ ତହିଁ ବିସର୍ଜିଲେ ପ୍ରାଣ
ହୋଇ ଯିବୁ କାରଣାନଷ୍ଟମୟ
ଗୋପାଳକୃଷ୍ଣଙ୍କୁ ଖାଲି ଜଞ୍ଜାଳେ ନ ପକାଉଲ
ଯୁଗଳ ଚରଣେ ହୁଅ ଥୟ । ୬

---*---



## ମଦନମଧୁରେ—ବୃତ୍ତେ

ମିତଣୀ ତାକୁ କହିଦେ ଫେର ଯିବାକୁ ।
ଆସିଛି କାହାର କଲେ ପଦେ ଲକ୍ଷା ରଞ୍ଜିବାକୁ । ପଦ ।

ଧରି ନାପିତୁଣୀ ବେଶ
ଆସିଅଛି ପୀତବାସ
ଜାଣେ ମୁଁ ତା ଛଳ ଶ୍ଳେଷ — ହାଣର ନାଗରବୁଲୁକୁ । ୧ ।
ମୁଁ ନୋହେ ଆନ ରମଣୀ
ନାମ ଘରେ ରାଧାରାଣୀ
ଭଙ୍ଗୀରେ ମୋ ମନ କାଟି — ବସିଛୁ ଭୁଲାଇବାକୁ । ୨ ।
ଲେଖ ଲେଖୁ ଲକ୍ଷା କମ
ଲେଖିଲୁ ଆପଣା ନାମ
ଜାଣିଲା ତା କର୍ମ ବାମ — ଅପମାନ ଲଭିବାକୁ । ୩ ।
ସେ ଲମ୍ପଟ ଶଠରାଜ
ଧରୁ ଚଢ଼ିଗଲୁ ଆଜ
ନାହିଁ ତା ଶ୍ରୀମୁଖେ ଲାଜ — ଚୂନକଳା ଦିଅ ତାକୁ । ୪ ।
ଗୋପାଳ କୃଷ୍ଣ ବଚନ
କହି ଦେବେ ଦୂର କରି
ଯାଉ ଲମ୍ପଟିଆ ଢେରି — ଲୁଚାଇ କଳା ମୁଖକୁ । ୫ ।

## ରାଗ, କଲ୍ୟାଣୀ—ତାଳ, ରୂପକ

ଶରଧାରେ ଧାଇଁ ଶ୍ରୀରାଧାକୁଣ୍ଡ ବନକୁ ଯୌବନ ଦେଖି ଯା
ପ୍ରାଣନାଥ ସଙ୍ଗେ ଭଜେ କରନ୍ତନ୍ତି ଅନଙ୍ଗ ମଞ୍ଜରୀଙ୍କର ଅଗ୍ରଜା । ପଦ

ବିଶ୍ୱସୃଜ କି ରଚିଥିଲା    ଶ୍ରୀକୁଣ୍ଡ କୁଣ୍ଡର ଚନ୍ଦ୍ରଶାଳା
ଯା ସୋପାନଶ୍ରେଣୀ ରତ୍ନ ଚିନ୍ତାମଣି
ବିଲୋକିଲେ ପ୍ରଶଂସିବେ ବିଡୌଜା । ୧ ।

ପୂରିଛନ୍ତି ଆଳୀନିକର    ଲଗିଲାଣି ଖେଳ ପଶାର
ଯୋଦ୍ଧା ଶିରୋମଣି, ଆଗେ ବସିଲେଣି
ମୂର୍ଦ୍ଧା ମୂର୍ଦ୍ଧ୍ନି ହୋଇ ନାଗର ରାଜା । ୨ ।

ପଣକର ଶିଖଣ୍ଡ ବେଣୀ    କୁଣ୍ଡଳ ତାଟଙ୍କ ସଙ୍ଗିନୀ
ବଂଶୀ ହାରାବଳୀ ରାସେଶ୍ୱରୀ ହର
ବୋଲି ହୋଇ ଗଲାଣି ତ ହାଉଜା । ୩ ।

ଶ୍ରୀ ଗାନ୍ଧର୍ବା ଖେଳରେ ଜିଣୁଁ    ସଖୀ ଛନ୍ଦାଇ ଆଣୁ ବେଣୁ
ବୃନ୍ଦାବନ ପଟ୍ଟମହିଷୀ ହସନ୍ତି
ଆଳୀ ପରେ ଦେଇ ଦରଆଉଜା । ୪ ।

ଭଣ୍ଡିଦେଇ ପଞ୍ଝା ଭ୍ରମର    ନେଲେଣି ଦାସୀ ଉପହାର
ବାହାର ସିବେ ଗୋପାଳକୃଷ୍ଣ ବୋଲେ
କରିବାକୁ ଏବେ ତରଣିପୂଜା । ୫ ।



### ଶ୍ଳୋକ-

ଯସ୍ମା କ୍ଷେତ୍ରବାସଂ ବ୍ରଜଭୁବ ସହିତଂ ପ୍ରତ୍ୟଜନ୍ମ
ସ୍ୱ'ବନ୍ଧନଂ ତଚ୍ଛେତ୍ତୁ ପଣ୍ଡିତଣ୍ଡୁ ମାସ୍ୱଦ ଭଲ ସେଃ
ସ୍ୱରୂପଂ ଶ୍ରୀ ରୂପଂ ସଗଣମିହତ ସ୍ୟାଗ୍ରଜମପି,
ସ୍ଫୁଟଂ ପ୍ରେମ୍‌ଣା ନିତ୍ୟଂ ସର ନମ ତଦାଖ୍ୟଂ ତ୍ୱଂମନଃ ।

### ରାଗ ଜୟଶ୍ରୀ—ତାଳଝୁଲା

ଶୁଣକନା ଆରେ ମନ ଶ୍ରୀକୃଷ୍ଣ ଦାସୀ ବଚନ
ଯଦି ବ୍ରଜବାସ ରସୁ, ନହୋଇ ପଶୁରେ ।୧

ଅନୁରାଗରେ ସ୍ୱଚ୍ଛନ୍ଦେ, ଇଷ୍ଟଶ୍ରୀ ରାଧା ଗୋବିନ୍ଦେ
ସେବା କରିବାରେ ଆଶା, ହେବ ମୋ ଭାଷାରେ ।୨

ଶରଣ ହେବ ସ୍ୱରୂପେ ଗଣ ସହିତେ ଶ୍ରୀରୂପେ
ତାଙ୍କ ଜ୍ୟେଷ୍ଠ ସନାତନେ, ବୈଷ୍ଣବ ଜନେ ରେ ।୩

ଭକ୍ତିଭାବ ସହକାରେ ନିତ୍ୟ ସମ୍ୟକ ରୂପରେ
ସ୍ମରଣ ନମସ୍କାର ଯତନେ କର ରେ ।୪

ଏଥିରେ ନକର ହେଳା ଏ ତୋହର ଶୁଭବେଳା
ଗୋପାଳ କୃଷ୍ଣ ଭାଷଣ, ଯିବ କଷଣ ରେ ।୫



ଶ୍ଳୋକ—

ରତିଂ ଗୌରୀ ଲୀଳେଅପି ତପତି ସୌନ୍ଦର୍ଯ୍ୟ କିରଣୈଃ
ଶଚୀ ଲକ୍ଷ୍ମୀ ସତ୍ୟାଃ ପରିଭବତି ସୌଭାଗ୍ୟ ବଳନୈଃ
ବଶୀ କାରୈଶ୍ଚନ୍ଦ୍ରାବଳୀ ମୁଖ ନବୀନ ବ୍ରଜ ସତୀଃ
କ୍ଷିପତ୍ୟାରାଦ୍ ଯା ତାଂ ହରି ଦୟିତ ରାଧାଂ ଭଜମନଃ

## ରାଗ—ମଧୁଶ୍ରୀ । ତାଳ—ଝୁଲା

ଘେନ ଘେନରେ ମନ !
ଶ୍ରୀକୁଣ୍ଡବାସୀଙ୍କର ଶିକ୍ଷା ବଚନ ।ଘୋଷା
ରାଧାଙ୍କର ମଧୁର ସୌନ୍ଦର୍ଯ୍ୟ ଛଟା
ରତି, ଗଉରୀ, ଲୀଳା ସୌନ୍ଦର୍ଯ୍ୟ ହଟା ।୧
ରାଧାଙ୍କର ସୌଭାଗ୍ୟ ଯେ ଲେଖେ ନାହିଁ
ଶଚୀ ଲକ୍ଷ୍ମୀ ଆଦିଙ୍କି ପରା ଭବଇ ।୨
ରାଧାଙ୍କର ସୁଗୁଣାବଳୀ ଅପାର
ଚନ୍ଦ୍ରାଦି ବ୍ରଜ ଯୋଷା ହେଲେଟି ଦୂର ।୩
ସେହି ଶ୍ରୀସ୍ୱାମିନୀଙ୍କି ତୁ ନିରନ୍ତର
କଙ୍କଣ ଅଭିମାନେ ଭଜନା କର ।୪
ସୌନ୍ଦର୍ଯ୍ୟ ସଉଭାଗ୍ୟ ସୁଗୁଣବନ୍ତ
ଯେ କୃଷ୍ଣ ପ୍ରିୟା ରାଧା ଦେବେ ସୁରତ ।୫
ଶ୍ରୀବ୍ରଜେ ବାସ ବାଞ୍ଛା କର ମାନସ ।
ଗୋପାଳ କୃଷ୍ଣ ହରୁ ଯେ ତାପ କ୍ଳେଶ ।୬



ଶ୍ଳୋକ

ଗୁରୌ ଗୋଷ୍ଠେ ଗୋଷ୍ଠାଳୟିଷୁ ସୁଜ ନେଭୂ ସୁରଗଣେ
ସ୍ୱମନ୍ତ୍ରେ ଶ୍ରୀନାମ୍ନି ବ୍ରଜ ନବଯୁବ ଦ୍ୱନ୍ଦ୍ୱ ଶରଣେ
ସଦାଦମ୍ଭଂ ହିତ୍ୱା କୁରୁ ରତିମପୂର୍ବା ମତିତରାଂ
ଅୟେସ୍ୱାନ୍ତ ର୍ଭ୍ରାତ ଶ୍ଚଟୁଭିର ଭିଯାଚେ ଧୃତପଦଃ

## ରାଗ ତୋଢ଼ିପରଜ—ତାଳ ଆଡ଼ତାଳୀ

ଗର୍ବଦମ୍ଭ ପରିହରିରେ ମାନସ
ଶୁଣ ବଚନ ମୋହର
ଯାଚଞ୍ଚା କରୁଛି ମିନତି ପୂର୍ବକ
ତୃଣ ଦନ୍ତେ ପଦ ଧରି । ଘୋଷା ।
ଶ୍ରୀଗୁରୁଦେବେ ଟନ୍ଧସ୍ଥ ବ୍ରଜ ନାମେ
ବ୍ରଜ ବାସୀଜନ ଗଣେ
ବୈଷ୍ଣବେ ବ୍ରାହ୍ମଣେ ସ୍ୱୀୟ ଦୀକ୍ଷା ମନ୍ତ୍ରେ
ଶ୍ରୀ ଭଗବତର ନାମେ ।୧
ରକ୍ଷକ ସ୍ୱରୂପ ବ୍ରଜ ନବ ଯୁବ
ଯୁଗଳ ରାଧା ଗୋବିନ୍ଦେ
ଅତ୍ୟନ୍ତ ଭକତି କରି ନିତି ନିତି
ମଜ୍ଜି ପରମ ଆନନ୍ଦେ ।୨
ଦୀକ୍ଷାଗୁରୁ ରୂପେ ସ୍ୱୟଂ ଶ୍ରୀ ଗୋବିନ୍ଦ
-ଶିକ୍ଷାଗୁରୁ ରୂପା ରାଧା ।
ବୈଷ୍ଣବ ସ୍ୱରୂପେ ସଖୀଗଣ ସଙ୍ଗେ
ହରିବେ ତୋ ବିଘ୍ନ ବାଧା ।୩
ନାମରୂପେ କୃଷ୍ଣ ସଦାସ୍ଥ ତୋହର
ସଂସାର ସିନ୍ଧୁ ତାରଣେ
ଗୋପାଳକୃଷ୍ଣ କହଇ ଭୁଲ ନ ଯା
ସାଧନ ମାର୍ଗକୁ କ୍ଷଣେ ।୪

—*—

## ରାଗ ଶଙ୍କରା ଭରଣ—ତ୍ରିପୁଟ ଏକତାଳି

ପରି ପନ୍ଥି—ଗରବ—ଗିରି ଭାଙ୍ଗି ଦେଲାରେ ।
ରସ ରଙ୍ଗିନ ରେ ତୋ ଭଙ୍ଗି କାଳି ।ପଦ।
ସୁଧା ସାର କଳାପ ତୋ ମଧୁର ଆଳାପ
ଶ୍ୟାମ ବଂଶୀସ୍ୱନକୁ ସା ଚୁମ୍ବୁଥିଲା ରେ ।୧
ଲାସ୍ୟରେ ରଙ୍ଗ ରଙ୍ଗି ପ୍ରିୟ ଆସ୍ୟକୁ ଚୁମ୍ବି
ହସି ଖେଳାଉଥିଲାର ଲାଜେ ତୋଳାରେ ।୨
ନବୀନ ପରାକ୍ରମ ଜାଣି ହୃଦକୁ ଶ୍ୟାମ
ସେ ନେଲେ ଲୋଭେ ଯା ତୋତେ ଛଇଲା ରେ ।୩
ମସ୍ତକ ଶ୍ୟାମ ଅଂଶ ପକାଇ ଭ୍ରୁ ଅଳସେ
ଲଗ ହେବା ଶୋଭି ଚଉ ହରିନେଲା ରେ ।୪
ଗୋପାଳ କୃଷ୍ଣଭଣେ କୃଷ୍ଣ ପ୍ରେୟସୀ ଗଣେ
ଅଦ୍ୱିତୀୟା ବୋଲି ବ୍ରଜେ ଜଣାଇଲା ରେ ।୫



## ରାଗ ଧନାଶ୍ରୀ ମିଶ୍ର ରୂପତାଳ

ଗୋଷ୍ଠ ଚନ୍ଦ୍ରମାଙ୍କୁ ଆସ ବୋଲରେ ସଙ୍ଗ
କହିଦେଲୁ ନ କରେ ।ପଦ।
ଏତେକ ବେଳୁଁ ମୋ ତନୁ ଥରିଲାଣି
ଦେଖି ନାହିଁ ମୁଖ ଆଉରି ଆଖିରେ ।୧
ବୁଦ କୁଚ୍ୟ ସ୍ଫୁର୍ତ୍ତି ହେଲା ନାହିଁ ତନି ପହରରୁ ମଣ୍ଡରେ
କେତେବେଳେ କେ ଦେଖି ଦେବଟି ବୋଲି
ଦମ ଦମ ହୃଦ ହେଉଛି ଖାତ ରେ ।୨
କି ବୁଦ୍ଧି କରିବ କୁଟିଳା ମର୍କଟମୁଖୀ ଅଛି ପୁରରେ
ଅଗଣାକୁ ଗଲେ ଦେଇ ଅପବାଦ
ମାଇତାଳି ଆସି ନାଚିବ ଦୁଆରେ ।୩

କି କହୁଥିଲେ କୃଷ୍ଣ ଗଲାବେଳକୁ ଥିଲେ କେଉଁ ଠାବରେ
କି ବୋଇଲୁ କସ ପଶୁବରେ ତୋତେ
ଭଦ୍ର ପ୍ରିୟା ସ୍ୱଳପିବା ରହସ୍ୟରେ ।୪
ନ ଆସ ବୋଲି ଜଣାଅ ଯାଇ ହେଲେ ସଖି କୁହାରୁଛୁ ମା
ଚନ୍ଦ୍ରାବଳୀ ହେଲାପରେ ଦେବ ପ୍ରିୟା
ଜଳ ଜଳ ମୋତେ ଦଣ୍ଡୁଛି ଆଖିରେ ।୫
ଗୋପାଳ କୃଷ୍ଣ ସ୍ୱସେ ଜଗିଥିଲେ ସେ ତୋ ପାଇଁ ପ୍ରାଙ୍ଗଣରେ
ଲଗ ହୋଇ ଏଣେ ତେଣେ ଚାହିଁ ଧୀରେ
ଖଣ୍ଡିଲେ ଥାଉଛି ପୁଷ୍ପ ବାଟିକାରେ ।୬

—×—

## ଗାଗ ମାଧୁମାଳବ ଗୌଡ଼ା—ମିଶ୍ରରୂପ ତାଳ

କେବଣ ବରଣ୍ଣ ! ବାଳା ବିଚ୍ଛେଦ ବରଣ୍ଣ
ସନ୍ତାପରେ ଶୀର୍ଣ୍ଣ ହୋଇ କରେ        ଚିନ୍ତାପର ବାସେ ରତ୍ନ ।୧
ଏ ମଧୁ ନିଶିକ        ଚାହିଁ ସମ୍ପୂର୍ଣ୍ଣ ଶଶୀକ
କି ବର୍ଷୁଥିବ କି ଗୁଡ଼ ଅଇଲ ପୀୟୂଷ ହାସିକ ।୨
ଗଜଗମନୀ କ        ରଖିଥିବ କାମନାକ
ଯାଇ ଏଥିରୁ ମୁଁ ଆଜ କି ଚାହିଁବ ଦୁଃଖ ଶମନୀ କ ।୩
ଦେଖି ନିଆଳୀକ        ଯାଉ ମଧୁପ ଆଳୀକ
କି ପଶୁରୁଥିବ ଲଦ୍ଦଳ ବପୁସୀ ଅନାଇ ଆଳୀକ ।୪
ମୋ ଦୁଃଖୀ ତନ୍ଦ୍ରବ        ଶୁଣି ବନପ୍ରିୟ ରବ
ବରଜବନ ମନରୁ ମଦନକୁ ଜିଣିବା ଗରବ ।୫
ଏ ମନ୍ଦ ପବନ        ନିଚ୍ଛେ ଦେଖିବ ଜୀବନ
ପଡନ୍ତେ ଶରଣ ପଶି ଗୋଡ଼ାଇଲା ନୟନରୁ ବନ ।୬
ଥିବ କି ରସାରେ        ଭାବାଣ ସୁରସା ରେ
ବୋଲେ ଗୋପାଳ କୃଷ୍ଣ ବନ୍ଧୁ ଖଣ୍ଡିଲୁ କେତେ ଭରସାରେ ।

—*—

## ରାଗ ଖମାଚ—ତାଳ ଆଦ୍ଧତାଳ

ଭଜମନ । ଶ୍ରୀ ଶଚୀ ନନ୍ଦନ ଗୌରହରି
ସାଧନ ମାର୍ଗରୁ ଲଭେ ରହନା ଓହରି । ଘୋଷା ।
ଅଦ୍ୱୈତ ପ୍ରକଟି କୃତ ନରହରି ପ୍ରେମଯୁତ
ସ୍ୱରୂପ ଗୋସାଇଁ ପ୍ରିୟ ଦଣ୍ଡ କମଣ୍ଡଳୁ ଧାରୀ । ୧
ନିତ୍ୟାନନ୍ଦ ପ୍ରାଣ ସଖା ସନାତନ ଗତି ଏକା
ଶ୍ରୀ ରୂପ ହୃଦ କେତନ ଲକ୍ଷ୍ମୀ ପ୍ରାଣ ପତି ହରି । ୨
ଗଦାଧର ରସୋଲ୍ଲାସୀ ଜଗନ୍ନାଥ ପୁର ବାସୀ
ସାଙ୍ଗୋପାଙ୍ଗେ ସଂକୀର୍ତ୍ତନେ ମହା ପ୍ରମତ୍ତ କେଶରୀ । ୩
ଶ୍ରୀ ବାସାଙ୍ଗଣ ନର୍ତ୍ତକ ବିଷ୍ଣୁ ପ୍ରିୟାଙ୍କ ନାୟକ
ଶ୍ରୀ ନବଦ୍ୱୀପ ନାଗରୀ ମାନସ ସଂପଦ ହାରୀ । ୪
ଗୋପାଳକୃଷ୍ଣ ସ୍ମରଣ ସେହିଟି ତୋ ପ୍ରାଣଧନ
କୁଂଦନ ନନ୍ଦନ କାନ୍ତି ଜାହ୍ନବୀ ତୀର ବିହାରୀ । ୫



## ରାଗ ତୋଡ଼ି ପରଜ—ତାଳ ଆଡ଼ତାଳୀ

ରେ ମାନସ ତ୍ୟଜ ଅନ୍ୟ ଅଭିଳାଷ
ଶ୍ରୀରାଧା ଗୋବିନ୍ଦ ଚରଣାରବିନ୍ଦ ସ୍ମରଣେ ହୁଅ ଉଲ୍ଲାସ । ପଦ
ନିଷ୍କାମ ଗୋପୀକା ଭକ୍ତିରେ ଭୁଏକା ହେଉଥା ତନ୍ମୟ ନିତ୍ୟ
କୃପାମୟୀ ରାସେଶ୍ୱରୀଙ୍କ କୃପାରୁ ଲଭେ ନୋହିବୁ ବଞ୍ଚିତ । ୧
ସ୍ୱୀୟ ବ୍ରଜବାସ ଭଜନା ଲାଳସ ବଢ଼ାଅ ଶ୍ରଦ୍ଧା ସହିତେ
ପ୍ରତିଷ୍ଠା ଲଭେ ଯା ଲାଳାୟିତ ହେଉ ଯତ୍ନକର ପରିତ୍ୟାଜେ ! ୨
ସ୍ୱାମିନୀ ଶ୍ରୀକୁଂଜେଶ୍ୱରୀଙ୍କର ଦାସୀ ଅଭିମାନେ ହୁଅ ବ୍ରତୀ
ତଦୀୟ ସାକ୍ଷାତ ସେବା ପ୍ରାପ୍ତି ଆଶା ହେଉ ହୃଦେ ବଳବତୀ । ୩
ପୂଜାନାମ, ଧ୍ୟାନ, ମହିମା ଶ୍ରବଣ, ପ୍ରଣାମ ଏ ପଞ୍ଚାମୃତ
ସେବନ କରିବୁ କୃତାର୍ଥ ହୋଇ ଯା ଗୋପାଳକୃଷ୍ଣ କହନ୍ତି । ୪



## ରାଗ ଝଂଝୋଟି—ତାଳ ଆଠତାଳୀ

ମାନସ କେଣେ ରହୁ ଓହରି ?
ଆଶ୍ରୟ ପ୍ରଦାତ୍ରୀ ଥାଉଁ ତୋହର । ଘୋଷା ।
ଉଜ୍ଜ୍ୱଳ ପରକୀୟା ପ୍ରେମାମୃତ
ରସ ବାରିଧିରେ ମଜ୍ଜ ସତତ । ୧
ସଖୀଙ୍କ ସଂଗିନୀ ଗଣେ ସହଜେ
ସିଦ୍ଧତନୁ ଅନୁସର ଶ୍ରୀବ୍ରଜେ । ୨
ଦୟାମୟୀ ବୃନ୍ଦାରଣ୍ୟ ଈଶ୍ୱରୀ
ରକ୍ଷି ପାରିବେ କି ଲଭେ ବିସ୍ମରି । ୩
କୃପା କଟାକ୍ଷରେ ଭାଳି ମସ୍ତକ
ଯାଚି ଦେବେ ସେବା ସମ୍ଭାର ଯାକ । ୪
ଗୋପାଳକୃଷ୍ଣ କହଇ ପ୍ରବୋଧି
ସାଧନେ ସୁଲଭ ଜୀବକୁ ସିଦ୍ଧି । ୫



## ରାଗ ଗାନ୍ଧାର—ତାଳ ପହ୍ନପଟ

ଶ୍ୟାମର ମନ । ରାମ ଅନୁଜ ନାମକୁ ରଟୁଥାରେ ।
ଧାମ ନୋହିବ ଭାମରସର ବନ୍ଧୁଜ ତୋହଠାରେ । ପଦ ।
କାମ ମୋହନ ଶ୍ୟାମ ସୁନ୍ଦର, ଦାମ ଉଦର ମନ୍ଦର ଧର
ଧାମକୁ ଯାଇ କୁଟୀର ବନାଇ ବସ ହଂସଜା ପନ୍ତାରେ । ୧
ଗ୍ରାମ ଯାବଟ ଶ୍ରୀନନ୍ଦୀଶ୍ୱର ମୁଖରାଇ କରଷାଣ ନବର
ବୁଲି ଝୁଲି ଧରି ମାଗି ମଧୁକରୀ ଭୁଂଜ ଯେଥେ ଶ୍ୟାମନାଁରେ । ୨
ସମର୍ଥ ଆଜ୍ଞ ଚଳାଇପା ଯା ପରିହରି ସୁତ ବନ୍ଧୁ ଖଣ୍ଡପା
ଉନମତ୍ତ ହୋଇ କରେ ତାଳବାଇ କୃଷ୍ଣଗୁଣ ଗୀତ ଗାଆରେ
ଧାମ ଯାମକେ କର ସ୍ମରଣ ଶ୍ରୀ ଯୁଗଳ ଲୀଳା ରସ କଥନ
ସାଧନେ ସ୍ୱତନ୍ତ୍ର କାମ ବୀଜମନ୍ତ୍ର ଗୋପାଳକୃଷ୍ଣେ ଜପାରେ । ୪





## ରାଗ ଆଶାବରୀ—ତାଳ ଆଠତାଳୀ

ଶାରଧାରେ କର ମନ । ଶ୍ରୀରାଧା ନାମ କୀର୍ତ୍ତନ । ଘୋଷା ।

ଷଣ୍ମୁଖ ସର୍ଜ୍ଜନାରେ ସ୍ମୃତି ଶ୍ରୁତି ପୁରାଣରେ
ଏଥୁଁ ବଳନାହିଁ ପଥ ଲଭିବାକୁ ପ୍ରେମଧନ । ୧ ।

କାହାକୁ ନକର ଲକ୍ଷ୍ୟ ସବୁଥିରୁ ନିରପେକ୍ଷ-
ହୋଇ କରୁଥା ଘୋଷେନ୍ଦ୍ରୁ ଅଙ୍କେ ସ୍ୱାମିନୀଙ୍କ ଧ୍ୟାନ । ୨

ହେ ଶ୍ରୀକୃଷ୍ଣ ପ୍ରାଣପ୍ରିୟେ ହେ ସର୍ବ ରମା ଆଶ୍ରୟେ
ବୋଲି ଶ୍ରୀକୁଣ୍ଡ ସେତୁରେ ରହି ଯା ରଚି ସଦନ । ୩

ରାସେଶ୍ୱରୀ ସେବାଯୋଗ୍ୟ କିଂକରୀ ଜନ ସୌଭାଗ୍ୟ
ବୃନ୍ଦାବନ ପୁରନ୍ଦନ ବିନା ନଜାଣନ୍ତି ଆନ । ୪

ଦ୍ୱିଚତୁର ଯାମଲୀଳା ସେବା ଭାବ ହୃଦ କଳା
ସ୍ୱଜାତୀୟ ସାଧୁସଙ୍ଗେ ପ୍ରେମଭକ୍ତି ସୁଧାପାନ । ୫

ଦୟାଳୁ ଶ୍ରୀଗୁରୁଦେବ ଦେବାର ତୋ ଅବସୂବ
ଗୋପାଳକୃଷ୍ଣ ଭଣେ ଲଭିବୁ ହୁଅ ସାବଧାନ । ୬

—•—

## ରାଗ ଶଙ୍କରା ଭରଣ—ତାଳ ଆଠତାଳୀ

ମନ ! ଏକ ଚୋର ଭ୍ରମ

ଦେଲେ ଦେଲେ ନ ଚାହାନ୍ତି ଯାହା ସୁଧର୍ମ । ପଦ ।

ଭକ୍ତ ନ ଯା ନଆଦରୁ ମୁକ୍ତି ଯାର ଦାସୀ
କେଉଁ ସୁଖ ଲାଗି ହେଉ ମୋକ୍ଷ ଅଭିଳାଷୀ । ୧ ।
ଦାନ ଯଜ୍ଞ ତପସ୍ୟାଦି ଯେତେ ଅନୁଷ୍ଠାନ
କୃଷ୍ଣଭକ୍ତି ଷୋଡ଼ଶକୁ କେ ନୁହଇ ସମାନ । ୨ ।
ସର୍ବ ସିଦ୍ଧି ଯାକ ସ୍ଥିତ ଗୋବିନ୍ଦ ଚରଣେ
ନାନା ତୀର୍ଥ ବ୍ରତେ ଭ୍ରମୀ ହେଉଛ କାରଣେ । ୩
ବ୍ରଜେ ସିଦ୍ଧ ଦେହ ପ୍ରାପ୍ତି ଲାଳସେ ନିରତ
ଶ୍ରୀରାଧା ସଖୀଙ୍କ ଦାସୀ ଭାବେ ହୁଅ ରତ । ୪
ସାଧନେ ଲଭିବୁ ସିଦ୍ଧି ରାଗାନୁଗା ମତେ
ଯୁଗଳ ପଦାବ୍ଜେ ସେବା ମିଳିବ ଯୁକତେ । ୫
ଅନ୍ୟ ବାଞ୍ଛା ଶୂନ୍ୟ ହୋଇ ଭଜ ରାଧା ହରି
କହଇ ଗୋପାଳକୃଷ୍ଣ ଦନ୍ତେ ତୃଣ ଧରି । ୬



## ରାଗ ନାଦନାମ କ୍ରିୟା—ତାଳ ଆଡ଼ତାଳୀ

ଭଜ ବ୍ରଜେନ୍ଦ୍ର ନନ୍ଦନରେ ମାନସ ।

ଶିଖୀ ଶିଖଣ୍ଡିକ ଚୂଡ଼ୁ ଅବତଂସ ନିଖିଳ ଜଗଦାନନ୍ଦନ । ପଦ ।

ତ୍ରିଭଙ୍ଗ ଲଳିତ ନଟବର ସୁନ୍ଦର ବେଦରେ ଦୁର୍ଲ୍ଲଭ ଯେହୁ
ନିଷ୍କାମ ନିର୍ମଳ ଗୋପିକା ଭକ୍ତିରେ ଜୀବକୁ ସୁଲଭ ସେହୁ । ୧ ।
ଯାହାଙ୍କର ଶ୍ରୀଚରଣ ଅରବିନ୍ଦ ମହିମା ନ ଜାଣେ ବିଧି
ଏକା ବ୍ରଜଦେବୀ ମାନଙ୍କୁ ଗୋଚର ଅତୁଳ ମହତ ସିଦ୍ଧି । ୨ ।
ଇନ୍ଦ୍ର ଭାଗବତ ସୂର୍ଯ୍ୟ ଅନଳାଦି ଅମରେ ଯା ଆଜ୍ଞାଧୀନ
ଭକ୍ତ ନୁହଁତେ ସେ ତ୍ରୈଲୋକ୍ୟ ମୋହନ ହୋନ୍ତି ସ୍ୱଜନ ଅଧୀନ । ୩

ସ୍ୱର ପୁରୁଷାର୍ଥ ଅଷ୍ଟାବଧି ବଉ ସୁଭକ୍ତେ ପାରନ୍ତି ଦେଇ
ପ୍ରେମାନନ୍ଦ ମହାନନ୍ଦ ସମ୍ମତରେ ବିତରନ୍ତି ଅତି ସ୍ନେହେ । ୪
ମହାନାରାୟଣ ପରବ୍ୟୋମ ଈଶ ଯେଉଁ ଗୋବିନ୍ଦଙ୍କ ଅଂଶ
ରାମାଦି ଅବତାର ମୂର୍ତ୍ତି ଯେତେକ ଯାହାଙ୍କ କଳା ପୁରୁଷ । ୫
ଚିନ୍ମୟ ଚିଦ୍‌ଘନ ରସରଭଣ୍ଡାର ସଚ୍ଚିଦାନନ୍ଦ ବିଗ୍ରହ
ସର୍ବ କାରଣର କାରଣ ଯେଉଁଟି ଶ୍ରୀବୃନ୍ଦାରଣ୍ୟ ଅଦେହ । ୬
ସ୍ୱଧାମ ସାତ୍ତ୍ୱିକ ହର୍ଷଆଦି ବ୍ୟଭିଚାରୀ ଭାବେ ତାଙ୍କୁ ଚିନ୍ତ
କହଇ ଗୋପାଳ କୃଷ୍ଣ ସିଦ୍ଧତନୁ ପାଇ ହୋଇବୁ ନିଶ୍ଚିନ୍ତ । ୭



## ରାଗ କେଦାର ଚନ୍ଦ୍ରକେଳି—ତାଳ ଝମ୍ପା

ଆରେମନ ନହୁଅ ରତ
ଅସତସଙ୍ଗ-ରୂପ ବେଶ୍ୟାକୁ ଛାଡ଼ । ୧
ବ୍ୟାଘ୍ରୀ ରୂପା ମୁକ୍ତି ସମ୍ବନ୍ଧ କଥା
ଶ୍ରବଣ ନକର ତୁହି ସର୍ବଥା । ୨
ଶ୍ରବଣ ମାତ୍ରେ ସେ ମାନସ ହରେ
ସର୍ବାଙ୍ଗ ଗ୍ରାସଇ ଅତି ବେଗରେ । ୩
ଅପିଚ ଯେଉଁ ନାରାୟଣ ଭକ୍ତି
ଦିଅଇ ଶୂନ୍ୟେ ବା ବୈକୁଣ୍ଠେ ଗତି । ୪
ତାହା ମଧ୍ୟ ପରିତ୍ୟାଗ ପୂର୍ବକ
ବ୍ରଜଧାମେ ଶ୍ରୀରାଧା କୃଷ୍ଣେ ଡାକ । ୫
କଲେ ତୁ ଯୁଗଳ ସେବା ଭଜନ
ଯାଚି ଦେବେ ସେ ପ୍ରେମ ମହାଧନ । ୬
ଏହିକୁ ନକର ଅନ୍ୟାଭିଳାଷ
ଗୋପାଳକୃଷ୍ଣ ନ ହେଉ ନିରାଶ । ୭

—✳—

## ମନଶିକ୍ଷା ଚଉତିଶା

### ବ୍ରଜବାସ ଲାଳସା—ରାଗ ରସ ମଞ୍ଜରୀ

କହୁଛିରେ ମନ ! ଶୁଣ ମୋ କଥା
ଖଳ ସଙ୍ଗତରେ ନ ପାଅ ବ୍ୟଥା । ୧
ଗଂଜ ଲୁବ୍ଧ ବ୍ୟର୍ଥେ ଜଂଜାଳ ଜାଲେ
ଘର ତ୍ୟଜି ପଳା ଶ୍ରୀ ବ୍ରଜଆଳେ । ୨
ଓପାଡ଼ି କୁଳା ଭୂ ମାନତରୁ
ଚରଣେ ଠେଲଦେ ଗୌରବ ଗରୁ ।୩।
ଛଡ଼ାଇ ପ୍ରତିଷ୍ଠା ମଣିକ ଖରେ
ଜଳାଞ୍ଜଳି ଦିଅ ଜାତି ଗୋସରେ ।୪।
ଝୁଲ ରସ ବିଗ୍ରହ ରାଧା ଶ୍ୟାମେ
ନିଷ୍ଠା ଭକ୍ତି ବଳାଅ ଅବିରାମେ ।୫।
ଟଳାଇ ଦମ୍ଭ ଗର୍ବ ଅହନ୍ତା
ଠଣି ଶ୍ରୀ ପଦାବ୍‌ଜେ ରଖ ମମତା ।୬।
ଡର ସରମ ପରିହରି ଦୂରେ
ଢଳାଇ ମଉଳ ଗୁରୁ ପୟରେ ।୭।
ଅଣ୍ୟମା ନଂଦନ ପୁଲକ ବନେ
ତରୁତଳ ବାସୀ ହୁଅ ସଘନେ ।୮।
ଥକାଇ ନେତ୍ରେ ପ୍ରେମ ଲୋତକ
ଦୟାମୟୀ ଶ୍ରୀ ସ୍ୱାମିନୀଙ୍କି ଡାକ ।୯।
ଧରି ସଦ୍‌ବେଶକୁ ସାତ୍ତ୍ୱିକ ଭାବେ
ନତ ମସ୍ତକ ହୋଇ ଠାବେ ଠାବେ ।୧୦।
ପଶୁପ ପଲ୍ଲୀରେ ଆନନ୍ଦେ ବୁଲି
ଫେରନ୍ତରେ କଂଧେ ପକାଅ ଝୁଲି ।୧୧।
ବଖାଣି ଭୃଙ୍ଗେ ଶ୍ରୀ ରାଧାଶ୍ୟାମ
ଭଜନାନଂଦେ ଭୁ ହୁଅ ନିଷ୍କାମ ।୧୨।

ମଧୁ କଷ୍ଟ ବୃତ୍ତି ଅବଲମ୍ବନେ
ପଥା ଜଠରରେ ସ୍ତୁ ଭକ୍ଷାନ୍ତନେ ।୧୩।
ରଖି ଲାଳସା ତୁ ଶ୍ରୀ ନାମାଭ୍ୟାସେ
ଲଜ୍ଜାକୁ ନୋହି ପ୍ରଭୁ ଅବକାଶେ ।୧୪।
ବ୍ରଜ ବାସୀଙ୍କ ଦ୍ୱାରେ ଦ୍ୱାରେ
ଶରଣାଗତ ହୁଅ ଶ୍ରଦ୍ଧାଭରେ ।୧୫।
ଷଡ଼ରସରେ ଚତୁର୍ବିଧ ଅନ୍ନ
ସମ୍ପୂର୍ଣ୍ଣ କରି ଉଦର ପୋଷଣ ।୧୬।
ହରେକୃଷ୍ଣ ରାମ ଉଚ୍ଚର ମୁଖେ
କ୍ଷଣଦା ଦିବସ ବଂଚନ୍ତୁ ସୁଖେ ।୧୭।
ଷଟ୍କର୍ଣ୍ଣେ ଗୋପାଳକୃଷ୍ଣ ଭଣେ
କ୍ଷମାମୟୀ ରାଧା ପଦ ସ୍ମରଣେ ।୧୮।



## ରାଗ–ପୁରବୀ । ତାଳ ପହପଟ

ଆନ ରସରେ ରସ ନାରେ, ରସନା ।ଘୋଷା।

କୃଷ୍ଣ ନାମାମୃତ    ମଧୁର କେମନ୍ତ
ଆସ୍ୱାଦୁ ଜାଣିବୁ ସିନାରେ ।୧।
ଖଣ୍ଡ କ୍ଷୀର ସର    ମଣିବୁ ଛୁକାର
କସ୍ତୁର ଅମୃତ ପଣାରେ ।୨।
ନାମ ରସାୟନ    କରିଥିଲେ ପାନ
ହଟେ ନିଦାଘ ଯାତନାରେ ।୩।
ବିଷୟ କଂକାଳ    ଶଷମ କାଙ୍ଗଳ
ଚର୍ଣ୍ଣି ନରଖ ବାସନାରେ ।୪।
ଗୋପାଳ କୃଷ୍ଣର    ଏ ମିନତି ଗିର
ନ ମଣିବୁ ବଡ଼ମ୍ବନାରେ ।୫।





## ରାଗ ରସ କେଦାର । ତାଳ ପହପଟ

ଭଜମନ ଶ୍ରୀ ବ୍ରଜେନ୍ଦ୍ର ପଦ କଞ୍ଜକୁ
ମଞ୍ଜୁଳରେ କୋଳ ରାସସ୍ଥଳୀ ରଙ୍ଗକୁ । ଘୋଷା।

ସଂସାର ସାର ସୁଷମା    ଅଭିନବ ତ୍ରିଭଙ୍ଗିମା
ଅପୂର୍ବ ଲାବଣ୍ୟ ଠାଣି ବଂଶୀଭୁଜଙ୍ଗକୁ ।୧।
ଚିନ୍ମୟ ଚିଦ୍‌ଘନ ରସ    ନିର୍ମଳ ପ୍ରେମ ପୀୟୂଷ
ଆସ୍ୱାଦନ କରି ଧନ୍ୟ ମଣ ନିଜକୁ ।୨।
ସହସ୍ର ଦଳ କମଳ    ଗୋକୁଳାଖ୍ୟ ରମ୍ୟସ୍ଥଳ
ତହିଁ ମଧ୍ୟେ ବିରାଜିତ ରସ ରାଜଙ୍କୁ ।୩।
ଗୋଲୋକର ନିତ୍ୟଧନ    ସେ ଅପ୍ରାକୃତ ମଦନ
ହରଣ କରିବେ ତୁମ୍ଭ ଆଜନ୍ମ ଦ୍ୱନ୍ଦ୍ୱ ।୪।
ଭବ ବିରଂଚି ବଂଦନ    ସ୍ୱୟଂ ବ୍ରଜେନ୍ଦ୍ର ନଂଦନ
ଶତମନ୍ୟ ମଣି କାନ୍ତି ପୂର୍ଣ୍ଣ ପୁଞ୍ଜକୁ ।୫।
ଗୋପାଳ କୃଷ୍ଣ ଭାଷିତ    କୁଞ୍ଜାଙ୍ଗରେ କର ନୃତ୍ୟ
ପରିହରି କୁଳ ଭୟ ଲାଜ ବ୍ୟାଜକୁ ।୬।



## ରାଗ—ତୋଡ଼ି ପରଜ । ତାଳ—ଆଡ଼ ତାଳୀ

ରେ ମାନସ । ଶୁଣ ସାର ଉପଦେଶ
ସଦା ଭକ୍ତି ଯୁକ୍ତ ମଧୁର ରସରେ ମଜ୍ଜି ରହ ଅହର୍ନିଶ ।ପଦ।
ଶ୍ରୀ ସ୍ୱାମିନୀ ସ୍ୱାମୀ ରାଧା ଗୋବିନ୍ଦଙ୍କ ନାମ ଗୁଣ ଲୀଳାମାନ
ବସି ନିଶ୍ଚିନ୍ତରେ କରୁଥା ଶ୍ରବଣ କୀର୍ତ୍ତନ ଅନୁଧ୍ୟାନ ।୧।
ରସମୟୀ ରସମୟ ଶ୍ରୀ କିଶୋରୀ କିଶୋର ଶ୍ରୀମୂର୍ତ୍ତି ରମ୍ୟ
ଯେ ପଦାବ୍ଜ କେଶ ଶେଷାଦି ଦେବାଧିଦେବଙ୍କ ଦୁରଧିଗମ୍ୟ ।୨।
ଏମନ୍ତ ଦୁର୍ଲଭ ଧନ ସ୍ୱେଶ୍ୱରୀଙ୍କ ସଖୀ ମଂଜରୀ ନିକର
ତଦୀୟ ଅନୁଗା ପ୍ରେମ ସେବାରେ ଯେ ପ୍ରଗାଢ଼ ଲାଳସାଧର ।୩।
ଶ୍ରଦ୍ଧା ବିଶ୍ୱାସ ସହିତରେ ଭଜନ ସାଧନ ମାର୍ଗରେ ପଶ
ଶ୍ରୀଗୁରୁ ପ୍ରଦତ୍ତ ବୀଜମନ୍ତ୍ର ତତ୍ତ୍ୱ ଉଲ୍ଲାସ ପରାଣେ ପୋଷ ।୪।
ତୋର ସିଦ୍ଧତନୁ ଅନୁସ୍ମରଣେରେ ଯୋଗପୀଠେ ରଖି ଲୟ
କହଇ ଗୋପାଳକୃଷ୍ଣ ତୃଷ୍ଣେ ସେବାଧନ ପାଇବୁ ନିଶ୍ଚୟ ।



## ରାଗ ଜୌନପୁରି ତୋଡ଼ି—ତାଳ, ଝୁଲ

ଏକ ତୋର ବୁଝାମଣା ରେ ମାନସ !
ଜାଣି ଜାଣି ଯାହା       ଗରଳ ଗିଳୁଛୁ
ଛାଡ଼ ସୁଧା ସର ପଣାରେ ମାନସ । ଘୋଷା ।
କାମ କ୍ରୋଧାଦିକ       ପାଲେ ହୋଇ ରଂକ
ହେଉଛୁ ଯା ପଥ କଣା
ପଡ଼ ସିବ ଝୁଣ୍ଟି       ନପକାଉ ଦୃଷ୍ଟି
ଆଗରେ ରହିଛି ଖଣାରେ ମାନସ । ୧
ପଥ ପ୍ରଦର୍ଶକ       ସେ ସିଦ୍ଧ ସାଧକ
ତାହାଙ୍କୁ ନକଲୁ ଜଣା
ମହାଶତ୍ରୁ ତୋର       ଛଅଙ୍କୁ ନବାର
ସେହି ବନ୍ଧନ ମାରଣାରେ ମାନସ । ୨

ଛନ୍ତି ବ୍ରଜବାସୀ          ବୈଷ୍ଣବେ ଉଦାସୀ
ଆଦରି ଗୋପପାଟଣା
ନତ ମସ୍ତକରେ          ସେ ସାଧୁ ନିକଟରେ
ବିନୟ ବଚନେ ମଣାରେ ମାନସ । ୩
ତୋ ପ୍ରତି କରୁଣା          ନ କରିବେ ଊଣା
ବତାଇ ଦେବେ ଠିକଣା
କହଇ ଗୋପାଳ—          କୃଷ୍ଣ ପ୍ରତିପାଳ
ମୋ କଥା କରି କଲଣାରେ ମାନସ । ୪



## ରାଗଚୋଖି ପରଜ—ତାଳ ଆଡ଼ତାଳୀ

( ମନ ପ୍ରତି ବିବେକର ଶିକ୍ଷା ଉପଦେଶ )

ରେ ମାନସ ! ଘେନ ସାର ଉପଦେଶ

କରିବୁ ଧାରଣ ସଂସାର ତାରଣ କାରଣ ସଜନବେଶ । ଘୋଷା ।

ଶ୍ରୀ କୃଷ୍ଣ ଗଉର ବୈଷ୍ଣବ ଚରଣ ଆଶ୍ରୟ ଗ୍ରହଣ କରି
ଦୃଢ଼ଜ୍ଞାନ ଦ୍ୱାରେ ଅନନ୍ୟ ଭଜନ ବଳରେ ସିଦ୍ଧି ଆଦରି । ୧

ଏ ସଂସାରେ ଅପାମର ଦୁରବସ୍ଥରେ ଏଥି ପୂର୍ବେ ଥିଲେ ଯେବା
ହେଲେ ସେ ସୁକୃତି ଶାଳୀ ମହାମନ୍ତ କରି ଗୁରୁ ସାଧୁସେବା । ୨

ସବୁ ଜାଣି ଶୁଣି ବିଷୟ ଲାଳସେ ଲାଞ୍ଛିତ ହେଉ କେଣେ
ଉତ୍କଟ ଗରଳ ସେ ପିନା କେବଳ ଭ୍ରୂକ୍ଷେପ ନ ରଖ ତେଣେ ୩
ପ୍ରାଚୀନ ପ୍ରମାଣ ପଥ ଅନୁସର ମହାଜନଙ୍କର ମତେ
ଭକ୍ତି ଶ୍ରଦ୍ଧା ରଖ ଶ୍ରୀ ଗୁରୁ ବୈଷ୍ଣବେ ଏକାନ୍ତେ ଅନବରତେ । ୪

ଗୋପାଳକୃଷ୍ଣ କହଇ ଆପଣାର ହୋଇ କେହି ନାହିଁ ତୋର
ଇଷ୍ଟ ମନ୍ତ୍ର ଦାତା ଏକା ପରିତ୍ରାତା ସେ ପଦାବ୍ଜ ସଦା ସ୍ମର । ୫



## ଭଜନ ନିଷ୍ଠା

### ରାଗ ମଙ୍ଗଳଗୁଜ୍ଜରୀ—ତାଳଏି ପଟା

ମୂଢ଼ ମନ । ଦୃଢ଼ କରି ଭଜ ଶ୍ରୀ ଗୋବିନ୍ଦ
ଘୁଞ୍ଚିବ ସକଳ ଜ୍ୱାଳା ପାଇବୁ ଆନନ୍ଦ । ୧
ଉଚ୍ଚୈଃସ୍ୱରେ ଶବଦାଇ ହରି ହରି ବୋଲି
ସଗରେ ବୈଷ୍ଣବ ଗଣ କରିନେବେ କୋଳ । ୨
ପରି ହରି ଦୂରେ ମନ । ଯାବନ୍ତ କାମନା
ବ୍ରଜେ ରାଧାକୃଷ୍ଣ ଲୀଳା କରନ୍ତୁ ଭାବନା । ୩
ସଖୀଙ୍କ ସଂଗିନୀ ରୂପେ ମଂଜରୀ ଦେହରେ
ସେବାକୁ ଆଚର ସଦା ପରମ ସ୍ନେହରେ । ୪
କୁ ଚକ୍ରେ ପଡ଼ି ଭ୍ରମନା ରହ ସାବଧାନେ
ନିମିଷେ ନକର ହେଳା ଭଜନ ସାଧନେ । ୫
ଐଶ୍ୱର୍ଯ୍ୟ ଜ୍ଞାନକୁ ତୋର ଦିଅ ଜଳାଞ୍ଜଳି
ପ୍ରତିଷ୍ଠା ଗୌରବ ଗୁମାନକୁ ପକାଦଳି । ୬
କୁଳାଭିମାନ ମନ୍ଦିର କରି ଦୂର ଜନ
ଚଳା ଯା ବ୍ରଜ ବନକୁ ଭବ ନୋହୁଛନ । ୭
ଜାତି, ବିଦ୍ୟା, ରୂପ, ଯୌବନାଦି ମୂଳଚ୍ଛେଦ
ଗୋପାଳକୃଷ୍ଣ ନ ହେଉ ଜଞ୍ଜାଳେ ଆବଢ । ୮

— ※ —

## ରାଗ ଦେଶାକ୍ଷ—ତାଳ ଆଠତାଳୀ

ଶ୍ରୀ ଗୁରୁ କଳପ ତରୁ କରନ୍ତୁ ମନ ଆଶ୍ରୟ
ସ୍ୱୟଂ ଗୋବିନ୍ଦ ସ୍ୱରୂପ ଜାଣ ତାହାଙ୍କୁ ନିଶ୍ଚୟ । ଘୋଷା ।
ତାହାଙ୍କ କରୁଣା ଦୃଷ୍ଟି ପତନେପ୍ରାପ୍ତ ହେବୁଟି
ଶ୍ରୀ ବ୍ରଜ ଚିନ୍ମୟଧାମ ପରମ ଶାନ୍ତ ନିଳୟ ।୧।
ମୋଦରେ ଶ୍ରଦ୍ଧା ବଢ଼ାଇ ନେବେ ସରଣୀ କଢ଼ାଇ
ଚିନ୍ତିଲେ ତୁ ଅହରହ ଅରୁଣ ପଦାବ୍ଜ ଦ୍ୱୟ ।୨।
ଗୋକୁଳ ଗୋପେଶ ଧାମ ହୋଇବ ଅତି ସୁଗମ
ମିଳିବ ନିଭୃତ କୁଞ୍ଜେ ସେବା ସମ୍ପଦ ନିଚୟ ।୩।
ଆଳୀ ଆଳିଙ୍କ ହେତରେ ବ୍ରଜ ବଧୂଙ୍କ ଅଙ୍କରେ
ସ୍ୱାମିନୀ ଶ୍ରୀ ରାସେଶ୍ୱରୀ ତୋର ସ୍ୱାର୍ଥେ ଭଜୟ ।୪।
ଗୋପାଳକୃଷ୍ଣ ଅଦୃଷ୍ଟ ଲବ୍ଧ ଫଳ ହେଉ ପୁଷ୍ଟ
ଭ୍ରାନ୍ତ ଧ୍ୱାନ୍ତ ଧ୍ୱଂସନରେ ଲଭିବ ସୁଖ ସନ୍ଦୟ ।୫।

—*—

## ରାଗ କୌଶିକ । ତାଳ ଏକତାଳି

ମାନସ ! କେଣେ ହୋଇଯାଉ ନିରାଶ
ପରମ ଦୟାମୟୀଙ୍କ କୃପାପାଙ୍ଗେ ନ ଘୁଞ୍ଚିବ କେବେ ଦୁର୍ଦ୍ଦଶା ।ପଦ
ଅବଲମ୍ବନ କରି ଶ୍ରୀ ଗୁରୁ ରୂପସଖୀ ଲବଙ୍ଗ ମଞ୍ଜରୀଙ୍କ ।୧
ନିଭୃତ କୁଞ୍ଜରେ ବ୍ରଜେନ୍ଦୁଙ୍କ ଅଙ୍କେ, ସଧୀରେ ବୃନ୍ଦ ହେବୁ ଶ୍ରୀସ୍ୱାଙ୍କ ।୧
ହଜେ ରମ୍ୟରୂପେ ସୁମନସତଳ୍ପେ, ଫଗୁଣ ପ୍ରତିମା ଯୁଗଳ
ବିଲୋକନେ ତୋର କୋଟିର ଜନ୍ମର, ସୁକୃତ ଫଳ ସିଦ୍ଧ ମିଳ ।୨
ଶ୍ରୀ ଲଳିତା ସଙ୍ଗ ଦେବେ ଯେ ଚାହାଁଇ, ଏ ନୂଆ କିଙ୍କରୀ ବୋଲିଣ
ମୃଦୁ ମଧୁରେ ହସିଧିମା ସେବେଳେ, ଯା ରେ ପଦାବ୍ଜେ ଶରଣ ।୩
ସଙ୍କଳ୍ପ ଲାଳସା ମେଣ୍ଟିବ ତକ୍ଷଣେ ଆଦରନ୍ତେ ସେବା ସମ୍ଭାର
କହଇ ଗୋପାଳକୃଷ୍ଣ ସନ୍ତୁଷ୍ଟରେ, ସିଦ୍ଧାପଦନ ଅନୁସ୍ମର ।୪

—*—

## ରାଗ ନାଟନାମ କ୍ରିୟା—ତାଳ ଏକତାଳି

ରେ ମାନସ, ଗୁରୁ ଆଜ୍ଞା ବ୍ରତପାଳ
ଶ୍ରୀରାଧା ଗୋବିନ୍ଦ ଗୁଣାବଳୀ ପଦ ଗାଉଥା ବଜାଇ ତାଳ ।ପଦ

ନିଶାନ୍ତଠାରୁ ନିଶିଥିନୀ ସରିକି ଲୀଳାପାକ ଭଲ ଭଲ
ରହିପାରୁ ସ୍ୱାମିନୀଙ୍କ ସେବାରେ ଆଶ୍ରୟ କରି ପ୍ରେମ୍ଯାଳୀ ।୧
କନ୍ଦୁଣାଳଙ୍କାର ମଣ୍ଡି କଳେବର ହୁଅ ନବ ବ୍ରଜ ବାଳୀ
ଯୂଥେଶ୍ୱରୀ ଭୃଙ୍ଗ ବିଦ୍ୟାଙ୍କ ଯୂଥରେ ଗଣିବେଶରୁ ଦୁଲାଳୀ ।୨
ନିଭୃତ ନିକୁଞ୍ଜେ କଲ୍ପକାଳେ ବଜେ ଶ୍ରୀ କିଶୋରୀ ବନମାଳୀ
ଆସ ନୂଆଦାସୀ ବୋଲି ସ୍ମିତେ ହସି ଡାକିବେ ବସିଙ୍ଗ ତାଳି ।୩
ଶ୍ରୀ ରୂପମଞ୍ଜରୀ ପ୍ରିୟ ନର୍ମ ମୃଦୁଗିରେ ହୋଇଧିରେ ନିଉଜ୍ଜଳ
ଉଲଗି ସ୍ୱ ପରିଚର୍ଯ୍ୟା ଆଦରବୁ ସୁମରି ସିଦ୍ଧ ପ୍ରଣାଳୀ ।୪
ଶନ୍ତ ବ୍ରଜେଶ୍ୱରୀ କୀର୍ତ୍ତିଦା ଯଶୋଦା ପଣତ ଗଣ୍ଠି ପଙ୍କାଳ
ଭକ୍ତେ ଗୋପାଳ କୃଷ୍ଣ ପ୍ରେମଲୋଭରେ ଈକ୍ଷଣ ଯୁଗଳ ଖାଳ ।୫



## ରାଗ-ତୋଡ଼ି ପରଜ—ତାଳ-ଆଡ଼ତାଳି

ପୁରୁଷାଭିମାନ ପରିହରମନ ! ସାଜରେ ପ୍ରକୃତି ବେଶ
ରାଗମାର୍ଗେ ସେବ ଶ୍ରୀରାଧାମାଧବ ଯୁଗଳ ପଦ ସାରସ
ରେ ମାନସ ! ସ୍ୱାଭୀଷ୍ଟ ସିଦ୍ଧି ଲଭସେ
ଅନୁକ୍ଷଣେ ଅନୁଗତ ହୋଇରହ ପ୍ରେମ୍ଯାଳୀଙ୍କ ବାମପାଶେ । ୧
ପୂର୍ବରାଗ ଆଦି ଯେ ରସ ଯେ ଲୀଳା ଯାବନ୍ତ କର ସ୍ମରଣ
ବିପ୍ରଲମ୍ଭ ସମ୍ଭୋଗାନୁସାରେ ନିତ୍ୟ ମାଳଚାଅ ଆଚରଣ
ରେ ମାନସ ! ରସକଥା ଆଲୋଚନେ
ସଖୀଙ୍କ ମଧ୍ୟରେ ବସତି କର ତୋ ସ୍ୱରୂପସିଦ୍ଧ ଅପସନେ ।୨
ଅନାଥିନୀ ଦେଖି ଶ୍ରୀ ଲଳିତା ସଖୀ ଅନାଇଁ କୃପା ଈକ୍ଷଣେ
ମେଣ୍ଟିବ ଦୁର୍ଦ୍ଦଶା ପୂର୍ଣ୍ଣିବ ଆଶା ରଖିବୁ କିଂକରୀ ପଣେ

ରେ ମାନସ ! ଶ୍ରୀ ବିଶାଖା ଦେବ ତୋଷେ

କୃପା ସ୍ନେହ ଦୃଗଞ୍ଚଳେ ଯାଉଦେବେ ସେବା ଯଥା ଅବକାଶେ ।୩
ସ୍ୱାନୁଚରୀ ଭାବ ଭୁଙ୍ଗରଦ୍ୟାଦେବୀ ଆଜ୍ଞାଦେବେ ସ୍ମିତେ ହସି
ମିଷ୍ଟାନ ସେବନେ ଗନ୍ଧାନୁଲେପନେ ଖଟିବୁ ସୁଖେ ଭରସି
ରେ ମାନସ ! କଲ୍ପିତ ନକୁଞ୍ଜଧାମେ
କହଇ ଗୋପାଳ କୃଷ୍ଣ ଆଶ୍ରାଯେନ ଶ୍ରୀଗୁରୁରୂପାଙ୍କ ବାମେ ।୪

---

# ମନଃଶିକ୍ଷା

ଶ୍ରୀ ବୃନ୍ଦାବନ ସ୍ମରଣାନନ୍ଦ

ଶ୍ରୀମଦ୍ ବୃନ୍ଦାବନଂ ଧ୍ୟାୟେ ବୈକୁଣ୍ଠଂ ହୃଦୟେ ସଦା
ମହାପଦ୍ମ ଯୋଗପୀଠଂ କାଞ୍ଚନ ସ୍ଥଳୀ ନିର୍ମିତଂ ॥

—ଚୋଇବାଣୀ—

ଧନ୍ୟ ବୃନ୍ଦାବନେ ଧ୍ୟାନକର ମନ !
ମହା ପଦ୍ମପରେ ଯୋଗପୀଠ,
ଅପୂର୍ବ କାଞ୍ଚନ ସ୍ଥଳୀ ମନୋହର
ସ୍ୱଭ ଭୂରେ ହୋଇ ଏକନିଷ୍ଠ । ୧

ପୂର୍ଣ୍ଣ ଶଶଧର ଉଦୟ ସୁନ୍ଦର
ସର୍ବଜ ବହୁଧ ପୁଷ୍ପାନ୍ୱିତ,
କଦମ୍ବ ପାଦପ ଛାୟା ସୁଶୀତଳ
କାଳନ୍ଦୀ ପୁଳନ ସୁଶୋଭିତ । ୨

ମାଧବୀ କୁଞ୍ଜ ଭ୍ରାଜ ପୁଞ୍ଜ
ପୁଞ୍ଜ ଗୁଞ୍ଜିନ୍ମଧୂବ୍ରତ ପନ୍ତିଭୁଥି
କଲପି କୁହୁତ ମଧୁର ସଂଗୀତ
କଳାପୀ କଳାପ ନୃତ୍ୟରତ । ୩

ବୃକ୍ଷ ସାରଗଣ ସତା ସମାକୀର୍ଣ୍ଣ
କାମଧେନୁ ବୃନ୍ଦସୁଖାସ୍ପଦ,
ଗୋପଗୋପୀ ପ୍ରିୟ ସ୍ଥାନ ରମଣୀୟ
କଳ୍ପବୃକ୍ଷରାଜି ଶୋଭାସଦ୍ମ । ୪ ।

ମଧ୍ୟେ ଗୋବର୍ଦ୍ଧନ ଗିରି ବିଦ୍ୟମାନ
ରତନ ମଣି ମନ୍ଦିର ତଥି,
ରତ୍ନସିଂହାସନ-ସକ୍ତ ପଦ୍ମରାଗ
ସରୋରୁହ ଫୁଲ ଦିବ୍ୟଭାନ୍ତି । ୫ ।

ତନ୍ମଧ୍ୟେ ବିଜୟେ ଶ୍ରୀ ସଚ୍ଚିଦାନନ୍ଦ
ବିଗ୍ରହ କୈଶୋର ବଂଶୀଧାରୀ,
ବାମେ ପ୍ରିୟାରାଧା ଶ୍ରୀ ବାର୍ଷଭାନବୀ
ଲୀଳା-ବିଳାସିନୀ ଶ୍ରୀ କିଶୋରୀ । ୬ ।

କୋଟି ରତିସ୍ମର ଯୁଗଳ କିଶୋର
ପଦାବ୍‌ଜ ମରନ୍ଦଲୁବ୍‌ଧନଚ୍ୟ,
ଗୋପାଳକୃଷ୍ଣର ସ୍ମରଣ ସଂପଦ
ଶ୍ରୀଗୁରୁ ପ୍ରଦତ୍ତ ବୀଜମନ୍ତ୍ର । ୭ ।



## ଶ୍ଳୋକ

ପ୍ରତିଷ୍ଠାଶା ଧୃଷ୍ଟା ଶ୍ୱପଚ ରମଣୀ ମେ ହୃଦି ନଟେତ୍
କଥଂ ସାଧୁପ୍ରେମା ସ୍ପୃଶତି ଶୁଚିରେ ତନ୍ନନୁ ମନଃ ।
ସଦାତ୍ୱଂ ସେବସ୍ୱ ପ୍ରଭୁ ଦୟିତ ସାମନ୍ତ ମଭୁଳଂ
ଯଥା ତାଂ ନିଷ୍କାଶ୍ୟ ତ୍ୱରିତ ମିହତଂ ବେଶୟତ୍ତପଃ ॥

## ରାଗ—କଳହଂସ କେଦାର । ତାଳ—ଝୁଲ୍ଲ

ପ୍ରତିଷ୍ଠା ଆଶା ଦୁଷ୍ଟା ଚଣ୍ଡାଳୁଣୀଟି
ମୋ ହୃଦେ ନାଚୁଅଛି ନିରତେ ଯୋଷି ଯେ ।
କି କର ସାଧୁ ପ୍ରେମ ଛୁଇଁବ ମୋତେ ?
ଏଣୁ ଆରେ ମାନସ କହୁଛି ତୋତେ ଯେ । ୧ ।
ମହା ରାଜାଧିରାଜ କୃଷ୍ଣ ଅଧୀନେ
ଅଛନ୍ତି ଯେଉଁ ଭକ୍ତ ଶ୍ରେଷ୍ଠ ରାଜନେ ଯେ ।
ସେସବୁ ସାଧୁଜନଙ୍କ ସେବାକୁ କର
ତେବେ ସେ ଚଣ୍ଡାଳୀକି କରିବେ ଦୂର ଯେ । ୨ ।
ତୋ ହୃଦେ ସୁନିର୍ମଳ ପ୍ରେମ ରତନ
କରିବେ ପ୍ରତିଷ୍ଠିତ ହୋଇ ପ୍ରସନ୍ନ ଯେ
ଏଥି ସଂଶୟ ନାହିଁ ବୁଝରେ ମନ
ସିଦ୍ଧ ସାଧକ ଦେହରୁ କଲେ ଯତନ ଯେ । ୩ ।
ଶୂକରୀ ବିଷ୍ଠା ତୁଲ୍ୟ ପ୍ରତିଷ୍ଠା ଜାଣ
ଗୌରବ ଭବେ ରଉରବ ସମାନ ଯେ ।
ଅଭିମାନକୁ ସୁରାପାନ ତୁ ମଣି
ମୁଞ୍ଚ ଗୋପାଳକୃଷ୍ଣ ସଦୈନ୍ୟ ଭଣି ଯେ । ୪ ।



# ଯୁଗଳ ଭଜନ ଚେଷ୍ଟା

( ରାଗ ବସନ୍ତ—ତାଳ ସରିମାନ ଯତି )

ଭଜମ ହରଷ ଭଜରେ ମାନସ
ବ୍ରଜ ନବ ଯୁବ ଦ୍ୱନ୍ଦେ
ଅଜ ଶେଷ ଭବ ଦେବେ ଯେ ଦୁର୍ଲ୍ଲଭ
ଚିନ୍ତ ସେ ରାଧା ଗୋବିନ୍ଦେ । ଘୋଷା ।
ନିଭୃତ ନିକୁଞ୍ଜେ ସୁମନସ ଶେଯେ
ରସାଳ ରସେ ବଳେ କରିଛନ୍ତି ସେ ଯେ,
କନକ ଜଳଦ କାନ୍ତି ମନୋହର
ପରିବେଷ୍ଟି ତାଳୀ ବୃନ୍ଦେ । ୧ ।
ଅଭିନବ ନୀଳ ଶୋଣାବ୍ଜ ନୟନ
ମୃଦୁହାସ୍ୟ ଯୁତ ପ୍ରଫୁଲ୍ଲ ବଦନ
ମଳୟଜ ମୃଗ- ମଦର ତିଳକ
ଅଳକ ତଳକ ମଧ୍ୟେ । ୨ ।
ଶିରେ ଶିଖୀ ଶିଖ- ଣ୍ଡକ ପୁଷ୍ପ ଚୂଳ
ଶ୍ରୁତି ଯୁଗେ ଅବତଂସ ଶ୍ରୀକୁଣ୍ଡଳ
ଗଳେ ବିଲମ୍ବିତ ବୈଜୟନ୍ତୀ ବନ-
ମାଳା ସୁମାଳତୀ ବୃନ୍ଦେ । ୩ ।
ନବୀନ ତରୁଣୀ ତରୁଣ ସୁବେଶ
ପରିଧାନ ପଟ୍ଟ ନୀଳ ପୀତ ବାସ
ମୋହନ ମୁରଲୀ ଲୀଳା ତାମରସ
ଶ୍ରୀକର ମଣ୍ଡିତ ଶ୍ରେଷ୍ଠେ । ୪ ।
ପଦାବ୍ଜ ଯୁଗଳେ ମଂଜୁଳ ମଂଜୀର
ବିବିଧ ଭୂଷଣେ ଭୂଷିତ ଶରୀର
ନିତ୍ୟ ନଟବର ଶ୍ରୀମୂର୍ତ୍ତି ଶୋଭନ
ଗୋପାଳ କୃଷ୍ଣ ହି ବନ୍ଦେ । ୫ ।

## ରାଗ ଶଙ୍କରା ଭରଣ—ତାଳ ଆଠତାଳ

ମନ ଭଜ ନିରନ୍ତରେ
ଅଭିନବ ଶ୍ରୀ ଯୁଗଳ ରୂପକୁ ସ୍ୱାନ୍ତରେ । ପଦ ।
ଜମ୍ବୁନଦ ହେମ ନୀଳ ଇନ୍ଦୀବର କାନ୍ତି
ଶ୍ରୀରାଧା ଗୋବିନ୍ଦ ଜଗନ୍ମୋହନ ମୂରତି । ୧ ।
ଲଳିତାଦି ଆଳୀ ଆଳ ପରିବୃତ
ନୀଳ ପଞ୍ଚଶାଟୀ ପୀତାମ୍ବର ପରିହିତ । ୨ ।
ମଧୁର ଶ୍ରୀଅଙ୍ଗ ନାନାଭୂଷଣେ ମଣ୍ଡିତ
ନବୀନ କୈଶୋର ଛବି ଶୋଭା ଅଲଙ୍କୃତ । ୩ ।
ଗାନ୍ଧର୍ବୀଜନ ଅଦ୍ୟାପ୍ତ ସୁଲଳିତ ବେଶ
ଅପୂର୍ବ ସୁନ୍ଦର ନଟବର ବଂଶୀବାଣ । ୪ ।
ଶ୍ରୀ ବୃନ୍ଦାରଣ୍ୟ ବିହାରି ପଦାବ୍ଜ ସ୍ମରଣେ
ଆନନ୍ଦାଶ୍ରୁ ନୟନେ ଗୋପାଳକୃଷ୍ଣ ଭଣେ । ୫ ।

—◦XO◦—

## ଯୁଗଳ ଭଜନ

### ରାଗ ଧନାଶ୍ରୀ—ତାଳ ଏକତାଳୀ

ଭଜମନ ରାଧା ଶ୍ୟାମେ,
ବାସ ଅଭିଳାଷ କର ନିତ୍ୟ ବ୍ରଜଧାମେ । ପଦ ।
ଦିନୁ ଦିନୁ ପରମାୟୁ ଯାଉଅଛି ବିତି
ଭବ ଦେଖ ରାଧାକୃଷ୍ଣ ବିନୁ ନାହିଁ ଗତି । ୧ ।
ଧନଜନ ପୁତ୍ର ପତ୍ନୀ କେ ଅଟେ କାହାର ?
ଅସାର ସଂସାରେ ଏକା ହରିନାମ ସାର । ୨ ।
କୁସଙ୍ଗ ବର୍ଜି ସଦା ସାଧୁ ସଙ୍ଗ ବାଞ୍ଛି
ଜାତି କୁଳ ଅଭିମାନ ତୃଣ ତୁଲ୍ୟ ଗଣି । ୩ ।
କୃଷ୍ଣ ଗୁଣ ଲୀଳା ଗାନେ ହୁଅନ୍ତୁ ପ୍ରମତ୍ତ
ଯୁଗଳ ପଦାବ୍ଜ ଧନେ ହୋଇବୁ କୃତାର୍ଥ । ୪ ।

ଜାଣଇ ଗୋପାଳକୃଷ୍ଣ କି କହିବ ବେଶି
ସେବା ଅଧିକାର ପାଇ ହୁଅରେ ଲାଳସୀ । ୫



## ରାଗ ନାଟକାମୋଦି ମିଶ୍ର—ତାଳ ଆଢ଼ତାଳି

( କପଟ ମଧୁର ସେନରେ—ବୃନ୍ଦେ )

ରଜନୀ ଦିନକୁ ଭଜରେ ମାନସ ।
ଅଜ ଶେଷ ଶିବ ବାସବାଦି ଦେବ ବନ୍ଦ୍ୟ ଯେଉଁ [illegible] । ପଦ ।
ସଚ୍ଚିଦାନନ୍ଦ ସାନ୍ଦ୍ରାଙ୍ଗ ଶ୍ରୀମୂର୍ତ୍ତି ସର୍ବସ୍ୱ ଶର୍ବସ୍ୱ ଧାମ
ଅବିଚିନ୍ତ୍ୟ ମହାଶକ୍ତି ସୁବିଦଗ୍ଧ ବଂଶୀ ବୃନ୍ଦାରଣ୍ୟନାମ । ୧ ।
ଅଖିଳ ସିଦ୍ଧି ନିକର ଯାହାଙ୍କର ବଶୀଭୂତ ନିରନ୍ତର
ମାଳକୁ ମାଳ ଅଗଣିତ ବ୍ରହ୍ମାଣ୍ଡ ବିରାଜେ ଘୂରନ୍ତି ଯାର । ୨ ।
ପ୍ରତ୍ୟୁତ୍ପନ୍ନ ମତି ବରିଷ୍ଠ ଯେ ଅତି ଯେ ମେଧାବୀ ସୂକ୍ଷ୍ମବୁଦ୍ଧି
ସକଳ ବିଦ୍ୟା ବିଶାରଦ ଯାହାଙ୍କ ଅପାର କୃପା ବାରିଧି । ୩ ।
ନୃତ୍ୟ ଗୀତ କଳାବାଦ୍ୟରେ ସତତ ପରମ ନିପୁଣ ଯେହୁ
ନିରୁପାଧିପ୍ରେମ ପରିପୂର୍ଣ୍ଣ ଯାର ରସ କଥନରେ ସ୍ନେହୁ । ୪ ।
ସର୍ବାନ୍ତର୍ଯ୍ୟାମୀ ସର୍ବଜ୍ଞ ସନାତନ ସ୍ୱରୂପ ନିତ୍ୟ ନୂତନ
ନବୀନ କିଶୋର ନବ ନଟବର ନବୀନ ଘନ ବରନ । ୫
ମହା ମନୋହର ଗୋପବେଶଧର ଅନନ୍ତ ଯା ଗୁଣାବଳୀ
ଶରଣାଗତ ପାଳକ ଭକ୍ତବନ୍ଧୁ ପ୍ରେମବଶ୍ୟ ବନମାଳୀ । ୬
ଉଦାର ଦାତୃକ ଶାନ୍ତ କ୍ଷମାଶୀଳ ଆତ୍ମାରାମ ଗଣାକର୍ଷୀ
କହଇ ଗୋପାଳକୃଷ୍ଣ ସେ ପଦାବ୍ଜେ ଯାଅନ୍ତୁ ଶରଣ ପଶି । ୭



## ଶ୍ରୀ ଶ୍ରୀ ରାଧାକୃଷ୍ଣ ଯୁଗଳଭଜନାମୃତ

ହେମେନ୍ଦୀବର କାନ୍ତି ମଞ୍ଜୁଳତରଂ ଶ୍ରୀମଜ୍ଜଗନ୍ମୋହନଂ
ନିତ୍ୟାଭିର୍ଲଳିତାଦିଭିଃ ପରିବୃତଂ ସନ୍ନୀଳ ପୀତାମ୍ବରଂ
ନାନା ଭୂଷଣ ଭୂଷିତାଙ୍ଗ ମଧୁରଂ କୈଶୋର ରୂପ ଯୁଗ୍ମଂ
ଗାନ୍ଧର୍ବୀ ଜନମବ୍ୟଯଂ ସୁଲଳିତ ନିତ୍ୟ ଶରଣ୍ୟଂ ଭଜେ ।

### ରାଗ ଶଙ୍କରା ଭରଣ—ତାଳ ଅଠତାଳ

ମନ ସଦା କର ଆଶ
ଶ୍ରୀରାଧା ଗୋବିନ୍ଦ ଯୁଗ୍ମ ପଦ୍ମର ସାରସ । ଘୋଷା

ନବ ହେମ ଇନ୍ଦୀବର କାନ୍ତି ମନୋହର
ଜଗନ୍ମୋହନ ଶ୍ରୀ ମୂର୍ତ୍ତି କିଶୋରୀ କିଶୋର । ୧

ନିତ୍ୟ ଲଳିତାଦି ସଖୀଗଣେ ପରିବୃତ
ନୀଳ ପୀତାମ୍ବର ଶୋଭା ବଢ଼ଇ ବହୁତ । ୨

ନାନା ଭୂଷଣେ ଭୂଷିତ ଶ୍ରୀଅଙ୍ଗ ମାଧୁରୀ
ଅତୁଳନୀୟ ଅପୂର୍ବ ଚମତ୍କାର ଧୁରୀ । ୩

ଗାନ୍ଧର୍ବିକା ରାସେଶ୍ୱରୀ ନବ ନଟବର
ଚିଦାନନ୍ଦ ଶ୍ରୀଯୁଗଳ ରୂପ ସୁରୁଚିର । ୪

ସୁଲଳିତ ଲାବଣ୍ୟ ଶ୍ରୀଚରଣୋର ଦ୍ୱନ୍ଦ
ମତ୍ତ ଭରେ ଚୁମ୍ବେ ଭକ୍ତ ମାନସ ମିଳିନ୍ଦ । ୫

ଚିନ୍ମୟ ଚିଦ୍‌ଘନ ରସମୟୀ ରସରାଜ
ସୁଖାନନ୍ଦ ପ୍ରଦାୟକ ଅମଳ ପଦବ୍‌ଜ । ୬

କୋଟିରତି ତୁଲେ କିସେ କୋଟି ରଣରଣ
ଗୋପାଳକୃଷ୍ଣ ନିରତେ ଦେଉଛି ଶରଣ । ୭

—*—

## ଶ୍ଳୋକ

ଆଲୋଳ ଚନ୍ଦ୍ରକ ଲସଦ୍ ବନମାଲ୍ୟ ବଂଶୀ
ରତ୍ନାଙ୍ଗ ପ୍ରଣୟ କେଳି କଳା ବିଳାସଂ
ଶ୍ୟାମଂ ତ୍ରିଭଙ୍ଗ ଲଳିତଂ ନିୟତ ପ୍ରକାଶଂ
ଗୋବିନ୍ଦ ମାଦିପୁରୁଷଂ ତମହଂ ଭଜାମି ।

—*—

## ରାଗ ମଙ୍ଗଳଗୁର୍ଜ୍ଜରୀ—ତାଳ ତ୍ରିପୁଟା

ଭଜରେ ମାନସ ! ବ୍ରଜରାଜ ନନ୍ଦନଙ୍କୁ
ସରକଂଜ ନେତ୍ର ଭକ୍ତ ହୃଦ ଚନ୍ଦନଙ୍କୁ । ଘୋଷା ।
ଈଷତ୍ କମ୍ପାନ୍ୱିତ କେଶ ବର୍ହ ଚନ୍ଦ୍ରକ
ମସ୍ତକ ଚୂଡା ଉପରେ ଦିଶେ ଜକଜକ । ୧
ଅଧରେ ମୋହନ ବଂଶୀ ବନମାଳା ଗଳେ
ମଣ୍ଡିତ ରତ୍ନ ବଳୟ ଶ୍ରୀବାହୁ ଯୁଗଳେ । ୨
ପ୍ରଣୟ ପୂର୍ବକ ପରିହାସାଦି କରଣେ
ବିଶେଷରେ ପରମ ନିପୁଣ ଅନୁକ୍ଷଣେ । ୩
ଶ୍ୟାମ ସୁନ୍ଦର ତ୍ରିଭଙ୍ଗ ଲଳିତ କିଶୋର
ନିୟତ ପ୍ରକାଶ ଗୋପବେଶ ମନୋହର । ୪
ସେବ୍ୟ ସର୍ବ ଅବତାର ଗୋବିନ୍ଦ ଚରଣ
ସଦା ଆଶ୍ରିତ ଗୋପାଳକୃଷ୍ଣ ଅଶରଣ । ୫



## ରାଗ ଚୋଦ୍ଦପରଜ—ତାଳ ଆଡ଼ତାଳୀ

ରେ ମାନସ ! ସ୍ୱାମିନୀ ସେବାରେ ରହି
ବହୁ କାଳଯାଏ ସମ୍ଭାଇବେ ତୋର
ମଞ୍ଜରୀ ଗଣଙ୍କୁ ବନ୍ଦରେ । ଘୋଷା
ପ୍ରେଷ୍ଠାଳୀଙ୍କ ଆଜ୍ଞା ପାଳ ପ୍ରତି କ୍ଷଣେ
ଖେଳକ କୁଂଜ ପ୍ରାଙ୍ଗଣ
ଅସାର ସଂସାର ଦୁର୍ଲକ୍ଷ୍ୟକ ବୁଦ୍ଧି
ଦେନ ସଖୀ ଆଚରଣରେ -୧
ଛଟକଚ ଜାଣି, ନିଆଳୀ ସେବଣି
ଯୂଥିକା ସୁମନ ହାର
ଜମ୍ବୁ ନଦାଙ୍ଗିନୀ ଜମ୍ବୁ ଅଶ୍ମମଣି-
ଗଳେଦଅ ଉପହାରରେ -୨
ତୁଂଗ ବିଦ୍ୟାଙ୍କର ଅନୁଗତେ ହର
ସୁଖେ ବଞ୍ଚ ଯାମିନୀ
ନବଦାସୀ ଅଭି— ମାନେ ତୁ ଆଦର
ଯାଚି ଦେବାର ଖଟଣି ରେ -୩
ଗୋପାଳକୃଷ୍ଣର ସେବା ଅଧିକାର
ବେଳେକ ନହେଉ ବ୍ୟର୍ଥ
ଶ୍ରୀଗୁରୁ ପ୍ରଦତ୍ତ ବୀଜମନ୍ତ୍ର ତନ୍ତ୍ର
ଗଣ୍ଠି କରଥା ଅନ୍ତର ରେ । ୪



## ରାଗ କଳସା—ତାଳ ଏକତାଳି

ଶ୍ରୀ ଗୁରୁ ପ୍ରଭୁଙ୍କ ଭାବ ସାଗରରେ ମାନସ !
ସ୍ୱାମିନୀଙ୍କ ଅଷ୍ଟକାଳ ସେବା କୃତ୍ୟେ ଭାସ ଯେ ।ଘୋଷା

ନିଶାନ୍ତେ କୁଞ୍ଜରୁ ଯୁଗଳ ଚଳନ୍ତେ ବନ୍ଦୋବସ୍ତ
ସଖୀ ସଙ୍ଗେ ଯିବୁ ଯାବଟ୍‌ ଗ୍ରାମ ପୁର ଧରି ଯେ ।୧
ତପାସୁ ନନ୍ଦା ଭଣ୍ଡାରେ ଯାବଟ ମନ୍ଦିରେ
ଶଣ୍ଡଣି ଖଟିବୁ ସ୍ନାନ ବେଶ ଭୂଷାଦିରେ ଯେ ।୨
କୃଷ୍ଣଚନ୍ଦ୍ରଙ୍କ ପ୍ରୀତ୍ୟର୍ଥେ ମନୋଜ୍ଞ ଦ୍ରବ୍ୟ ପାକେ
ନନ୍ଦ ଗ୍ରାମେ ଯିବୁ ଯଶୋଦାଙ୍କ ପାଖେ ଯେ ।୩
ସୂର୍ଯ୍ୟ ପୂଜା ଛଳେ ଯାବ ଆଳୀଗଣ ସଙ୍ଗେ
ଯୁଗଳ ମିଳନ ଶୋଭା ବିଲୋକିବୁ ରଙ୍ଗେ ଯେ ।୪
ଶ୍ରୀ ଅଙ୍ଗ ବର୍ଣ୍ଣନେ ସଖୀ ମାନଙ୍କ ଅଶ୍ଳେଷେ
ଅନୁଭବିବୁ ଅପୂର୍ବ ଆନନ୍ଦ ବିଶେଷେ ଯେ ।୫
ଦୋଳା ଝଞ୍ଜା ସୁନ୍ଦର କରଣେ ହେବୁ ସଖୀ
ଧନ୍ୟ ହେବୁ ମଧୁପାନ ଧାରାମୃତ ଚାଖି ଯେ ।୬
ଜଳକେଳି ଆଦି ଯେତେ ମଧ୍ୟାହ୍ନ ବିଳାସ
ଧନ୍ୟ ହେବା ପାଶ କ୍ରୀଡ଼ା ହାସ ପରିହାସ ହେ ।୭
ଅପର ଗୋଷ୍ଠେ ଅପରାହ୍ନ ଦର୍ଶନ ସମୟେ
ସଖୀ କୁଳେ ବ୍ୟଗ୍ରତା ନାଶିବୁ ଅନ୍ତଃପୁରେ ଯେ ।୮
ସାୟଂ କାଳରେ ଆଣିବୁ ମିଳନ ସଙ୍କେତ
ନିଶା ଯୋଗେ କୁଞ୍ଜ ଅଭିସାରେ ହେବୁ ରତ ଯେ ।୯
ସେ ମିଳନାନନ୍ଦାବସ୍ଥାରେ ରହିବୁ ନିମଗ୍ନି
କୃତାର୍ଥ ହେବ ଗୋପାଳକୃଷ୍ଣ ଲୀଳା ଦେଖି ଯେ ।୧୦



## ରାଗ-ତୋଡ଼ି ପରଜ । ତାଳ-ଅଡ଼ତାଳୀ

ରେ ମାନସ ! କାହାକୁ ଭଜିବୁ ଆଉ ?
ଧାତା ଇନ୍ଦ୍ର ହର ଆଜ୍ଞାକାରୀ ଯାର
ଏମନ୍ତ ସାମନ୍ତ ଥାଇଁ । ଘୋଷା ।

ଏକା କୃଷ୍ଣ ବ୍ରଜେ ବ୍ରଜେନ୍ଦ୍ର ନନ୍ଦନ
ପୂର୍ଣ୍ଣତମ ଆମ୍ବାସ୍ୱମ
ଆନ ଯେତେ ରୂପ ତାହାଙ୍କ ସ୍ୱରୂପ
ପୂର୍ଣ୍ଣତର ପୂର୍ଣ୍ଣ ନାମ ।୧

ସହସ୍ରାନନରେ ଶେଷ ଭଣି ଶେଷ—
କରନାହିଁ ଯା ମହିମା
ଏକ ମୁଖେ ଅବା କେ ବର୍ଣ୍ଣି ପାରିବ ?
ସେ ଅନନ୍ତ ଗୁଣ ସୀମା ।୨

ଚତୁର୍ବ୍ୟୂହ ମୂର୍ତ୍ତି ପରଂବ୍ୟୋମ ପତି
ଯାହାଙ୍କର କଳାଅଂଶ
ସର୍ବ ଅବତାର କ୍ଷୀରବ୍ଧି ଶାୟୀ ଯେ
ଯା ଧାମାଙ୍କୁ ଅବତଂସ -୩

ସର୍ବ ଶକ୍ତିମନ୍ତ ସର୍ବାନ୍ତର୍ଯ୍ୟାମୀତ
ବେଦ ବେଣୁ ଶୃଙ୍ଗ ପାଣି
କହଇ ଗୋପାଳ କୃଷ୍ଣ ତୁ ସକୃଷ୍ଣ
ନେବେ ଦଳେ କୃଥା ଜାଣି -୪



## —ଶ୍ଳୋକ—

ସମଂ ଶ୍ରୀ ରୂପେଣ ସ୍ମର ବିବଶ ରାଧା ଗିରିଭୃତୋ,—
ବ୍ରଜେ ସାକ୍ଷାତ୍ ସେବା ଲଭନ ବିଧୟେ ତଦ୍ଗଣଯୁଜୋଃ
ତଦିଜ୍ୟାଖ୍ୟା ଧ୍ୟାନ ଶ୍ରବଣ ନତି ପଞ୍ଚାମୃତ ମିଦଂ
ଧୟନ୍ ନୀତ୍ୟା ଗୋବର୍ଦ୍ଧନ ମନୁଦିନଂ ତ୍ୱଂ ଭଜମନଃ

## ରାଗ—ମାଳଶ୍ରୀ

ଆରେ ମନ ! ବ୍ୟର୍ଥ ହୋଇ ନ ଯା ବାଉଳୀ
ଗିରିରାଜ ଗୋବର୍ଦ୍ଧନେ ଲଗା ମଉଳି ।୧।
ଗୁରୁଦେବ ଶ୍ରୀ ରୂପଙ୍କ ସହ ଶ୍ରୀ ବ୍ରଜେ
ପରମ ଆନଂଦ ରସେ ମଜ୍ଜି ଭୁବନେ ।୨।
କଂଦର୍ପ ବିବଶ ରାଧା ଗୋବିଦଂକର
ସାକ୍ଷାତ ସେବା ପ୍ରାପ୍ତି ପାଇଁ ଆଚର ।୩।
ନିୟମେ ପୂଜନ ନାମ ଗାନ ଧ୍ୟାନେ
ମହିମା ଶ୍ରବଣେ ନମସ୍କାର ବିଧାନେ ।୪।
ଏହି ପଞ୍ଚାମୃତ ସୁଖେ ସେବନ କରି
ଶ୍ରୀ ଗୋବର୍ଦ୍ଧନଂକୁ ଭଜ ନିଷ୍ଠା ଆଚରି ।୫।
କହଇ ଗୋପାଳକୃଷ୍ଣ ହର୍ଷ ବଦନେ
ଭଜନ ରତ୍ନ ପାଇବୁ ଶ୍ରୀ ବୃନ୍ଦାବନେ ।୬।



## ରାଗ ଚକ୍ରବାକ ତାଳ ମିଶ୍ରରୂପ

( ପ୍ରେମ ଚନ୍ଦ୍ରାମଣିକ କେ ରୁଷାଇଲାରେ—କୃଷ୍ଣେ )

କେତେ କାଳ ହେଲା ଦେଖୁନାହୁଁ ସଙ୍ଗ
ଶେଯ ଯାକ ଉନ୍ମତଲା ଲୁଡ ବନ୍ଧୁ ବନ୍ଧୁ ।ପଦ।
ତରଣି ବୁଡଗଲୁ ଏସଣିକ ଅଇଲୁ
ଅଣ୍ଟିଲା ନାହିଁକ କଣ୍ଠୀରକ ମଧ୍ୟ
ହାର ପର ହୁଦେଥିଲୁ ରଙ୍ଗ ।୧
ଆହାର ଅସମ୍ଭବ କେ ଶୁଣିଲେ ହସିବ
ବନ୍ଧୁ ଧେନୁ ପଛେ ବଂଶୀ ବଜାଇ ସେ
ଗଲେ ବାଟ ଜଗିଥିଲୁ ଭୃଙ୍ଗ ।୨
ଗୁଳ ବାଜ ଯେଉଁଠେ ଗଣ୍ଡି ଯାଏ ଫୁଟି
ତେଉଁଠେ ବ୍ୟଥା ହେବ ଲାବର୍ଣ୍ଣ ଚନ୍ଦ୍ରୁଟି
ନ ପାରବୁ ଉଠି ଆଗେଁ ବସ୍ତ୍ରଓଷ୍ଟୀ
ଟାଣି ନ ପାରବୁ ଆଣିକ । ୩ ।
ବଡ଼ ଲମ୍ପଟିଆ ଗୋଧନ ଗୋଠିଆ
ବାଟ ଜଗି ରଙ୍ଗେ ଗୋପୀଙ୍କ ମାଠିଆ
ନଟକୁଟି ଆସେ ଭଜନ ବେଠିଆ
ଗୋପାଳକୃଷ୍ଣ ତା ଭାବ ଜାଣିକ । ୪ ।



## ମନଃପ୍ରତି ବଚନର ବାଣୀ

( ରାଗ ବଙ୍ଗଳାଶ୍ରୀ—ତାଳ ପହପଟ )

ଭଜବନା ' ରାଧେ କୃଷ୍ଣ ' ମାନସ !
ନରତେ ହୋଇ ସନ୍ତୁଷ୍ଟ
ବିତାପ ଯନ୍ତ୍ରଣା ହୋଇଯିବ ଉଣା
ନରହବ ଛାକ୍ରା ଉତ୍ତ୍ଷ୍ଟ । ୧ ।

ଶ୍ରୀ ଯୁଗଳ ଗବେ ମର୍ଜିରେ ମାନସ !
ନାମ ହେଉଥିଲେ ଭଜ
ଭୁଞ୍ଜ ଭୁନ୍ଦ ବେଲ୍ଭ ଏଭବେ ଆଗଭ୍
ହୋଇବୁ—ଦଢ଼ଗାଞ୍ଜୀ । ୨ ।
କେଣେଠି କରୁ ପରୁଆରେ ମାନସ !
ହୋଇ ଦୁଃଚନ୍ତା ଜ୍ବରୁଆ
ପଲା ବ୍ରଜଗ୍ରାମେ ରହିବୁ ଅଗମେ
ନ ହୋଇ ଯମ ଡରୁଆ । ୩ ।
ରାଧେଶ୍ୟାମ ଗୁଣ ଗୀତ ରେ ମାନସ !
ବ୍ରଜ ବାସୀଙ୍କ ଆଶ୍ରିତେ
ଅପୂର୍ବ ଆନନ୍ଦ ପ୍ରେମର ସମ୍ପଦ
ଅସ୍ବାଦବୁ ସୁଖେ ନିତ୍ୟେ । ୪
ଶ୍ରୀ ଗୁରୁ ଦେବାର ମନ୍ତ୍ରରେ ମାନସ
ଜପି ହୋଇବୁ ସ୍ବତନ୍ତ୍ର
ସିଦ୍ଧ ତନୁ ଧର ଗୋପାଳ କୃଷ୍ଣର
ପୂରୁ ସଂକଳ୍ପ ଯାବନ୍ତ । ୫ ।



## ଶ୍ରୀ ରାଧା ଗୋବିନ୍ଦ ପଦର—ରାଗ, ଅଡ଼ତାଳୀ

ରେ ମାନସ ! ଶ୍ରବଲେ ଶ୍ରବଣ ପଣ
ଶ୍ରୀରାଧା ଗୋବିନ୍ଦ କଥା ହୋଇବାର ବସି ଧୀର ଧୀର କଣ । ଘୋଷା
ନିଭୃତ କୁଞ୍ଜରେ ସୁମନ ଶେଯରେ ଗାଢ଼ ଥାଉ ଚେତା ହୋଇ
ଦୃଷରେ ବଂଶୀ ଦେଉ ଜଳ ସଜେ ରହି ଶ୍ରୀମୁଖେ ମୁଖ ଲଗାଇ ।୧
ଆଳୀମାନେ ଥିଲାବେଳେ କେଣେ ମୋର ନିକଟକୁ ଆସିବାର
କି ଲାଜ ନାହିଁ ବୋଲୁ ବ୍ରଜବଧୂ ସରୁ ଚୁମ୍ବନ ଦେବାର ।୨
କି ଲାଜ ନାଚବା ଲୋକର ବରଜ ରାଜପଥେ ଗୁଲଗୁଲ
ବୋଲୁ ଶ୍ରୀ ପ୍ରାଣେଶ ଗଣ୍ଡେଗଣ୍ଡ ଦେଇ ମଜ୍ଜିବାର ଝୁଲଝୁଲ ।୩

ଜଟିଳା ଆସୁଛୁ ବୋଇଲେ ପଳାଇ ସପ୍ତଚର୍ଣ୍ଣି କୁଞ୍ଜିମରେ
ଦୁହେଁ ଯାକ ଲୁଚି ପଡୁଛ ହେଲର କ ଶିରୋମଣି ବାସରେ ।୪
ଶ୍ୟାମଳା ବେଶରେ ପୁରକୁ ଯିବାର ଛଳ ରଚିତ ଚରିତ
ନାସା ଭୂଷଣ କାହ୍ନି ବୋଲି ଭାଷନ୍ତି କୁଞ୍ଜିଲତା କଳାଦନ୍ତ ।୫
ଘନ ସୁନ୍ଦର ଶ୍ରୀମନ୍ତ ହୋଇ ଜନଅର ଛଳେ ଭେଟାଭେଟି
ପରିସ୍ୱଙ୍ଗ ରଙ୍ଗେ ମଜ୍ଜି ପୁର ଆଡେ ଉପ୍ତେ ତାନଡାଳ ଦୃଷ୍ଟି ।୬
ଗୋପାଳକୃଷ୍ଣ କହେ ଶ୍ରୀ ରାଧାକୃଷ୍ଣ ପ୍ରେମରସ ସୁଧାବ୍ଧିର
ଶୀକର ଯାର ସ୍ୱ ରଚନା ରସିକ ସେ ଜାଣିବ ଏ ମଧୁର ।୭

—*—

## ରାଗ ବେହାଗଡ଼ା—ତାଳ ତ୍ରିପୁଟା

( ଦେଖିଲେ ଦେଖିଲାପରି—ବୃତ୍ତେ )

ଶ୍ରୀରାଧା ଗୋବିନ୍ଦ ବୋଲି ବ୍ରଜକୁ ଚାଲଯା ମନ !
ଅଳକ ସୁଖରେ କେତେ ବ୍ୟର୍ଥେ ହେଉଛୁ ଉଚ୍ଛନ୍ନ ।ପଦ

ଚିଦାନନ୍ଦ ସୁଖଦାୟୀ ସେ କାରୁଣ୍ୟାମୃତମୟୀ
ସେ ପଦାବ୍ଜ ଉନବଂଶ ଚନ୍ଦ୍ର ଭୁଲେ ହୋ ଖଞ୍ଜନ ।୧

ଯେବେ ସେବାଧନେ ବାଞ୍ଛା ଶ୍ରୀ ଗୁରୁଙ୍କୁ କର ପୂଜା
ବତାଇ ଦେବେ ଯାବନ୍ତ ପରିଚର୍ଯ୍ୟାର ବିଧାନ ।୨

ସ୍ୱ ସଖୀରୂପା ସେ ତୋର ଦେବେ କୃପା ଅଳଙ୍କାର
ଶ୍ରୀ ରୂପଦକ ଆଶ୍ରିତେ ଜୀବନ ମଣିବୁ ଧନ୍ୟ ।୩

ସ୍ୱାମିନୀ କୁଣ୍ଡ ତଟରେ ବାସ କର ରହସ୍ଥିରେ
ଶ୍ରୀ ରାସେଶ୍ୱରୀ କଙ୍କରୀ ପଣେ ଯାଚବେ ଶରଣ ।୪

ଗୋପାଳକୃଷ୍ଣ ଭାଷଇ ଦୟା ଅକାରଣ ହୋଇ
ଛାଡ଼ଦେ ମାୟାମମତା ପୁତ୍ର ପତ୍ନୀ ପରିଜନ । ୫ ।

—*—

## ରାଗ ଶଙ୍କ ଶ୍ଳୋକ

ଚିନ୍ତାମଣି ପ୍ରକର ସଦ୍ମସୁ କଳ୍ପବୃକ୍ଷ
ଲକ୍ଷାବୃତେଷୁ ସୁରଭିରଭି ପାଳୟନ୍ତଂ
ଲକ୍ଷ୍ମୀ ସହସ୍ର ଶତ ସଂଭ୍ରମ ସେବ୍ୟମାନଂ
ଗୋବିନ୍ଦମାଦି ପୁରୁଷଂ ତମହଂ ଭଜାମି ।

## ରାଗ ଶଙ୍କରା ଭରଣ—ତାଳ ଆଠତାଳି

ମନ ଭ୍ରମଦେଇ କେଣେ ?
ରହୁ ଯା ସ୍ୱାମିଙ୍କ ସ୍ୱାମୀ ପଦାବ୍ଜ ସ୍ମରଣେ ।ପଦ
ଚିନ୍ତାମଣି ନିର୍ମିତ ଜଳସୂତ୍ରାଚ ସଦ୍ମ
ଲକ୍ଷ ଲକ୍ଷ କଳ୍ପବୃକ୍ଷେ ଯେ ସ୍ଥାନ ଶୋଭଇ ।୧
ସେ ଅସାଧାରଣ ଗୋକୁଳ ନାମେ ପୀଠ ସ୍ଥଳେ
ଯେ କାମଧେନୁ ବୃନ୍ଦକୁ ପାଳନ୍ତି କୁଶଳେ ।୨
ବ୍ରଜ ସୁନ୍ଦରୀ ରୂପିଣୀ ଲକ୍ଷ୍ମୀଗଣ ତୋଷେ
ଯାହାଙ୍କ ସେବା ଖଟନ୍ତି ଯଥା ଅବକାଶେ ।୩
ସେହି ଆଦି ପୁରୁଷ ଶ୍ରୀ ଗୋବିନ୍ଦ ଭଜନେ
କହୁଛି ନୋହୁ ଗୋପାଳକୃଷ୍ଣ ନିତ୍ୟଧନେ ।୪

—*—

## ରାଗ ଖରହର ପ୍ରିୟା—ତାଳ ପହ୍ନପଟ

ଭବ ଭୋଗ ରୋଗ ଜାଣି ଭୁ ମାନସ ! ଏ ଜଞ୍ଜାଳୁ ଖସି ଯାରେ
ଶ୍ରୀରାଧା ଗୋବିନ୍ଦ ପଦ ଅରବିନ୍ଦ ମକରନ୍ଦ ଚ ମୁଥାରେ । ଘୋଷା
ତୋ ସିଦ୍ଧ ପ୍ରଣାଳୀ ଦେହନାମ ଭାଳ ଚିନ୍ତ ଶ୍ରୀଗୁରୁ କୃପାରେ
ଆନନ୍ଦ କୌତକ ପୂର୍ଣ୍ଣ କର ଅଷ୍ଟ ଯୁଗଳ୍କୁ ବକ୍ଷ ତନ୍ତ୍ରାରେ । ୧
ଗୋବର୍ଦ୍ଧନ ଗିରି ପ୍ରଦକ୍ଷିଣ କରି ମଜ୍ଜ ମାନସୀ ଗଙ୍ଗାରେ
ବ୍ରହ୍ମ ରୁଦ୍ର ଇନ୍ଦ୍ର, ଗୋବିନ୍ଦ କୁଣ୍ଡରେ ଅବଗାହି ମୋଦ ଯାରେ । ୨
ଦର୍ଶନେ ଶ୍ରୀ ଲୀଳେ ଶ୍ରୀକୁଣ୍ଡ ସଲିଳେ ମଜ୍ଜି ପାତକ ହଜାରେ
ସ୍ୱର୍ଣ୍ଣ କୁଣ୍ଡ ନୀରେ ବୁଡ଼ ପ୍ରେମସରେ ରାଧେ ଶ୍ୟାମ ମୁଖେ ଗାରେ । ୩

ସଂକେତ ବର୍ଷାଣ ଦଧି ନନ୍ଦଗ୍ରାମ ଯାବଟ ମୁଖରା ଗାଁରେ
ଭ୍ରମେ ଝୁଲି ଝୁଲି ନଚାଇ ମଣ୍ଡଳ ଆଭିରଙ୍କ ଦ୍ୱାରେ ଦ୍ୱାରେ
ଯେନ କହେ ଖୋଲ ପ୍ରସାର ଅଞ୍ଚଳ ମଧୁକରୀ ମାଗି ପାରେ । *
ହା ସ୍ୱାମିନୀ ରାଧେ । ତାର ସାନନ୍ଦେ ଗଡ ଯମୁନା କନାରେ
ଉର୍ଦ୍ଧ୍ୱ ବାହୁ ତୋଳି ରାସସ୍ଥଳୀ ଧୂଳି ବୋଳି ହାତୋନ୍ନଜଗାରେ ।୬
ବ୍ରଜବନ ବାସୀ ସାଧୁଙ୍କ ପଦପଙ୍କରେ ଅସ୍ଥିର ଶିର ଲଗାରେ
ସକଳ ପୂର୍ଣ୍ଣେ ଗୋପାଳକୃଷ୍ଣ ଭଣେ ଶ୍ରୀରାଧା କାନ୍ତ ଆଗାରେ । ୭



## ରାଗ କଲ୍ୟାଣୀ—ତାଳ ରୂପକ

( ନ ତେଜିବ ମୁରଲୀ ଧର ବୃତ୍ତେ )

ଭ୍ରମି ନୁହ ବଶସ୍ତ କଣେ
ରହ ରାଗମାର୍ଗ ଅନୁସରଣେ । ଘୋଷା

ମନ ଭୂତ ମତ୍ତ ବାରଣ    ହୋଇ ଯିବୁଟି ଆକାରଣ
ଶ୍ରୀଗୁରୁ ଚରଣ ପଙ୍କଜେ ଶରଣ
ନେଇଣଥା ଭକ୍ତ୍ୟଙ୍ଗ ଯାଜନ ପଣେ । ୧

ସାଧୁ ସଂଗେ ହରି କଥନ    ପ୍ରପଞ୍ଚଙ୍କୁ କର ଯଜନ
ଆଚରୁଁ ଏ ସ୍ଥିତ ଅନର୍ଥ ନିବୃତ୍ତି
ହୋଇଯିବ ଶଙ୍କା ପାଇ ଆପଣେ । ୨

ପ୍ରବର୍ତ୍ତକ ଅବସ୍ଥା ଅନ୍ତେ    ସାଧକ ଭୂ ହେବୁ ନିଷ୍ଠିନ୍ତେ
ତଦନ୍ତରେ ସିଦ୍ଧ ତନୁଟି ବନ୍ଧିବୁ
ସ୍ୱାଭୀଷ୍ଟ ଲାଳସା ତହିଁ ପୂରଣେ । ୩

ରାସେଶ୍ୱରୀ କରୁଣା ଦୃଷ୍ଟି    ତୋ ଉପରେ କରିବେ ବୃଷ୍ଟି
କହଇ ଗୋପାଳକୃଷ୍ଣ ଗଣ୍ୟ ହେବୁ
ସଖୀ ମଞ୍ଜରୀଙ୍କ ମଧ୍ୟରେ ଜଣେ । ୪





—ଶ୍ଳୋକ—

ନ ଧର୍ମଂ ନା ଧର୍ମଂ ଶ୍ରୁତି ଗଣ ନରୁକ୍ତଂ କଲକୁରୁ
ବ୍ରଜେ ରାଧାକୃଷ୍ଣ ପ୍ରଚୁର ପରିଚର୍ଯ୍ୟାମିହ ତନୁ
ଶଚୀସୂନୁଂ ନନ୍ଦୀଶ୍ୱର ପତି ସୁତତ୍ୱେ ଗୁରୁବରଂ
ମୁକୁନ୍ଦ ପ୍ରେଷ୍ଠତ୍ୱେ ସ୍ମର ପରମଜସ୍ରଂ ନନୁମନଃ

## ରାଗ,ଶଙ୍କରାଭରଣ—ତାଳ ଆଠତାଳୀ

ମନ ଘେନ ମୋରବାଣୀ
ଶ୍ରୀଦାସ ଗୋସ୍ୱାମୀ ଯାହାଛନ୍ତି ପରିମାଣି । ପଦ
ବେଦ ବର୍ଣ୍ଣ ନିଷେଧରେ କିସ ପ୍ରୟୋଜନ ?
ଚତୁର୍ବର୍ଗ ଲାଭ ଆଶା କର ବରଜନ । ୧
ସାଧକ ଦେହରେ ସିଦ୍ଧ ଦେହ ଅନୁସର
ସ୍ୱୀୟ ବ୍ରଜବାସ ଭାବନାରେ ନିରନ୍ତର । ୨
ଶ୍ରୀରାଧା ଗୋବିନ୍ଦଙ୍କର ପ୍ରଚୁର ସେବନେ
ଶଚୀସୁତ ଶ୍ରୀ ଗୌରାଙ୍ଗେ ନନ୍ଦସୁତ ଜ୍ଞାନେ । ୩
ଶ୍ରୀ ଗୁରୁ ଦେବଙ୍କୁ କୃଷ୍ଣ ଅବତାର୍ଣ୍ଣ ଜାଣି
ସ୍ମରଣ କରୁଥା ନାମ ବଦନେ ବଖାଣି । ୪ ।
ଦେହ ଯହିଁ ତହିଁ ଥାଉ ବ୍ରଜେ ଥାଅ ମନ
ନିଷ୍ଠାଲେ ଗୋପାଳକୃଷ୍ଣ ହୋଇବୁଟି ଉଚ୍ଛନ୍ନ । ୫ ।

—•—

## ରାଗ, ବଙ୍ଗଳାଶ୍ରୀ—ତାଳ, ସରିମାନ

ଭଜୁଥାରେ ମନ — ଶ୍ରୀରାଧା ରମଣ
ଶରଣ ରକ୍ଷଣ ହରିକି,
ଯେବେ ଭବାର୍ଣ୍ଣବୁ — ଉଦ୍ଧାର ହୋଇବୁ
ଧର ଶ୍ରୀପଦାବ୍ଜ ତାହାଙ୍କ । ପଦ ।
ଜନ୍ମି ମଧୁପୁରେ — କଂସ ବନ୍ଦୀଘରେ
କରୁଣା କଲେ ଆତ୍ମଜଙ୍କି,
ଶ୍ରୀବ୍ରଜ ମଣ୍ଡଳେ — ନାନାରୂପ ହେଲେ
ଲୀଳା ଛଳେ ମାୟା କରିକ । ୧ ।
ବତ୍ସ ବକା ଶଣ୍ଢ — ଶକଟା ଦୁର୍ଦ୍ଦଣ୍ଡ
ବତ୍ସା ଆଘା ଆଦି କରିକି
ପ୍ରାଣେ ବିନାଶଲେ — କାଳିକ ଦଳିଲେ
ଟେକିଲେ ମନ୍ଦର ଗିରିକ । ୨ ।
ଘୋର ଦାବାନଳ — କଲେ ଯେ କବଳ
ଧାତା ଗର୍ବ ହେଲେ ଚୂରିକ
ବ୍ରଜଶିଶୁ ସଂଗେ — ଖେଳି ନାନାରଙ୍ଗେ
ମୋହିଲେ ଗୋକୁଳ ନାରୀଙ୍କି । ୩ ।
ଏହିପରି କେତେ — କଉତୁକ ଲୀଳା
କେ ପାରିବ ଅନ୍ତ କରିକ ?
ଶ୍ରୀ ବୀର ପ୍ରତାପ- — ରୁଦ୍ର ଦେବ * ଭୂପ
ବନ୍ଦେ ସେ କଳୁଷ ହାରୀଙ୍କି । ୪ ।



* ପ୍ରତାପରୁଦ୍ର ଦେବ-ପାରଳା ଖେମୁଣ୍ଡୀର ମହାରାଜା ଗୋପାଳ-କୃଷ୍ଣଙ୍କ କବିତ୍ୱରେ ମୁଗ୍‌ଧ ହୋଇ ତାଙ୍କୁ କବି 'କଳହଂସ', ଓ ବସନ୍ତ କୋକିଳ, ଉପାଧି ଦେଇଥିଲେ । — ସଂକଳକ

## ଶ୍ଳୋକ

ବେଣୁଂ କ୍ୱଣନ୍ତ ମରବିନ୍ଦ ଦଳାୟତାକ୍ଷଂ
ବର୍ହାବତଂ ସମସିତାମ୍ବୁଦ ସୁନ୍ଦରାଙ୍ଗଂ
କନ୍ଦର୍ପ କୋଟି କମନୀୟ ବିଶେଷ ଶୋଭଂ
ଗୋବିନ୍ଦମାଦି ପୁରୁଷଂ ତମହଂ ଭଜାମି ।

## ଆଷାଢ଼ଶୁକ୍ଳ—ତାଳ ଝୁଲ୍ଲ

ଭଜ ଭୁରେ ମନ !
ବ୍ରଜ ବଧୂ ଲକ୍ଷ୍ମୀ ଗୋପେନ୍ଦ୍ର ନନ୍ଦନ । ଘୋଷା ।

ଯା ମଧୁର ବଂଶୀଧ୍ୱନି ଶ୍ରବଣେ
ବିମୋହିତା ବ୍ରଜ ଲଳନା ଗଣେ
ଯାଁହାଙ୍କ ନୟନ ଯୁଗ ଶୋଭିତ
କମଳ ପଲାଶ ପରି ବିସ୍ତୃତ । ୧ ।

ମସ୍ତକେ କଳାପୀ ଚନ୍ଦ୍ରିକା ଚୂଡ଼ା
ବେଷ୍ଟିତ ସେବନ୍ତି ମଲ୍ଲୀ ପାଖୁଡ଼ା
ଅନୁପମ ବେଣୀ ଚରଣେ ଦୋଳେ
ସାଧ୍ୱୀବ୍ରତ ହତ ବିଲୋକ ଢୋଳେ । ୨ ।

କସ୍ତୁରି ନୀରଦ ଦଳିତାଞ୍ଜନ
ନୀଳେନ୍ଦୀବର ଅତସୀ ସୁମନ
ଇନ୍ଦ୍ରନୀଳ ମଣି ମର୍କତ ପନ୍ତି
ତା ତତୁଁ ଅଧିକ ଶ୍ରୀଅଙ୍ଗ କାନ୍ତି । ୩ ।

କୋଟି କୋଟି କନ୍ଦର୍ପ ଏକାବେଳେ
ଶରଣାଗତ ଯା ପଦ କମଳେ
ସେହି ଶ୍ରୀ ଗୋବିନ୍ଦ ଆଦି ପୁରୁଷ
ଗୋପାଳ କୃଷ୍ଣଙ୍କ ସେବ୍ୟ ସର୍ବସ୍ୱ । ୪ ।

—*—

—ଶ୍ଳୋକ—

ଅରେ ଚେତଃ ! ପ୍ରୋଦ୍ୟତ୍ କପଟ କୁଟିନାଟୀ ଭର ଖର
କ୍ଷରନ୍ମୂତ୍ରେ ସ୍ନାତ୍ୱା ଦହସି କଥମାତ୍ମା ନମପି ମାଂ
ସଦା ତ୍ୱଂ ଗାନ୍ଧର୍ବା ଗିରିଧର ପଦ ପ୍ରେମ ବିଳସତ୍
ସୁଧାମ୍ଭୋଧୌ ସ୍ନାତ୍ୱା ସ୍ୱମପି ନିତରାଂ ମାଞ୍ଚ ସୁଖୟ ।

## ରାଗ ମଙ୍ଗଳ ବରାଡ଼ି—ତାଳ ତ୍ରିପୁଟା

ଆରେ ମନ ! କେଣେ ବୁଦ୍ଧି ଦେଉ ଅବୁଝାଣ
ଶ୍ରୀ ବୃନ୍ଦାବାସୀଙ୍କ ଉପଦେଶ ଶିରେ ଘେନ । ୧ ।
ଅନ୍ୟବସ୍ତୁ କପଟତା କୁଟିନାଟି ପୂର୍ଣ୍ଣେ
ଆସକ୍ତି ଗର୍ଦ୍ଦଭ ମୂତ୍ରେ ସ୍ନାନ ଆଚରଣେ । ୨ ।
ମୋତେ ତୋ ସଙ୍ଗତେ ପକାଉଛୁ ଦଗ୍ଧକରି
ଏକି ବଡ଼ମନ ରୀତି ଦେଖୁଛି ତୋହରି । ୩ ।
ସର୍ବଦା ଶ୍ରୀରାଧା କୃଷ୍ଣ ପଦାବ୍ଜ ଯୁଗଳେ
ପ୍ରେମଭକ୍ତି ଅନୁଷ୍ଠାନ କରି ସୁବିମଳେ । ୪ ।
ଅମୃତ ସାଗରେ ସ୍ନାନ କରାଇ ଯତ୍ନରେ
ନିଜେ ସୁଖ ଲଭ ସୁଖୀ କରାଅ ତୁ ମୋରେ । ୫ ।
ପରିହର ବିଷମୟ ବିଷୟ ଲାଳସା
ନ ଭୋଗୁ ଗୋପାଳକୃଷ୍ଣ ସଂସାର ଦୁର୍ଦ୍ଦଶା । ୬ ।

—✻—

## ବିବେକର ମନପ୍ରତି ପ୍ରବୋଧ ବାଣୀ

### ରାଗ ଜୌନପୁର ତୋଡ଼ି—ତାଳ ଝୁଲା

ମନ । ତୋତେ ବୁଝାଇ କହୁଛିରେ ଘେନ ସାର ଉପଦେଶ
ମିଛ ମାୟାଜାଲେ ଆବଦ୍ଧ ହୋଇ ତୁ କାହିଁ ପାଇଁ ପାଉ କ୍ଲେଶ
ଅନ୍ୟାନ୍ୟ ଅଭିପ୍ସା ସଂସାର ଆସକ୍ତି ପରିତ୍ୟାଗ କରିପକା
ଶ୍ରୀ ରାଧା ଗୋବିନ୍ଦ ଚରଣ ସ୍ମରଣେ ଶ୍ରୀବ୍ରଜେ ନିବସ ଥକା । ୧ ।

ସର୍ବ ଦୁର୍ବାସନା ହୋଇଯିବ ଦୂର ଭଜନେ ଥିଲେ ନିରତ
ଯୁଗଳ ପଦାବ୍ଜେ ଏକାନ୍ତ ଭାବେ ତୁ ହୋଇ ଯା ଶରଣାଗତ । ୨ ।
ହା ପ୍ରଭୁ ହା ନାଥ ହା କୃଷ୍ଣ ଉଚ୍ଚାର ଉତ୍କଣ୍ଠାରେ ତାଙ୍କୁ ଡାକ
ସକଳ ମମତା ସର୍ବ ମଳିନତା ଅହନ୍ତା ଦୂରେ ଉପେକ୍ଷ । ୩ ।
ବିଷୟ କୂପରେ ପଡ଼ି ଅନ୍ଧ ମୂଢ଼ ଥାଉଁ ତୋ ଦିବ୍ୟ ନୟନ
ଦୀକ୍ଷାଦାତା ଗୁରୁ ଦେଇଛନ୍ତି ପରା ମହୌଷଧି ଜ୍ଞାନାଞ୍ଜନ । ୪ ।
ତେବେ କାହିଁକି ତୁ ନ କରୁଛୁ ହେତୁ ଭ୍ରମ ହୋଇ ମାୟା ବଶେ
ଉଠ ଅଜ୍ଞାତରେ ଦୁଃଚିନ୍ତା ସ୍ରୋତରେ ଭାସି ନଯା ଅକାରଣେ । ୫ ।
ଦୁସ୍ତର ସଂସାର ସାଗର ତର ତୋ ନାମ ଭାବ ଆଶ୍ରା କର
କହଇ ଗୋପାଳକୃଷ୍ଣ ଘୋର ଲୋଭ ମୁଁ ଦାସ ତୋ ପଦର । ୬ ।



## ସିଦ୍ଧାନ୍ତ ଲାଳସା

ରାଗ—ପୁନ୍ନାଗ । ତାଳ-ଆଠତାଳୀ

‘ଜୟ ରାଧେ କୃଷ୍ଣ’ ବୋଲି ଚଳ୍ୟାମନ । ବ୍ରଜବନେ
ପାଇବୁ ଅପୂର୍ବ ସୁଖ କଳନ୍ଦ କନ୍ୟା ପୁଳିନେ । ପଦ ।
ନିଭୃତ ନିକୁଞ୍ଜ ଗେହେ ତୋ ସ୍ୱାମୀ ସ୍ୱାମିନୀସଙ୍ଗେ
ବେଷ୍ଟିତ ଆଳୀ ସମାଜେ ମିଳନ୍ତି ହର୍ଷ ବଦନେ । ୧ ।
ଦି ଚତୁର ଯାମ ଯାକ ଲୀଳା ବିଳାସ ଯେତେକ
ପ୍ରୀତି ଅବସରେ ସେବା ଆସ୍ୱାଦ କର ଯତନେ । ୨ ।
ତୋ ଅପୂର୍ବ ଅବୟବ ଦେଇଛନ୍ତି ଗୁରୁ ଦେବ
ରାଜମନ୍ତ୍ର ଶୋଧି ଶୋଧି ରଖ ଯା ସ୍ୱଆତ୍ମାଧ୍ୟାନେ । ୩ ।
ସଖୀଙ୍କ ସଙ୍ଗିନୀ ରୂପେ ପ୍ରେମାଳୀଙ୍କର ସମୀପେ
ଥିବୁ ସେବାରେ ଅନୁକ୍ଷଣେ ଗୁରୁରୂପାଙ୍କ ପ୍ରସନ୍ନେ । ୪ ।
ତଥାପି କୃପାଳଂକାର ମଣ୍ଡି ହୋଇ ସୁଶୃଙ୍ଗାର
ପ୍ରେମେଶ୍ୱରୀଙ୍କର କିଙ୍କରୀ ଯୋଗ୍ୟ ହୁଅ ଅନୁଧ୍ୟାନେ । ୫ ।
ହୋଇ ପରମ ସନ୍ତୁଷ୍ଟ କହଇ ଗୋପାଳକୃଷ୍ଣ
ଉଦୟନ୍ତି ସୌଭାଗ୍ୟ ଭବ ବାହାର ହୁଅ ହସନେ । ୬ ।



## ରାଗ ଜୌନପୁର ଗୋଡ଼ । ତାଳ,ଝୁଲା

ଏକ ତୋର ବୁଝାମଣାରେ ମାନସ
ଜାଣି ଜାଣି ଯାହା ଗରଳ ଗିଳୁଛୁ
ଛୁଡ଼ ସୁଆ ସର ପଣାରେ ମାନସ ।ଘୋଷା
କାମ କ୍ରୋଧାଦିଙ୍କ ପାଲେ ହୋଇ ରଙ୍କ
ହେଉଛୁ ଯା କର କଣା
ପଡ଼ିଯିବୁ ଫୁନ୍ଦି ନପକାଉ ଦୃଷ୍ଟି
ଆଗରେ ରହୁଛୁ ଖଣାରେ ମାନସ ।୧।
ପଥ ପ୍ରଦର୍ଶକ ଯେ ସିଦ୍ଧ ସାଧକ
ତାହାଙ୍କୁ ନକଲୁ ଜଣା
ମହାଶତ୍ରୁ ତୋର ଛଅଙ୍କୁ ନବାର
ସେହି ବନ୍ଧନ ନାରଣାଲେ ମାନସ ।୨।
ଛନ୍ତି ବ୍ରଜବାସୀ ବୈଷ୍ଣବେ ଉଦାସୀ
ଆଦର ଗୋପପାଟଣା
ନତ ମସ୍ତକରେ ସେ ସାଧୁ ନକରେ
ବନ୍ଦସ୍ୱ ବଚନେ ମଣାରେ ମାନସ ।୩।
ତୋ ପ୍ରତି କରୁଣା ନ କରିବେ ଜଣା
କହାଇ ଦେବେ ଠିକଣା
କହଇ ଗୋପାଳ କୃଷ୍ଣ ପ୍ରତିପାଳ
ନମା କଥା କର କଲଣାରେ ମାନସ ! ୪ ।



ଭକ୍ତକବି ଗୋପାଳକୃଷ୍ଣଙ୍କର ବହୁ ଅପ୍ରକାଶିତ କବିତା ସ୍ଥାନାଭାବ ହେତୁ ପ୍ରଥମ ଭାଗରେ ପ୍ରକାଶ ପାଇ ପାରିଲା ନାହିଁ ।

ସହୃଦୟ ପାଠକମାନେ ଗୋପାଳକୃଷ୍ଣ ଗ୍ରନ୍ଥାବଳୀର ଦ୍ୱିତୀୟ ଭାଗ କ୍ରୟ କଲେ ଅବଶିଷ୍ଟ କବିତାମାନ ପାଇ ପାରିବେ ।

ସଂକଳକ

# —ଶୁଦ୍ଧି ପତ୍ର—

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧ | ୧୦ | ଦ୍ଵଯୋଗ | ଦ୍ଵଯୋଜ |
| ୨ | ୧ | କୃଷ୍ଣଙ୍କୁ | କୃଷ୍ଣଙ୍କୁ |
| ୨ | ୧୯ | ଶ୍ରୀମୂର୍ତ୍ତି | ଶ୍ରୀମୂର୍ତ୍ତି |
| ୩ | ୩ | ପ୍ରାଣଶଂକର | ପ୍ରାଣେଶଙ୍କର |
| ୩ | ୧୨ | ଡ଼ାଲି | ଡାଲି |
| ୩ | ୧୯ | ସେସେ | ଶେସେ |
| ୩ | ୨୧ | କି ଡ଼ାନ୍ତରେ | କୀଡ଼ାନ୍ତରେ |
| ୩ | ୨୨ | ସେସୁ | ଶେସୁ |
| ୩ | ୨୮ | କୃଷ୍ଣଚ | କୃଷ୍ଣକ |
| ୪ | ୭ | ବୃନ୍ଦାବନେ | ବୃନ୍ଦାବନେ |
| ୪ | ୧୩ | ଡ଼ାକ | ଡାକ |
| ୭ | ୨ | ଭୁଯେ | ଭୁଜେ |
| ୭ | ୮ | ଶ୍ରୀହ୍ନସ୍ତେ | ଶ୍ରୀହସ୍ତେ |
| ୭ | ୧୪ | ମନ୍ତ୍ରିପିକେ | ମଞ୍ଜୁପିକେ |
| ୭ | ୧୧ | ଡାଡ | ହାଡ |
| ୭ | ୧୨ | ଗ୍ରୁଡ | ଗୁଡ଼ |
| ୭ | ୧୭ | କାଁହି | କାହ୍ନି |
| ୭ | ୫ | ଶ୍ରୀଖିପିବୁ | ଶୁଖିପିବୁ |
| ୭ | ୧୯ | ଗୁହ୍ମକୃତ୍ୟ | ଗୃହକୃତ୍ୟ |
| ୭ | ୨୧ | ଚୂମ୍ଭନ | ଚୁମ୍ବନ |
| ୭ | ୨୨ | ଚନ୍ଦ୍ରାର୍ଭି | ଚନ୍ଦ୍ରେ |
| ୮ | ୮ | ସନ୍ଧୁ | ପଦ୍ମ |
| ୮ | ୧୩ | ଅର୍ଦ୍ଧ | ଅର୍ଦ୍ଧ |
| ୮ | ୧୩ | କୀସାମା | କି ସାମା |
| ୮ | ୨୩ | ପରିଜନ୍ୟୁ | ପରିଜନ୍ଯୁ |
| ୯ | ୨ | ବ୍ରଜେସ୍ବରେ | ବ୍ରଜେଶ୍ଵରୀ |
| ୯ | ୪ | ବ୍ରଜବଧୂ | ବ୍ରଜବଧୂ |
| ୯ | ୭ | ଦକଂକ | ଦକୁଂକ |
| ୯ | ୮ | ବଉଣାଲୟେ | ବରୁଣାଲୟେ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୯ | ୧୯ | ନେତେ | କେତେ |
| ୯ | ୨୪ | ସ୍ୱର୍କି କସ୍ତ | ସ୍ୱକଙ୍କସ୍ୱ |
| ୯ | ୨୬ | କାଳକୁଟ | କାଳକୂଟ |
| ୯ | ୨୭ | ଦେହ୍ମ | ଦେହ |
| ୧୦ | ୧ | ପିୟୁଷ | ପୀୟୁଷ |
| ୧୦ | ୨ | ଭୃଣୀଧର | ଭଣ୍ଡଧର |
| ୧୦ | ୪ | ହୋଇଯିବା | ହୋଇଯିବ |
| ୧୦ | ୨୧ | ଗୁଞ୍ଜନରେ | ଗୁଞ୍ଜନରେ |
| ୧୦ | ୨୭ | ସଞ୍ଚତ | ସଞ୍ଚିତ |
| ୧୧ | ୩ | ତମସୀରେ | ତମସ୍ୱୀରେ |
| ୧୧ | ୪ | ଚରମରେ | କରରେ |
| ୧୨ | ୭ | ବୁଲବୁଲ | ବୁଲବୁଲ |
| ୧୨ | ୧୧ | ସ୍ନ | ସ୍ପ |
| ୧୩ | ୯ | ଲକ୍ଷୀ | ଲକ୍ଷ୍ମୀ |
| ୧୩ | ୧୩ | ଗୁରୁଜନ | ଗୁରୁଜନ |
| ୧୩ | ୧୭ | ନେତ୍ର | ନେତ୍ର |
| ୧୪ | ୨୧ | ରଜବାସେ | ରଦବାସେ |
| ୧୫ | ୪ | କମ୍ପିବାର | ଘଟିବାର |
| ୧୫ | ୫ | ପୀୟୁଷ | ପୀୟୁଷ |
| ୧୫ | ୧୧ | ଯଦୁକୁଳ | ଯଦୁକୁଳ |
| ୧୫ | ୧୬ | ମର୍ଦନ | ମର୍ଦ୍ଦନ |
| ୧୫ | ୧୯ | ବୃତାନନ | ବୃନ୍ଦାବନ |
| ୨୧ | ୨୮ | ଘୃଷ୍ଣ | ଘର୍ଷଣ |
| ୨୨ | ୩ | ସିଂଦୂର | ସିନ୍ଦୂର |
| ୨୨ | ୪ | ଝଙ୍କାର | ଝଙ୍କାର |
| ୨୩ | ୨୭ | ସେମାନେଙ୍କ | ସେହିମାନଙ୍କ |
| ୨୫ | ୧୭ | ନାଦନାମନସ୍ୱା | ନାଦନାମନ୍ଦିସ୍ୱା |
| ୨୯ | ୨୫ | ଜାଲାଞ୍ଜଳି | ଜଳାଞ୍ଜଳି |
| ୨୯ | ୨୭ | ସଙ୍ଖାଳ | ସଙ୍ଖାଳ |
| ୩୩ | ୩ | ସୁଧୁ | ସୁଧୁ |
| ୩୩ | ୩ | ଅଳକୃତ | ଅଳଂକୃତ |

| ପୃଷ୍ଠା | ଧାଡି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୩୩ | ୧୫ | ପାଣୋଛ | ପାଷୋଉ |
| ୩୯ | ୨୨ | ବଂଶି | ବଂଶୀ |
| ୪୦ | ୧୭ | ରଘ | ରଷ |
| ୪୦ | ୨୪ | ଲିଲା | ଲୀଲା |
| ୪୦ | ୨୭ | ଷାଷ୍ଟ ଷାଷ୍ଟ | ପାସ ପାସ |
| ୪୧ | ୩ | ଅରଵିଂଦ | ଅରବିଂଦ |
| ୪୧ | ୭ | ମଦଂ | ମଂଦ |
| ୪୧ | ୮ | ଢଟାରୁ | ଓଟାରୁ |
| ୪୧ | ୧୧ | ପଶ୍ୱଙ୍କ, ବୁପୋଧଣ୍ଠ | ପଶ୍ୱର୍ଙ୍କ, ବୁପୋଢଣ୍ଠ |
| ୪୧ | ୧୩ | ବୋଲୁଛୁ | ବୁଲୁଛୁ |
| ୪୧ | ୧୭ | ପ୍ରକୃତ୍ରି | ପ୍ରକୃତ |
| ୪୧ | ୨୧ | ବନନ | ବନ ନ— |
| ୪୨ | ୨୩ | କାଲଧୂଲି | କାଲଧୂଳି |
| ୪୧ | ୨୪ | କରର | କରକର |
| ୪୩ | ୧୦ | ଭଏ | ଏ |
| ୪୩ | ୧୨ | ବଲତା | ବଲ ତା |
| ୪୩ | ୧୮ | ସାବ | ସାଥ |
| ୪୩ | ୨୫ | ଛୁରପର | ଛୁର ପର |
| ୪୫ | ୧୩ | ଶ୍ରୀମନ୍ଥ | ଶ୍ରୀମଣ୍ଡ |
| ୪୫ | ୧୫ | ସେସେ | ଶେସେ |
| ୪୭ | ୧୯ | ଶୌସ୍ଥ | ଶୌ ସ୍ତ୍ର |
| ୪୭ | ୨ | ଏପାଶିରେ | ଏ ପାଶରେ |
| ୪୭ | ୭ | ସ୍ପଟ | ସ୍ପଷ୍ଟ |
| ୪୭ | ୧୭ | ବଲ୍ଲ | ବଲ୍ଲୀ |
| ୪୭ | ୨୦ | ପାଥରେ | ପଥରେ |
| ୪୭ | ୨୧ | ବୃଢ଼ଗଲ୍ଲ ଆକରେ | ବୃଢ଼ଗଲ୍ ଅଙ୍କରେ |
| ୪୮ | ୧୭ | ମିତଣି | ମିତଣୀ |
| ୪୯ | ୪ | ନତ | ନନ୍ତ |
| ୪୯ | ୧୦ | ସନକୁମାବ | ସନତ କୁମାର |
| ୪୯ | ୧୪ | ବଟପିର | ଶ୍ୱଟପୀର |
| ୪୯ | ୧୫ | ଜଙ୍କୁଜ | ଜକୁଂଜ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୪୯ | ୧୭ | ତ୍ରକେନ୍ଦ୍ର | ତ୍ରିକେନ୍ଦ୍ର |
| ୪୯ | ୧୯ | ଅଦ୍ଭନଶା | ଅନ୍ଧନିଶା |
| ୫୦ | ୧ | ଗ୍ରମ | ଘର |
| ୫୦ | ୧୦ | ସ୍ୱଧିରେ | ସ୍ୱଧୀରେ |
| ୫୦ | ୨୭ | ନୁଦ୍ବେଁରେ | ନୁଦ୍ବେଁରେ |
| ୫୧ | ୧ | ଟେକ | ଟେଳ |
| ୫୧ | ୩ | ସରଣି | ସରଣୀ |
| ୫୧ | ୭ | ଗିର | ଗୀର |
| ୫୧ | ୯ | ଶର୍ମି | ସର୍ମା |
| ୫୧ | ୧୯ | ନ ଭନ୍ଧୁ | ନ ବନ୍ଧୁ |
| ୫୧ | ୨୦ | ଝଲ୍ମଠ | ଝଲ୍ମତ |
| ୫୧ | ୨୦ | ସେ ସେ | ଶେସେ |
| ୫୨ | [illegible] | ଶ୍ରୀ ମୂର୍ତ୍ତି | ଶ୍ରୀମୂର୍ତ୍ତି |
| ୫୨ | ୨୭ | ଗମ୍ଭୀର୍ଯ୍ୟେ | ଗାମ୍ଭୀର୍ଯ୍ୟେ |
| ୫୩ | ୫ | ଧ୍ୱ ସ୍ତିକ | ଧ୍ୱଂସ୍ତକ |
| ୫୩ | ୭ | ବ୍ରଂଶଠ | ବ୍ରଂଶଠ |
| ୫୩ | ୮ | ଭଦନ୍ତ୍ର | ଭଦନ୍ତୁ |
| ୫୩ | ୯ | କବଦ | କବ |
| ୫୩ | ୧୫ | ଭାନ | ନାମ |
| ୫୪ | ୨ | ସ୍ୱଜନୀ | ଜନନୀ |
| ୫୪ | ୧୭ | ଚନ୍ଦ୍ରକ | ଚନ୍ଦ୍ରକ |
| ୫୫ | ୧ | ଧନ୍ୟାଣ୍ଡି | ଧନାଶ୍ରୀ |
| ୫୫ | ୭ | ଦଷା | ଦଶା |
| ୫୫ | ୯ | ସ୍ବରୂଣି | ସ୍ବରୂପ |
| ୫୬ | [illegible] | ଝଲଙ୍କ | କଳିନ୍ଦ |
| ୫୬ | ୫ | ଢ଼ଳ | ଢଳ |
| ୫୬ | ୮ | ଘଳେରେ | ଅଙ୍ଗରେ |
| ୫୬ | ୧୫ | ବାଣୀହେଲ | ବଣା ହେଲ |
| ୫୬ | ୧୫ | ବଟିରେ | ବାଣୀରେ |
| ୫୬ | ୧୭ | ମୋ | ସେ |
| ୫୬ | ୧୮ | ଜଟିକା | ଜଟିଳା |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୬୮ | ୩ | ବନକାଛି | ବନକାକ୍ଷୀ |
| ୬୮ | ୧୬ | ପ୍ରବେଶେ | ପ୍ରଦେଶେ |
| ୭୦ | ୧ | ଅଞ୍ଜଲୀ | ଅଞ୍ଜଳି |
| ୭୦ | ୩ | ସାଢ଼ୀ | ଶାଢ଼ୀ |
| ୭୦ | ୧୦ | ଜବାବୁ | ଜବାବୁ |
| ୭୦ | ୧୨ | ସମ୍ମୁଖ | ସମ୍ମୁଖ |
| ୭୧ | ୧ | ଜାଣିଛୁ | ଜାଣିଛୁ |
| ୭୧ | ୧୬ | ଡଲେ | ଚଲେ |
| ୭୫ | ୬ | ମୁଁ | ମୋ |
| ୭୫ | ୮ | ସୁଖେ | ମୁଖେ |
| ୭୫ | ୧୧ | ଡନସେ | ବନରେ |
| ୭୭ | ୪ | ଅଲ | ଅଲ |
| ୭୭ | ୧୬ | ଯୁଃଧୈର୍ଯ୍ୟ, ଡାକ | ପୁବା ଧୈର୍ଯ୍ୟ, ଡାକ |
| ୭୭ | ୯ | ଅକ୍ଷି ଷିର ବଂଦର | ଅକ୍ଷି-ପକ୍ଷୀର ବଂଧ |
| ୭୭ | ୨୧ | ପାଶ୍ୱବର | ପାଶ୍ୱବତ |
| ୭୭ | ୨୫ | କୁଂଜନ | କୁନ୍ଦନ |
| ୭୮ | ୧୦ | ଶେଢେ | ଶେଯେ |
| ୭୮ | ୨୧ | ଖାଇଯାଇ | ଖାଇ ଯାଇ |
| ୭୯ | ୮ | ସେନାବେଢା | ସେ ନବୋଢ଼ା |
| ୭୯ | ୧୨ | ମୋକୁଳ | ଗୋକୁଳ |
| ୭୯ | ୨୧ | ସେଜରେ | ଶେଯରେ |
| ୮୦ | ୭ | ଚକ୍ଷ | ଚକ୍ଷଣ |
| ୮୧ | ୪ | ହରିଣାଷି | ହରିଣାକ୍ଷୀ |
| ୮୧ | ୫ | ରଲ | ଚଲ |
| ୮୧ | ୧୩ | ସାବସାଷି | ସାରସାକ୍ଷୀ |
| ୮୨ | ୯ | କୁହିଲ, ଛବ | ସୁହିଲ, ଛବ |
| ୮୨ | ୨୪ | ଢେଢେଣେ | ଢେଢେ ଯେ |
| ୮୩ | ୨ | ରାଖି | ରାଙ୍କୀ |
| ୮୩ | ୩ | ବଲ୍ଲାବୁକ | ବଲ୍ଲାବୁକ |
| ୮୩ | ୧୩ | ଲ ସ୍ୱାହୀଂ | ଲବହିଂ |
| ୮୩ | ୧୪ | ଜଳାଭବସ୍ଥା | ଜଳାଭବସ୍ଥା |
| ୮୩ | ୧୭ | ଦ୍ରୁମ୍ମ | ଦ୍ରୁମ୍ମ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୮୪ | ୨୦ | ଖରଦ୍ଧର | ଖର ଦର |
| ୮୭ | ୭ | କୁନ୍ଦୀର ମୁଖ | କୁମ୍ଭୀର ମୁଖ |
| ୯୦ | ୫ | ଶ୍ରୁଦ୍ଧ ତବ | ଶ୍ରୁଦ୍ଧ ଭଃ |
| ୯୧ | ୯ | ଶୁକ୍ଳଚର୍ଥୀ | ଶୁକ୍ଳ ଚତୁର୍ଥୀ |
| ୯୧ | ୧୯ | ଲୁଦ କବାଟ ଅର୍ଣଳ | ହୁଡ଼ କବାଟି ଅର୍ଗଳ |
| ୯୧ | ୨୮ | ଦନ | ବନ |
| ୯୨ | ୫ | ମୁନାଦ୍ୱାର | ମୁନାଗାର |
| ୯୯ | ୧୩ | ପାଶ | ପାଶ୍ୱ |
| ୧୦୦ | ୧ | ଅଣି ଅଣି | ଅଣି ପାଣି |
| ୧୦୧ | ୧୫ | ବଦ୍ୱୀପ | ନବଦ୍ୱୀପ |
| ୧୦୧ | ୧୭ | ଥିସକୁ | ରସକୁ |
| ୧୦୩ | ୯ | ଦୁନ୍ଦାବନ | ବୃନ୍ଦାବନ |
| ୧୦୪ | ୫ | ସୁ | ସେ |
| ୧୦୪ | ୨୦ | ବାସୀକ | ଦାସୀକ |
| ୧୦୫ | ୪ | ଥାଇ ରନ୍ଧ ରନ୍ଧ | ଯାଉ ଥାଇ ବନ୍ଧ |
| ୧୦୯ | ୨ | ଡାକବ | ଡାକବ |
| ୧୦୯ | ୭ | ସେକେ | ଶେଯେ |
| ୧୦୯ | ୭ | ରଞ୍ଜର | ରଂଜନ |
| ୧୦୯ | ୧୩ | ଜରଭ | ଜର୍ଗଭ |
| ୧୧୧ | ୧୨ | ଅଭର | ଅଗ୍ରର |
| ୧୧୧ | ୧୮ | ମୁଆସ | ମୁଆଗ |
| ୧୧୧ | ୧୯ | ଗୋଛନା | ପୋଛନା |
| ୧୧୨ | ୪ | ଖିଂଖ୍ସ | ଖିଂଖସ୍ର |
| ୧୧୩ | ୧୮ | ଦୁଷ୍ଟ ନାଶ | ଦୁଷ୍ଟ କଲେ ନାଶ |
| ୧୧୪ | ୨ | ମଙ୍ଗ୍ମ | ମଙ୍ଗଳଂ |
| ୧୧୪ | ୩ | କୁଞ୍ଜ୍ର | କୁଞ୍ଜ |
| ୧୧୪ | ୯ | ସୁବାସିତତପମାଳ ସ୍ତବକ | ସୁବାସିତ ତମାଳ ସ୍ତବକ ନୀଳ |
| ୧୧୪ | ୧୦ | ପୟୋଧି | ପୟୋଦଧି |
| ୧୧୫ | ୨ | ବନ୍ଧୁଂଭାନନ | ବନ୍ଧୁଂଭାଲଲ |
| ୧୧୫ | ୧୯ | ଯାଚନ୍ତୀ | ଯାଚନ୍ତଂ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧୧୭ | ୭ | ରକ୍ଷା | ରକ୍ଷଣ |
| ୧୧୭ | ୯ | ସତଂ | ସ୍ଥିତଂ |
| ୧୨୦ | ୧୩ | ପ୍ରାପ୍ତବଦ୍ଧାଂଦ୍ଧବଦ୍ଧାଂ | ପ୍ରାପ୍ତବତୀଂ ଦ୍ରବତୀଂ |
| ୧୨୧ | ୩ | କମ୍ର ମୁଖା ମ୍ବୁଜଂ | କମ୍ରମୁଖାମ୍ବୁଜଂ |
| ୧୨୧ | ୧୮ | ପାଦାମ୍ବୁଜେ | ପାଦାମ୍ବୁଜେ |
| ୧୨୨ | ୭ | ଗୋବନ | ଗୋବନ ପଯ୍ୟର |
| ୧୨୨ | ୮ | ଧନ୍ଦା | ଧୂନ୍ତଣ |
| ୧୨୪ | ୪ | ବେଲଙ୍କୁ | ତେଲଙ୍କୁ |
| ୧୨୪ | ୯ | ଶ୍ରୀଗଣ୍ଡ | ଶ୍ରୀଖଣ୍ଡ |
| ୧୨୪ | ୧୨ | ସ୍ବରମ୍ଭେମୃତ | ସ୍ବରଣାମୃତ |
| ୧୨୪ | ୨୧ | ଦ୍ୱେଛ | ଦ୍ୱେଜ |
| ୧୨୫ | ୨୦ | ସେଯେ | ଶେଯେ |
| ୧୨୬ | ୨୧ | ଶେଳୁ | ଶେସୁ |
| ୧୨୭ | ୨୪ | ଧନ୍ବ | ଧନ୍ବ |
| ୧୩୧ | ୫ | ବଣ୍ଠି | ବକ୍ତ୍ର |
| ୧୩୧ | ୧୪ | ଶେଜେ | ଶେଯେ |
| ୧୩୨ | ୮ | ବିରଦ୍ଧା | ବିବାଦ୍ଧତା |
| ୧୩୫ | ୯ | ରୂପ | ରୂପ |
| ୧୩୮ | ୧୪ | ଦନ | ଦନ ମୋଧନ |
| ୧୩୮ | ୧୪ | କେ | କା |
| ୧୩୮ | ୧୭ | ପରମାଦସୁ | ପରମାଦନ୍ତୁଁ |
| ୧୩୮ | ୧୭ | କର | କନ୍ତ |
| ୧୪୦ | ୭ | ଅଧୀଣାଧୀଣ | ଅଧୀଶାଧୀଶ |
| ୧୪୨ | ୮ | ସୁଖ | ମୁଖ |
| ୧୪୩ | ୧୪ | ଦ୍ୱେକଲ | ଦ୍ୱକଲ |
| ୧୪୪ | ୧ | ଯଦୁକୂଳ | ଯଦୁକୁଳ |
| ୧୪୫ | ୨୦ | କୋଡ଼ିଏ | କୋଟିଏ |
| ୧୪୫ | ୨୩ | ଦୁଃଖରେ | ମୁଖରେ |
| ୧୪୭ | ୧୪ | ଅଭ | ଥାଉ |
| ୧୪୯ | ୧୯ | ଗଂଜନ | ରଞ୍ଜନ |
| ୧୫୦ | ୮ | କଂକଟେ | କଣ୍ଠେ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧୫୦ | ୨୪ | ପେଳରେ | ଶୋପରେ |
| ୧୫୩ | ୧୪ | ଢେଢ଼ | କେଢ଼ |
| ୧୫୫ | ୧୪ | ରୁଷଣ | ରକ୍ଷଣ |
| ୧୫୭ | ୩ | ଢ଼ଗରେ | ଡଟରେ |
| ୧୫୭ | ୨୫ | ଭ୍ରପେନ୍ଦ୍ର | ଭୃକେନ୍ଦ୍ର |
| ୧୬୧ | ୧୮ | ବୃଷଭାନୁ | ବୃଷସ୍କନ୍ଧ |
| ୧୬୨ | ୪ | ଭ୍ରବସ୍କୁବ | ଭବଷ୍କବ |
| ୧୬୨ | ୧୦ | ଖୋପି ଖୋପି | ଖୋପି ଗୋପି |
| ୧୬୨ | ୨୫ | ଖୋପାଳ ଅଇଲେ | ଗୋପାଳ ଅଇଲେ |
| ୧୬୨ | ୨୭ | ବରଷରେ | ହରଷରେ |
| ୧୬୪ | ୬ | ଲପିତ | ଲପିତ |
| ୧୬୪ | ୯ | ସରମା | ସରମା |
| ୧୬୫ | ୨ | ଶୌର | ଶୌର୍ଯ୍ୟ |
| ୧୬୫ | ୧୯ | ପେକେ | ଶେପେ |
| ୧୬୮ | ୭ | ମୃଣାଳବାନ୍ଧ | ମୃଣାଳ ବାନ୍ଧ |
| ୧୬୮ | ୯ | ଆକଳ୍ପ | ଆକଳ୍ପ |
| ୧୬୯ | ୪ | ଢଣୀତର | ଢକାଟଣ |
| ୧୬୯ | ୨୪ | ଢେଳୁଲ୍ | ଢେକଲ୍ |
| ୧୭୨ | ୧୭ | କନ୍ଦଲେ | କନ୍ଦଲେ |
| ୧୭୫ | ୧୦ | ଲୁଟକ୍ଷୁଭବନ | ଲୁଟକୁଞ୍ଜବନ |
| ୧୭୭ | ୧୨ | ରଙ୍ଗା | ରଙ୍ଗା |
| ୧୮୧ | ୧୩ | ଲ୍ଲଜ | ସ୍ତଗି |
| ୧୮୩ | ୭ | ଭେଟିଲ | ଦେଖିଲ |
| ୧୮୩ | ୧୯ | ଶ୍ରୁଜ | ଶ୍ରୁତ |
| ୧୮୮ | ୩ | ନେକ | ତେଜ |
| ୧୯୧ | ୧୯ | ଡବ୍‌ସ୍ମ | ଡବସ୍ଥ |
| ୧୯୪ | ୨୨ | ରଣ୍ଡିରା | ରଣୀଢା |
| ୧୯୫ | ୮ | ଗ୍ରୀର | ଗୀର |
| ୧୯୭ | ୧୪ | ମୁଖାମ୍ଭୋଜ | ମୁଖାମ୍ବୁଜ |
| ୧୯୭ | ୧୩ | ମୃଗାଙ୍କ | ମୃଗାଙ୍କ |
| ୧୯୭ | ୧୫ | ମଣ୍ଡ୍ରଳାରେ | ମଣ୍ଡ କଳାରେ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
| --- | --- | --- | --- |
| ୧୯୭ | ୨୩ | ଟଂକନ | ଖଂଜନ |
| ୧୯୮ | ୯ | ମୋରସୀ | ସରସୀ |
| ୧୯୮ | ୧୩ | ଥାଉ | ଆଉ |
| ୨୦୨ | ୨୧ | ଘକୁଥିବୁ | ସବୁଥିବୁ |
| ୨୦୪ | ୭ | ଦାରୁଣ | ଧାରୁଣ |
| ୨୦୫ | ୧୩ | ଜନ | ଜାଲୁ |
| ୨୦୬ | ୧୦ | ଦେଉଛୁଲ୍ | ଦେଉଥିଲୁ |
| ୨୦୮ | ୨୧ | ପନ | ପଦ |
| ୨୦୯ | ୧୩ | ନାଗସ୍ତ୍ରୀ | ନଗସ୍ତ୍ରୀ |
| ୨୦୯ | ୧୪ | ପଛେ | ପଛେ ପଛେ |
| ୨୦୯ | ୨୦ | ହେଉଛୁ | କି ହେଉଛି |
| ୨୧୧ | ୧୧ | ବର୍ଷିଲେଣ | ବର୍ଷିଲେଣି |
| ୨୧୫ | ୧୧ | ନଡ଼ପାଯୁ | ନଡ଼ପୋଲୁ |
| ୨୧୮ | ୧୮ | ନଛନ | ନୂତନ |
| ୨୨୦ | ୪ | ଅଙ୍ଗେ | ଅଙ୍କେ |
| ୨୫୦ | ୨୨ | କନ୍ଧବ | କଣବ |
| ୨୫୧ | ୧୭ | ଢକସିବ | ଢକଶିବ |
| ୨୫୨ | ୧୨ | ସେଠେକ | ଶେଠେଯ |
| ୨୫୪ | ୨୪ | କପ | କପ |
| ୨୫୫ | ୧୭ | ନବୁଡ଼ାଇ | ନ ବୁଡ଼ାଇ |
| ୨୫୬ | ୨୬ | ଲୁହକ୍ରୀ | ନ୍ନହନ୍ତ୍ରୀ |
| ୨୫୭ | ୨୪ | ହେଲ୍ | ହେଲ |
| ୨୫୮ | ୨୦ | ବଟୀ | କଟୀ |
| ୨୬୦ | ୧ | ସଜତନେ | ସଯତନେ |
| ୨୭୦ | ୨୩ | ଖୀର | କ୍ଷୀର |
| ୨୬୧ | ୧୫ | ଧୀର୍‌ଧୀରରେ | ଧୀର ଧୀରରେ |
| ୨୬୨ | ୧୦ | ଗ୍ରଡ଼ଦ | ଗ୍ରଡ଼ବ |
| ୨୭୦ | ୨୩ | ପାହୁଥିଲ | ପାହୁଥିଲା |
| ୨୬୧ | ୧୯ | ରହୁବ ଚରଜନ | ରହୁବ ଚରଦନ |
| ୨୭୧ | ୨୧ | ସେନହେ | ସେନେହ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୨୭୨ | ୧୧ | ହେଲେ | ହେଲ |
| ୨୭୫ | ୧୮ | ଧିଙ୍ଗାପରେ | ଝିଙ୍ଗାସରେ |
| ୨୭୫ | ୨୧ | ବନ୍ଧୁଲେ | ଭନ୍ଧୁଲେ |
| ୨୭୯ | ୨୪ | ପ୍ରିରଟଛ | ପିରଟଭ |
| ୨୮୦ | ୨୦ | ଲଛ | ଲକ୍ଷ |
| ୨୮୨ | ୧୯ | ମାନଷ | ମାନସ |
| ୨୮୪ | ୧୩ | କଶୋର ମଣି | କଶୋଭ୍ର ମଣି |
| ୨୮୫ | ୨ | ବଭ୍ଭ | ଚଭ୍ଭ |
| ୨୮୭ | ୫ | ମୋଛେ | ଏଛେ |
| ୨୮୮ | ୧୫ | ଲନ୍ତଃ | ଲମ୍ପଃ |
| ୨୮୮ | ୨୭ | ମୀନ | ମାନ |
| ୨୮୯ | ୭ | କଶୋକ | କଶୋସ୍ଵକ |
| ୨୯୯ | ୮ | କ (ପାଶୋର) | କ (ପାଶୋଛକ) |
| ୨୯୦ | ୧୧ | ହେଣେଣି | ହେଲେଣି |
| ୨୯୧ | ୧ | ହାରେ | ହରେ |
| ୨୯୧ | ୧୦ | ଧଣିଧର | ଧରଣୀଧର |
| ୨୯୨ | ୧୦ | ସୁଧାକପ୍ରପ | ସୁଧାକଳପ |
| ୨୯୨ | ୧୭ | ଘୁଷ୍ଟରେ | ଘୁଣ୍ଠାରେ |
| ୨୯୪ | ୧୯ | ମଥା | କଥା |
| ୨୯୫ | ୮ | କନ୍ଧବ | କରବ |
| ୨୯୮ | ୧୪ | ବନ୍ଧୁଥିକ | କନ୍ଧୁଥିବ |
| ୩୦୫ | ୫ | ହେଲ | ଦେଲ |
| ୩୧୦ | ୫ | ଚାଗଲେ | ଚେକରେ |
| ୩୧୩ | ୨୩ | ହୋଯିଇବ | ହୋଇସିବ |
| ୩୧୭ | ୧୫ | ଖୋଖାଳ | ଗୋପାଳ |
| ୩୧୮ | ୧୮ | ଅଇଲା | ଅଇଲ |
| ୩୨୯ | ୧୭ | ରହୁବକ ତା ଗାରମା | ରହୁବ କ ଠା' ଗାରମା |
| ୩୩୪ | ୪ | ସସ୍ତୁ | ସୁସ୍ତୁ |
| ୩୩୭ | ୧୪ | ବେଢ଼ା | ବେଢା |
| ୩୪୧ | ୧୯ | ଶ୍ୟାପ | ଶ୍ୟାମ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୩୪୫ | ୭ | ବାଇ | ବାଉ |
| ୩୪୭ | ୧୫ | ନଷ୍ଟ ବୁଟିଆ | ନଷ୍ଟକୁଟିଆ |
| ୩୫୦ | ୨ | କରିବୁଉର | କରକୁରେ |
| ୩୫୦ | ୧୪ | ଅଷ୍ଟଙ୍ଗା | ଅଷ୍ଟଙ୍ଗୀ |
| ୩୫୨ | ୮ | ନଷ୍ଟକୁଟି ଅଟେସେ | ନଷ୍ଟ କୁଟିଆ ସେ |
| ୩୫୯ | ୧୦ | ତାଟଙ୍କ | ତଟଙ୍କ |
| ୩୬୧ | ୧୨ | ଭବଇ | ଭାବଇ |
| ୩୬୩ | ୯ | ଯେ ନେଲେ | ଘେଷଲେ |
| ୩୭୦ | ୬ | ତର୍କି | ତେଜ |
| ୩୭୨ | ୯ | ରଘ ଗ୍ରଜଂକୁ | ରଘସଜଙ୍କୁ |
| ୩୭୩ | ୧୯ | ପାତେଲ | ପାତେନ |
| ୩୭୪ | ୨୧ | ଉକ୍ତି | ଇତ୍ତି |
| ୩୮୧ | ୧୨ | ବଯୂନ | ବଦନ |
| ୩୮୨ | ୯ | ଥଲକତ | ଆଲେକତ |
| ୩୮୨ | ୨୦ | କଣ୍ଠ | ଗଢ |
| ୩୮୮ | ୧୭ | ସର୍ଦ୍ଧ | ସର୍ବ |
| ୩୯୦ | ୧୭ | ନଷ୍ଟକୁଟିଆ ସେ | ନଷ୍ଟ କୁଟିଆ ସେ |
| ୩୯୧ | ୧୧ | ଅପୁର୍ଦ୍ଧ | ଅପୂର୍ବ |
| ୩୯୪ | ୫ | ଦାତୋ ନିଜ ଗାରେ | ହେ। ତୋ ନିଜ ଗାଁରେ |
| ୩୯୪ | ୬ | ବୃନ୍ଦବନ ବାସୀ ଛୁଙ୍କ<br>ପଦସ୍ଥରେ ଅସ୍ଥର | ବ୍ରଜ ବନବାସୀ ସାଧୁଂକ<br>ପସ୍ଥରେ ଅସ୍ଥରେ |
| ୩୯୪ | ୭ | କାନ୍ତ ଅଗାରେ | କାନ୍ତ ଗାଆରେ |
| ୩୯୭ | ୧୮ | ଅଭଣୀ | ଅଭସୀ |

—*—

# ଗୋପାଳକୃଷ୍ଣ ଗ୍ରନ୍ଥାବଳୀ

## ବ୍ୟବହାରିକ ଶବ୍ଦାର୍ଥ

କଙ୍କଣ—ଟେବକଣ
ବ୍ୟଜନ—ପଙ୍ଖା
ସମ୍ଭାହନ—ଆମନ୍ତ୍ରଣ
ନିୟୋଜ—କିଙ୍କର ବା ଭୃତ୍ୟ
କିଶୋରୀ—ରାଧା
ବୃଷଭାନୁ—ରାଧାଙ୍କ ପିତା
ବ୍ରଜେନ୍ଦ୍ର ନନ୍ଦନ—ଶ୍ରୀକୃଷ୍ଣ
ସ୍ରକ୍—ଫୁଲ
ବ୍ରଜେଶ୍ୱରୀ—ଯଶୋଦା
ବାଟିକା—ବଗିଚା
ସ୍ୱନକ୍ଷତ୍ର ପୂଜା—ଜନ୍ମଦିନୋତ୍ସବ
ଆସ୍ୟ—ମୁଖ
ସୁଦାମାମଣି—ଇନ୍ଦ୍ରନୀଳମଣି
ଈକ୍ଷଣେ—ଦେଖିବାରେ
ପୀୟୂଷ—ଅମୃତ
ବାତୁଳ—ପାଗଳ
ପଶୁପ ନଗର—ଗୋପପୁର
କେଶରୀ ମଧ୍ୟମା—ସିଂହକଟୀ
ଦାଡ଼ିମ୍ବ—ଡାଳିମ୍ବ
ଚନ୍ଦ୍ରାନନ—ଚନ୍ଦ୍ରମୁଖ
ପତଦ୍‌ଗ୍ରହ—ପିକଦାନ
ଅବନୀ—ଧରଣୀ
ପୁରନ୍ଦର—ଇନ୍ଦ୍ର
ସ୍ମର—କାମ ( ଦେବ )
ସୁରପତି—ଇନ୍ଦ୍ର
ଅଭିସାର—ସଙ୍କେତ ସ୍ଥାନକୁ ଗମନ
ପ୍ରଶ୍ୱାସ—ନିଶ୍ୱାସ

ବଲ୍ଲୀ—ଲତିକା
ଜନକଜା—ସୀତା ଦେବୀ
ଘାରଭଓଆ—ଚୁଣିଆଁ, କୁଟିଳ ସ୍ୱର୍ଣ୍ଣାଣି
କୁରୁଡିଆଁ—ଆଖିପତା ନସ୍ତୁଲା
ମନ୍ମଥ—କନ୍ଦର୍ପ
ଅଳିନ୍ଦ—ଅଗଣା
କଣ୍ଟ ଖଟି—ମର୍କଟୀ ବିଶେଷ
ଲୁକାଇ—ଲୁଚାଇ
ବିଟପୀ—ବୃକ୍ଷ ( ମାଧବୀ )
ଗୁମାନ—ଅଭିମାନ
ଟହେଲ—କୌତୁକ
ପକ୍ଷ—ପଙ୍ଖା
ନାଗରେନ୍ଦ୍ର—ନାୟକ ଶ୍ରେଷ୍ଠ
ବାରିବାହ—ମେଘ
ବର୍ହୀ—ମୟୂର
କ୍ଷଣପ୍ରଭା—ବିଜୁଳି
ବାଗୁରା—ଜାଲ
ନନ୍ଦିନୀ—ଯଶୋଦା
ମିହିରକନ୍ୟା—ସୂର୍ଯ୍ୟକନ୍ୟା ( ଯମୁନା )
ପକ୍ଷ୍ମ—ଆଖିପତା
ନିର୍ବାପଣ—ନିବାରଣ
ସରୋଜ—ସବଣ
ତାମ୍ରଚୂଡ—କୁକୁଡ଼ା
ଜୃମ୍ଭା—ହାଇ
ଭର୍ତ୍ସନା—ନିନ୍ଦା
କମ୍ବୁକଣ୍ଠ—ଶଙ୍ଖକଣ୍ଠ
ନଳିନ—ପଦ୍ମ, ପୁଷ୍ପ, ଜଳ, ଶୈବାଳ

ନଳିନ—ସାରସ ପକ୍ଷୀ, ସ୍ୱର୍ଗଗଙ୍ଗା, କମଳାକର
ଘନ—ମୂର୍ତ୍ତି, ଦୃଢ଼, ବାଜା, ମେଘ
ବନ—ପାଣି
କନ୍ଦର୍ପ- -ମନଯୋଡ଼ା
ବୁଆଳି—ଗୋପାଙ୍ଗଣୀ
ସ୍ତମିତ—ପଥ ବା ଦୃଢ଼
ମାତ୍ୱାର—ଚଣ୍ଡାଳ
ଉନ୍ନିଦ୍ର—ଅନିଦ୍ରା
ଧୃତି—ସ୍ଥିତି, ଧାରଣ, ଧୈର୍ଯ୍ୟ, ଯାଗ,
ଯୋଗ ବିଶେଷ, ସନ୍ତୋଷ, ସୁଖ,
ଧବଳ, ପ୍ରୀତି
ଖଦ୍ୟୋତଜା—ଯମୁନା
ଖଗକନାଦ—ପକ୍ଷୀର କୂଜନ
ଘର୍ମ—ଝାଳ
ଅଳକ୍ତ—ଅଳତା
ହେଉ—ହେଉଛି
ଜାମ୍ବୁନଦାଙ୍ଗୀ—ସୁବର୍ଣ୍ଣ ଦେହା
ଘାଣ୍ଟୁଅଇ—ଘୋଡ଼ାଇ
ମୀନନୟନୀ—ମୀନ ନୟନା
ଜଟିଳା—ରାଧାଙ୍କ ଶାଶୁ
ଠବର୍ଣ୍ଣ—ଚନ୍ଦ୍ରପରି ଉଜ୍ଜ୍ୱଳ
ରମ୍ଭୋରୁ—କଦଳୀ ଗଛ ସମ ଜଙ୍ଘ
କଙ୍କଣିକା—ପାଦନଅ
ଅଳି—ଭ୍ରମର
ବୀଜମନ୍ତ୍ର—ମୂଳମନ୍ତ୍ର
ବୃଷମଣ୍ଡନ୍ଧ—ରାଧାଙ୍କ ଭଉଣୀ
ଛଳିଲ—ଛଳନା
ଅଳିବୃନ୍ଦ—ସଖୀଗଣ
ସରଣୀ—ପଥ
ଚର୍ମବାସ – ଖୋପଣୀ
ବେଦବର—ବ୍ରହ୍ମା

ଆରକ୍ତି—ରକ୍ତୁ
ତରଣୀ ତନୟା —ଯମୁନା
ତରଣୀ, ତରୀ—ନୌକ
ଅଗାଧବାରି—ଅଥଳପାଣି
କ୍ଷେପଣି—ଆତ
ଦଣ୍ଡ ଦଧନକର—ଟେକେପାଣି
ପ୍ରତୀକ—ନିଦର୍ଶନ
ସରସିଜ—ପଦ୍ମ
ଅବତଂସ—ଆବର୍ତ୍ତ
ଲାକ୍ଷା—ଅଳତା
ଉପବୀତ—ପଇତା
ଗଣ୍ଡ—ଗାଲ
କେଶର କୁଞ୍ଜ—ନାଗେଶ୍ୱର କୁଞ୍ଜ
ରମା—ଲକ୍ଷ୍ମୀ
ଧୂର୍ତ୍ତ—ପ୍ରଜ୍ଞା
ତଳ୍ପ—ଶେଯ
ପତଳାକ—ମୟୂରପୁଚ୍ଛ ବା ସର୍ପଫଣା
ଲୁବ୍ଧାଇ—ଲୁବ୍ଧର
ଲୋଳ ଲୋଚନା—ନମ୍ର ଦୃଷ୍ଟି
ନୀରଦ—ମେଘ
କର୍ଣ୍ଣୋତ୍ତଂସ—କାନର ଭୂଷଣ
ଅଶରଣ—ନିରାଶ୍ରୟ
ପଞ୍ଚାଳିକା—ଉଦ୍ବୋଧ କର
କନ୍ଦନ—ଦୁଃଖ
ଚକ୍ର—ସୁଦର୍ଶନ ଚକ୍ର
ନକ୍ର—କୁମ୍ଭୀର
କକ୍ଷ—ଝାଙ୍ଗ
ପରମେଷ୍ଠୀ—ବ୍ରହ୍ମା
ଝଷା—ଚୁଳଟା, ବେଣୀ,, ଲଣ୍ଡି, ଚୁଳ,
ବଣ, ବନସ୍ତ୍ର, ଘଣ ।

ସଂଲାପ—କଥା
ସଂଶ୍ରିତ—ମିଳିତ
ବରାଙ୍ଗୀ—ଉତ୍ତମା ସ୍ତ୍ରୀ
ଗାଇଥିବାର—ଗାଇଥିବାଣି
ଯୁଃ ଧୈର୍ଯ୍ୟ—ଯୁବା ଧୈର୍ଯ୍ୟ
ଭେକ—ବେଙ୍ଗ
ଫଣୀ—ସାପ
ବଲ୍ଲୀତାବଳୀ—ଶୈବ୍ୟଗଣ
ଝିଲ୍ଲିକ—ଭ୍ରୂଲତା
ଦଳ—ଖସା
ବଲ୍ଲଭ—ଉଷ୍ଣ
ଖେଦ—ଦୁଃଖ
କାନନ—ଜଙ୍ଗଲ
ଲୁବ୍ଧ—ଲୋଭିଲ
ରସାଳ—ଆମ୍ବ
ଯଷ୍ଟି—ବାଠି
ଦଣ୍ଡେ—ଖଣିକେ
ହିଳାଏ—ହିଳଏ
ଓଘ—ଅବାଧ ସ୍ରୋତ
ସୁରଭି—ଗନ୍ଧ, ବାସନା
ଅନୁଭବ—ଅନୁଭବ
ସପ୍ରଭାତ—ପ୍ରାତର ଆରମ୍ଭ
ସୁଷ୍ମାହାର—କାଇଁଚ ମାଳ
ଶତହ୍ରଦା—ବିଜୁଳି
ଶତମନ୍ୟୁ—ଇନ୍ଦ୍ର
କେଉଣେ—କାହିଁକି, କୁଆଡ଼େ
ପଦ୍ମମୁଖ—ସୁନ୍ଦର ସ୍ତ୍ରୀର ମୁଖ
ଶୀତଳକ—ଟେକଲା
ରାଜ୍ଞୀ—ରାଣୀ
ହର୍ମ୍ୟ—କୋଠାଘର
ଆନନ—ମୁଖ

ବ୍ୟାଳ—ସର୍ପ
ଦଷ୍ଟିଲ—ଜଳ ପ୍ରଦେଶ
ମଧୁବ୍ରତ—ଭ୍ରମର
ବନସ୍ତ୍ରକ—ବନଫୁଲ
ବୈତାଳିକ—ବେତାଳ ସାଧକ, ସ୍ତୁତିପ
କଳାଭୁଜଙ୍ଗ—କୃଷ୍ଣସର୍ପ
ପୁରନ୍ଦର—ଇନ୍ଦ୍ର
ନୀବିବନ୍ଧ—ସ୍ତ୍ରୀର କଟିବନ୍ଧନ, ଖୋସଣୀ,
ମୂଳଧନ
ଶୂରପଣ—ବଳପଣ
ପ୍ରସାଧନୀ—ଭୂଷଣ ସାମଗ୍ରୀ
ଅବୟବ—ଶରୀର
ଭବ ପାରାବାର—ସଂସାର ସମୁଦ୍ର
ଯମଳାର୍ଜୁନ—ବୃକ୍ଷ ବିଶେଷ
ଜାମ୍ବୂନଦ—ସୁବର୍ଣ୍ଣ
ଗୌତମନାରୀ—ଅହଲ୍ୟା
ନକ୍ର—କୁମ୍ଭୀର
ପଦାବ୍ଜ—ପଦ୍ମପାଦ
ବିଶ୍ୱସୃଜ—ଧାତା
ସଦନ—ଗୃହ
ସ୍ରଜ—ମାଳା
ଯଖାଇ—ଝୁଲାଇ
ଲପନ—ମୁଖ
ଅନଙ୍ଗ ମଞ୍ଜରୀ—ରାଧାଙ୍କ ସାନ ଭଉଣୀ
ସେତୁ—ବାଲୁକାବନ୍ଧ
ପ୍ରମୋଦେ—ଆନନ୍ଦେ
ଜାର—ଶୁଣ୍ଢ
ଦେହଳୀ—ଦ୍ୱାରବନ୍ଧ
ସୋପାନ—ପାହାଚ
ରୋଷ—ରାଗ
କଳ—ମଞ୍ଜୁ

ରଜ—ଧୂଳି
କଣାଦ୍ରୁ—ପାଠଦ୍ୱାର
ପୁତ୍ତିକା—ପୁତ୍ତୁଳା
ଲବ୍ଧ—ପଣ୍ଡିତ
ଅଧର—ଓଷ୍ଠ
କୃଷ୍ଣସାର  କାଳହରିଣ
ତନୁ—ଶରୀର
ପୟପାନ—ଦୁଗ୍ଧପାନ
କୁରଙ୍ଗ—କପୋତୀ
ଅଙ୍କ—କୋଳ
ସୁରତାନ୍ତେ—କେଳି ଶେଷରେ
ଗବାକ୍ଷ—ଝରକା
କଳଶ ତନୟା—ଜାନକୀ ସୀତା
ମଞ୍ଜିଷ୍ଠା—ମଞ୍ଜୁଆଠ
ଆନ—ମୁଖ
ଭାରତୀ—ବଚନ
ଚେଳାଞ୍ଚଳ—ପଣତ କାନି
ମନୋଜ୍ଞ—ଭୋଜନ
ଅଶନ—ଭୋଜନ
କୁସୁମ୍ବ—ଓଢ଼ଣୀ
ମଦକୁଞ୍ଜର—ମଦମତ୍ତ ହସ୍ତୀ
ଗ୍ରାମବାସ—ହାଳି
ଦ୍ୱେଷ୍ଟି—ଏଣ୍ଡୁ
ମାଧବୀ—ଲତା ବିଶେଷ
ଗଣ୍ଡ—ଗାଲ
ଦଶନ—ଦାନ୍ତ
ମାଧବ—କୃଷ୍ଣ
ଓଷଧୀଶ—ଚନ୍ଦ୍ରମା
ଆସ୍ୟ—ମୁଖ
କଳାପି—ଭୋଜନ
କଳାପୀ—ମୟୂର

ଲୁବ୍ଧ—ଲୋଭୀ
ମକର—ଜଳ ଚର ବିଶେଷ
ଜଳବୁମ୍ବ—ସମୁଦ୍ର
ସରୋରୁହ—ପଦ୍ମ
ରୋଲମ୍ବ—ଭ୍ରମର
ମିଥିଳ—ରାଜା ଜନକ
ବକୁଳ—ଏକପ୍ରକାର ମଲ୍ଲୀ ଫୁଲ
ମୃଗମଦ—ମୃଗନାଭି କସ୍ତୁରୀ
ଚୀନାଂଶୁକ—ବଡ଼ ସରୁଲୁଗା
ଝମ୍ପା—ଢନସୁ, ଘଣ୍ଟା
ଭର୍ତ୍ତୃକ—ସଦ୍ୟୋଜାତ ଶିଶୁ
କାଞ୍ଚନାଭ—ସ୍ୱର୍ଣ୍ଣାଭ
ଦଶାର୍ଦ୍ଧ ଶର—ପଞ୍ଚଶର
ମହୀରୁହ—ବୃକ୍ଷ
ବାରିବାହ—ମେଘ
ଭୃଙ୍ଗ—ଭ୍ରମର
ନାଗବଲ୍ଲୀ—ପାନ
ଅମ୍ବର—ବସ୍ତ୍ର
ସନ୍ନତ—ଧୂନତ
କରରୁହ—ନଖ
କରଜ—ନଖ
କଞ୍ଜ—ପଦ୍ମ
କଦଳ—କଳଶର
ହଂସକା—ନଖ
ବିଚ୍ଛିତ୍ତି—ଅଙ୍ଗରାଗ ଓ ବିଚ୍ଛେଦ
ନଟିଳ—କପାଳ
ଶତମନ୍ୟୁ—ଇନ୍ଦ୍ର
ନୀପ—କଦମ୍ବ ବୃକ୍ଷ
ଇନ୍ଦୀବର—ନୀଳପଦ୍ମ
ରଜ—ଚୂର୍ଣ୍ଣ, ପଙ୍କ
ଅଳୀ—ଭୃଙ୍ଗ

ଇଳ—ଭୂମି
ତାଟଙ୍କ—କର୍ଣ୍ଣ ଭୂଷଣ ( କାପ )
ଦ୍ରୁହଣ—ବ୍ରହ୍ମା, ବିଷ୍ଣୁ
ମନସିଜ—କନ୍ଦର୍ପ
ଅଂଘ୍ରି—ବୃକ୍ଷର ମୂଳ
ଅଲକ୍ତକ—ଲାଖ ବା ଜଉ
ଈକ୍ଷଣ—ଆଖି
କୁଟିଳ—ଅନ୍ୟରୂପ ' କୁଟଳ '
ଅମ୍ବା—ଦୁର୍ଗା, ଜନନୀ
ଜଟିକାଳ—କଠିନ ସମସ୍ୟା
ବଳାହକ—ମେଘ
ଚେଳ—କପଡ଼
ଘନ—ମେଘ
ଭାନୁ ( ବୃଷଭାନୁ )—ରାଧାଙ୍କ ପିତା
ଦୁଲଣୀ—କନ୍ୟା
ଅଭସ—ଗୋ ପାଣି
ବୃଷଭାନୁ ସୁତା—ରାଧା
ପ୍ରଭଞ୍ଜନ—ବାତ୍ୟା, ବା ଝଡ଼
ଶର୍ବରୀଶ—ଚନ୍ଦ୍ର
କେଦାର—ଶସ୍ୟ କ୍ଷେତ୍ର
ଏଣୀ—ହରିଣୀ
ମାର୍ଗଣ—ଧନୁଶର
ଅପଘନ—ଶରୀର
ଜୃମ୍ଭା—ହାଇ
କିଂଶୁକ—ପଳାଶ ଫୁଲ
ଦାମିନୀ—ବିଜୁଳି
ମଳୟଜ—ଚନ୍ଦନ
ପୁଟ—ଦଳ
ଇନ୍ଦୀବର—ନୀଳବର୍ଣ୍ଣ
ଅଶନି—ବଜ୍ର
ଦମ୍ଭୋଳି—ବଜ୍ର
ପ୍ରସ୍ରବଣ—ଝରଣା

କାଣ୍ଡାସ୍ତ୍ର—ନାବକ
କେତୁଆଳ—ଆତୁର
ବାରିଧିସୁତା—ସମୁଦ୍ର କନ୍ୟା
ଅର୍ଚ୍ଚିନା—ଧୂର୍ଚ୍ଚି
ବସନ୍ତ ଦୂତ—କୋକିଳ
ସୁଧାମା—ଇନ୍ଦ୍ର
ବଲ୍ଲକୀ—ବୀଣା
ବୀଥି—ଧାଡ଼ି
ରାସ ବିହାରୀ—ଶ୍ରୀକୃଷ୍ଣ
ରୋଲମ୍ବ—ଭ୍ରମର
କଙ୍କଣୀ—କଟିମେ
ବ୍ରତତି—ଲତା
ରାସ—ଗୋପୀଙ୍କ ସହ କୃଷ୍ଣଙ୍କ ନୃତ୍ୟ
ରାଟ—ରାଜା
ବିଦେହ—କନ୍ଦର୍ପ
ବିଦେହ ନନ୍ଦନା—ସୀତା ଦେବୀ
ମୁଖବାଦ୍ୟ—ହରିବୋଲ ଆଦି
ଆଠଯାମ—ଆଠ ପ୍ରହର
ବିଧ୍ୱାନନା—ଚନ୍ଦ୍ରାନନା
ଅରତି—ବିରକ୍ତି
ଅଳକ—କ୍ଷୁଦ୍ର କେଶ
ସ୍ୱରଟ—ସୁନା
ବରାଙ୍ଗନା—ସତୀ
କୁବଳୟ—କୁବେଳ
ବନଜ—ପଦ୍ମ
ଉଜାଣି—ସ୍ରୋତର ବିପରୀତ ଦିଗ
ଅସଲ—ନମ୍ର । ଦ୍ୱିଜରାଜ —ଚନ୍ଦ୍ର
ଚନ୍ଦ୍ର । ବର୍ଣ୍ଣା-କନ୍ୟା । ଉତ୍କଣ୍ଠାଇ-ଟେ
ହୋଇ । କଞ୍ଜ ଚରଣ-ପଦ୍ମ ପାଦ । ବି
କହଡ଼ । ବକ୍ଷ-ସ୍ଥଳ ବକ୍ଷେ 'ଟୀ
ନୀପ ଫୁଲ-କଦମ୍ବ ଫୁଲ । ଭୃଙ୍ଗ-ପଙ୍କ୍ତି